# ବନ୍ଦୀହୁଏ • ୯

(ନବମ ସଂଖ୍ୟା)

୧୯୯୩

ଭଞ୍ଜ ଯୁବ ସାହିତ୍ୟ ସଂସଦ | ମୁଖପତ୍ର



॥ ସମ୍ପାଦକ ॥

ନିଶାକର ପାଢ଼ୀ

॥ ସହଯୋଗୀ ॥

ରବି ଜେନା

ପ୍ରଶାନ୍ତ ମହାନ୍ତି

॥ ଯୋଗାଯୋଗ ॥

ଡ଼ଃ ନିଶାକର ପାଢ଼ୀ

ସମ୍ପାଦକ : ବନ୍ଦୀହୁଏ

ବାଙ୍କୀ କଲେଜ, ବାଙ୍କୀ

ଜିଲ୍ଲା : କଟକ, ପିନ୍ -୭୫୪୦୦୮

॥ ପରିକଳ୍ପନା ॥

ଶୂଳପାଣି ଶତପଥୀ

॥ ରାଜଧାନୀ କାର୍ଯ୍ୟାଳୟ ॥

କହ୍ନର

ମାର୍ଫତ : ଶ୍ରୀ ମନ୍ମଥ କୁମାର ଶତପଥୀ

ନାଟ୍ୟକାର

ଯୋଗେଶ୍ୱର ପାଟଣା

ପୋ:ଅ: ସୁନ୍ଦର ପଦା, ଭୁବନେଶ୍ୱର-୭୫୧୦୦୨

॥ ପ୍ରଚ୍ଛଦ ॥

ବସନ୍ତ ପଟ୍ଟନାୟକ

ଶରତ ଜେନା

॥ ପରବର୍ତ୍ତୀ ସଂଖ୍ୟା ॥
(ଶେଷ ସଂଖ୍ୟା)

- ବନ୍ଧନ-୧୦ : ଭଞ୍ଜଙ୍କ ଅନ୍ୟାନ୍ୟ ରଚନା ବିଶେଷାଙ୍କ

॥ ପ୍ରକାଶିତ ସଂଖ୍ୟା ॥

- ବନ୍ଧନ-୧ : ଉପେନ୍ଦ୍ର ଭଞ୍ଜ ବିଶେଷାଙ୍କ
- ବନ୍ଧନ-୨ : ଲାବଣ୍ୟବତୀ ବିଶେଷାଙ୍କ (୧ମ ଭାଗ)
- ବନ୍ଧନ-୩ : ଲାବଣ୍ୟବତୀ ବିଶେଷାଙ୍କ (୨ୟ ଭାଗ)
- ବନ୍ଧନ-୪ : ବୈଦେହୀଶ ବିଳାସ ବିଶେଷାଙ୍କ
- ବନ୍ଧନ-୫ : କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ବିଶେଷାଙ୍କ
- ବନ୍ଧନ-୬ : ପ୍ରେମ ସୁଧାନିଧି ବିଶେଷାଙ୍କ
- ବନ୍ଧନ-୭ : ସୁଭଦ୍ରା ପରିଣୟ ବିଶେଷାଙ୍କ
- ବନ୍ଧନ-୮ : ରସିକ ହାରାବଳୀ ବିଶେଷାଙ୍କ
- ବନ୍ଧନ-୯ : ରସଲେଖା ବିଶେଷାଙ୍କ

॥ ବନ୍ଧନ ପରିବାରର ସହଯୋଗୀ ବନ୍ଧୁ ॥

**ଅଧ୍ୟାପକ ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର**
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

## ॥ ବହୁଣ ॥



**ମା' ବାଗ୍‌ଦେବୀ, କୁଲାଡ଼**

"ବହୁଣ ଲାଗିଲା ଯାଇ ସିଂହଳ ଦ୍ୱୀପରେ
ସାଧବ ଯୁବତୀମାନେ ଅତି ପ୍ରମୋଦରେ
ଗଲେ ବହୁଣ ବନ୍ଦାଇ
ଅର୍ଘ୍ୟସ୍ଥାଳୀମାନ କରେ ହୁଳହୁଳି ଦେଇ"

## ॥ ଭଞ୍ଜଶ୍ରୀ ପଣ୍ଡିତ ଶ୍ରୀଯୁକ୍ତ ଶ୍ରୀଧର ଶତପଥୀ ॥



॥ ଉତ୍କଳ ପରିଷଦ : ବ୍ରହ୍ମପୁର ଦ୍ୱାରା

ଗତ ତା ୨୬-୫-୯୩ ରିଖରେ

**'ଭଂଜଶ୍ରୀ'**

ଉପାଧିରେ ସମ୍ମାନିତ ହୋଇଥିବାରୁ

**ପଣ୍ଡିତ ଶ୍ରୀଯୁକ୍ତ ଶ୍ରୀଧର ଶତପଥୀଙ୍କୁ**

**'ବନ୍ଧୁତ୍ୱ'** ପରିବାର

ଜଣାଉଛି ତା'ର ଆନ୍ତରିକ ଅଭିନନ୍ଦନ ॥

●

ତା ୫-୭-୭୦ ଖ୍ରୀ — ତା ୨୮-୫-୮୭ ଖ୍ରୀ



ସ୍ୱର୍ଗତ ମହେନ୍ଦ୍ର କୁମାର ଷଡ଼ଙ୍ଗୀ
(ଭଞ୍ଜିନଗର ଶ୍ରୀଯୁକ୍ତ ନନ୍ଦ କିଶୋର ଷଡ଼ଙ୍ଗୀଙ୍କ ଜ୍ୟେଷ୍ଠ ପୁତ୍ର)

॥ ମହେନ୍ଦ୍ର ପୁରସ୍କାର ॥

ପ୍ରତି ବର୍ଷ

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟ

+୨ ବିଜ୍ଞାନ କାଉନ୍‌ସିଲ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ହାସଲ କରିଥିବା

ଛାତ୍ର ଛାତ୍ରୀଙ୍କ ନିମନ୍ତେ ଉଦ୍ଦିଷ୍ଟ ।

●

॥ ମହାନ୍ ଆତ୍ମା ମହେନ୍ଦ୍ର ଷଡ଼ଙ୍ଗୀ

ରଂଜ ଭୂମେ ଗଲ ତୁମ ଇତିହାସ ହୋଇ ॥

## ।। ଶୁଭେଚ୍ଛା ।।

"ଆଶା ରସଘନ କାଳ ହେଲା ଉଦୟ
ଅସିତ ପର ବଳରୁ ଦରଶମୟ
ସ୍ତନିତ ଧ୍ୱନି ତ୍ରୁଟେ କଳକଣ୍ଠ ସରୁତ
ଅଚର ପ୍ରଶ୍ନ ଧ୍ୱନି ତା'ର ଦଶେ ଦଶେତ
କେକାର ସଙ୍ଗୀତରେ କାମୁକ ଉଲ୍ଲାସ
ଧରମଣି ଆଚ୍ଛାଦନେ ଘନ ବିଳାସ
ବିଖ୍ୟାତ ରସରେ ଇଚ୍ଛି ଲୁପ୍ତ ବର୍ଣ୍ଣର
ସୁମନରେ ମୋଦେ ଜନ ବୃନ୍ଦ ବନ୍ଧୁର ।"

—କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ
( କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ )

।। ସେଇ ବରେଣ୍ୟ କବି ପ୍ରତିଭାଙ୍କୁ ଯୁଗ ପ୍ରଣାମ ।।

**ଶ୍ରୀଯୁକ୍ତ ମୃତ୍ୟୁଞ୍ଜୟ ତ୍ରିପାଠୀ**
ଉପ-ଜିଲ୍ଲାପାଳ
ଭଞ୍ଜନଗର : ଗଞ୍ଜାମ

ଶୁଭେଚ୍ଛା ସହ

ଚଳଚ୍ଚିତ୍ର ନିର୍ମାତା, ନିର୍ଦ୍ଦେଶକ, ଅଭିନେତା

ନାଟ୍ୟକାର ଶ୍ରୀ ମନ୍ମଥ କୁମାର ଶତପଥୀ

ଯୋଗେଶ୍ୱର ପାଟଣା

ସୁନ୍ଦରପଦା

ଭୁବନେଶ୍ୱର

ପୁରୀ

# ଶୁ
# ଭେ
# ଚ୍ଛା



ଶ୍ରୀମାନ୍ ବିକ୍ରମକେଶରୀ ଆରୁଖ୍

ଏମ୍. ଏ., ଏଲ୍. ଏଲ୍. ବି

ଅଧ୍ୟକ୍ଷ

ଭଂଜନଗର ପଞ୍ଚାୟତ ସମିତି

ଭଂଜନଗର : ଗଞ୍ଜାମ



"ଘୁମୁସର ଆଜି ଯେଉଁ କବି ପ୍ରତିଭା ନିମନ୍ତେ ଭଂଜ ଭୂମି ଭାବରେ ବିଖ୍ୟାତ, ସେହି କବି ସମ୍ରାଟ, ଶବ୍ଦ ସମ୍ରାଟ, ସଂଗୀତ ସମ୍ରାଟ୍ ଉପେନ୍ଦ୍ର ଭଂଜଙ୍କ ସୃଷ୍ଟିର ଅଧିକତର ପ୍ରଚାର ଓ ପ୍ରସାର ନିମନ୍ତେ ବହ୍ନିବ ପତ୍ରିକାର ରହିଛି ଅନବଦ୍ୟ ଅବଦାନ ।"

—ବିକ୍ରମ

● ଶୁଭେଚ୍ଛା ସହ



ଶ୍ରୀଯୁକ୍ତ ରାଧାକାନ୍ତ ପଣ୍ଡା

ଯୁବନେତା ଓ କଣ୍ଟ୍ରାକ୍ଟର

ତୁଳସୀପଲ୍ଲୀ

ଭଞ୍ଜନଗର, ଗଞ୍ଜାମ

## ॥ ଆମର ପ୍ରେରଣା ଆମର ଶୁଭେଚ୍ଛୁ ॥

- ଡ଼ାକ୍ତର ଶ୍ରୀମତୀ ବାସନ୍ତୀ ମହାପାତ୍ର
- ଡ଼ାକ୍ତର ଶ୍ରୀଯୁକ୍ତ ଦାଶରଥି ମହାପାତ୍ର
- ଡ଼ାକ୍ତର ଶ୍ରୀଯୁକ୍ତ ପାଣ୍ଡୁ ନାୟକ

- ଆଡ଼ଭୋକେଟ୍ ଶ୍ରୀଯୁକ୍ତ ଲକ୍ଷ୍ମୀ ନାରାୟଣ ଦାସ
- କାନ୍ସନ୍ସିଲର୍ ଶ୍ରୀଯୁକ୍ତ ଦର୍ପସିଂହ ଷଡ଼ଙ୍ଗୀ
- ଶ୍ରୀଯୁକ୍ତ ଦେବେନ୍ଦ୍ର ନାଥ ଗୌଡ

- ଶ୍ରୀଯୁକ୍ତ ଶ୍ରୀହର୍ଷ ରଥ
- ଶ୍ରୀଯୁକ୍ତ ଅଶୋକ କୁମାର ହୋତା
- ଶ୍ରୀଯୁକ୍ତ ଲକ୍ଷ୍ମୀଧର ମହାନ୍ତ ଓ. ଏ. ଏସ୍.

- ଶ୍ରୀଯୁକ୍ତ ଅନୁପମ ବାନାର୍ଜି
- ଶ୍ରୀଯୁକ୍ତ ପ୍ରଦୀପ କୁମାର ସିହ୍ନା
- ଶ୍ରୀଯୁକ୍ତ ଈଶ୍ବର ପ୍ରସାଦ ସାହୁ

- ଶ୍ରୀଯୁକ୍ତ ଶିବ ପ୍ରସାଦ ପାଢ଼ୀ
- ଶ୍ରୀଯୁକ୍ତ ଗଣେଶ୍ବର ପାତ୍ର
- ଶ୍ରୀମତୀ କଲ୍ୟାଣୀ ପାଢ଼ୀ

- ସମାଜସେବୀ ଶ୍ରୀଯୁକ୍ତ ପିତାମ୍ବର ପଟ୍ଟନାୟକ



# ॥ କୃତଜ୍ଞତାର ପୃଷ୍ଠା ॥



ପ୍ରଫେସର ଡ଼କ୍ଟର ଶ୍ରୀ **ସୁଦର୍ଶନ ଆଚାର୍ଯ୍ୟ** * ଭାଷାବିତ୍ ପ୍ରାବନ୍ଧିକ ଶ୍ରୀ **ମାଗୁଣି ଦାଶ** * କବି ଆଡ୍‌ଭୋକେଟ୍ ଶ୍ରୀ **ରବୀନ୍ଦ୍ରନାଥ ଦାସ** * ଗାଳ୍ପିକ ଶ୍ରୀ **ରାଧାମୋହନ ଷଡ଼ଙ୍ଗୀ** * ପ୍ରାବନ୍ଧିକ ଶ୍ରୀ **ରାଜେନ୍ଦ୍ର ପ୍ରସାଦ ଷଡ଼ଙ୍ଗୀ** * ଅଧ୍ୟାପକ ଡ଼ଃ **ହରିହର ମିଶ୍ର** କଳାକାର ଶ୍ରୀ **ଉପେନ୍ଦ୍ର କୁମାର ଶତପଥୀ** * ସାମ୍ବାଦିକ ଶ୍ରୀ **ଦିଲ୍ଲୀପ ଗୁଣ୍ଡୁ଼ା** * ସାମ୍ବାଦିକ ଶ୍ରୀ **ଚନ୍ଦ୍ରଶେଖର ମିଶ୍ର** * ଗାଳ୍ପିକ ଶ୍ରୀ **ଚିତ୍ତରଂଜନ ତ୍ରିପାଠୀ** * କଳାକାର ଶ୍ରୀ **ସୁଧୀନ୍ଦ୍ର କୁମାର ସାହୁ** * କବି ସଂପାଦକ ଶ୍ରୀ **କ୍ଷିତୀକୃଷ୍ଣ ଚୌଧୁରୀ** * ପ୍ରାବନ୍ଧିକ ଶ୍ରୀ **ଅରୁଣାଞ୍ଚଳ ପଣ୍ଡା** * କବି ଶ୍ରୀ **ବଟକୃଷ୍ଣ ପାତ୍ର** * ଚିତ୍ରଶିଳ୍ପୀ **ଦିଲ୍ଲୀପ କୁମାର ତ୍ରିପାଠୀ** * କବି **ଅଶୋକ କୁମାର ସାହୁ** * ଧାର୍ମିକ **ପ୍ରବକ୍ତା-ସଚି ରାଉ** * କବୟିତ୍ରୀ-**ଆରତୀ ଶତପଥୀ** * ଲେଖକ-ଦିଲ୍ଲୀପ କୁମାର ନନ୍ଦ * ପ୍ରାବନ୍ଧିକ ଶ୍ରୀ **ବିଭୂତିଭୂଷଣ ଆଚାର୍ଯ୍ୟ**

# ॥ ଭଂଜ ଯୁବ ସାହିତ୍ୟ ସଂସଦ ॥

## ଭଞ୍ଜନଗର : ଗଞ୍ଜାମ

॥ ଉପଦେଷ୍ଟା ॥

ଡକ୍ଟର୍ ନିଶାକର ପାଢ଼ୀ
ଶ୍ରୀଯୁକ୍ତ ଭଗୀରଥି ବେହେରା
ଶ୍ରୀଯୁକ୍ତ ସରୋଜ ରଞ୍ଜନ ଦାସ

॥ ସଂପାଦକ ॥
ଶ୍ରୀଯୁକ୍ତ ପ୍ରଶାନ୍ତ ମହାନ୍ତି

॥ ସଭାପତି ॥
ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ଜେନା

॥ ସହ-ସଂପାଦକ ॥
ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ସ୍ୱାଇଁ
ଶ୍ରୀଯୁକ୍ତ କୈଳାସ ଚନ୍ଦ୍ର ବେହେରା

॥ ଉପ-ସଭାପତି ॥
ଡକ୍ଟର୍ ଲମ୍ବୋଦର ପାଣିଗ୍ରାହୀ

॥ ସଭ୍ୟବୃନ୍ଦ ॥

ଶ୍ରୀଯୁକ୍ତ ଏ: ବିଶ୍ୱନାଥ ପାତ୍ର
ଶ୍ରୀଯୁକ୍ତ ଶୂଳପାଣି ଶତପଥୀ
ଶ୍ରୀଯୁକ୍ତ ଦୁଃଖୀଶ୍ୟାମ ପ୍ରଧାନ
ଅଧ୍ୟାପକ କୁମୁଦ୍‌କାନ୍ତ ରଥ
ଶ୍ରୀଯୁକ୍ତ ବଂଶୀଧର ଷଡ଼ଙ୍ଗୀ
ଶ୍ରୀଯୁକ୍ତ ପଞ୍ଚାନନ ପାଲ
ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ପ୍ରଧାନ
ଶ୍ରୀଯୁକ୍ତ ସୀମାଞ୍ଚଳ ବେହେରା
ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ପଣ୍ଡା
ଡକ୍ଟର୍ ପ୍ରଦୀପ ପଟ୍ଟନାୟକ
ଏବଂ ଶ୍ରୀଯୁକ୍ତ ବାଲକୃଷ୍ଣ ପଟ୍ଟନାୟକ

## ॥ ସଂପାଦକୀୟ ॥

ସାତ ସମୁଦ୍ର ପାରି ହୋଇ ଆସିଛି ଆମର ବନ୍ଦନ : ଲାବଣ୍ୟବତୀ, ବୈଦେହୀଶ ବିଳାସ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମ ସୁଧାନିଧି, ସୁଭଦ୍ରା ପରିଣୟ, ରସିକ ହାରାବଳୀ ଓ ରସଲେଖା ଉପରେ ବିଶେଷାଙ୍କମାନ ପ୍ରକାଶ କରି ତା'ର ଯାତ୍ରା ସମାପ୍ତ ପ୍ରାୟ !

ଉପର୍ଯ୍ୟୁକ୍ତ ସପ୍ତ କାବ୍ୟକୁ ଆମେ ବିଶାଳ ବିପୁଳ ଭଞ୍ଜ ସାହିତ୍ୟ ମଧ୍ୟରୁ ସପ୍ତ ଐଶ୍ୱର୍ଯ୍ୟ ଭାବରେ ବିଚାର କରିଛୁ—କାରଣ, ଏଥିରେ କବି ପ୍ରତିଭାର ସପ୍ତସ୍ୱର ପ୍ରତିଧ୍ୱନିତ ଏବଂ ଏଥିରେ ରହିଛି କାବ୍ୟ ବିଭବ ସଂପର୍କିତ ସପ୍ତରଙ୍ଗର ବର୍ଣ୍ଣାଳୀ । ତେଣୁ ଏ ସବୁର ଯଥା ସମ୍ଭବ ବ୍ୟବଚ୍ଛେଦ କରାଇପାରି ଆମେ ଆଜି କୃତକୃତ୍ୟ । 'ବନ୍ଦନ' ପରିବାରରେ ସେଥିପାଇଁ ସାଫଲ୍ୟର ପରିତୃପ୍ତି ।

ଏହାପରେ ଭଂଜୀୟ ଅନ୍ୟାନ୍ୟ କାବ୍ୟ ସମ୍ବନ୍ଧିତ ସଂକଳନଟିଏ ପ୍ରକାଶ କରିବାର ଯୋଜନାରେ ଆମେ । 'ବନ୍ଦନ'ର ଏହି ସୁବୃହତ୍ ସଂକଳନ ନିମନ୍ତେ ଲେଖକ ଓ ପାଠକମାନଙ୍କ ଠାରୁ ଆମେ ପୂର୍ବବତ୍ ଆନ୍ତରିକତା କାମନା କରୁ ॥

# ॥ ଭଞ୍ଜଙ୍କ ସମ୍ପର୍କରେ ପ୍ରକାଶିତ ପୁସ୍ତକ ॥

( 'ବହୁଳ'ର ପୂର୍ବବର୍ତ୍ତୀ ସଂଖ୍ୟା ଗୁଡ଼ିକରେ ପ୍ରକାଶିତ ତାଲିକା ଉତ୍ତାରେ )

୫୨) ଚଉପଦୀକାର ଉପେନ୍ଦ୍ର : ଏକ ସମୀକ୍ଷା—ଡକ୍ଟର ଲମ୍ବୋଦର ପାଣିଗ୍ରାହୀ
(ଉପ ସଭାପତି, ଭଞ୍ଜ ଯୁବ ସାହିତ୍ୟ ସଂସଦ, ଭଞ୍ଜନଗର, ଗଞ୍ଜାମ)

୫୩) ଅମର କବି ଉପେନ୍ଦ୍ର ଭଞ୍ଜ —ଶ୍ରୀ ଗୌରୀ କୁମାର ବ୍ରହ୍ମା

୫୪) ଭଞ୍ଜଙ୍କ ନିର୍ବାଚନ ଇସ୍ତାହାର —ଶ୍ରୀ ଗୌରୀ କୁମାର ବ୍ରହ୍ମା

୫୫) ଭଞ୍ଜୀୟ କାବ୍ୟ କଳା ଓ ବୈଦେହୀଶ ବିଳାସ
—ଡକ୍ଟର ପ୍ରଫୁଲ୍ଲ କୁମାର ଦାଶ

୫୬) ଉପେନ୍ଦ୍ର ଭଞ୍ଜଙ୍କ ଚଉତିଶା ପରିକ୍ରମା
—ଅଧ୍ୟାପକ ଗୌରାଙ୍ଗ ଚରଣ ପଣ୍ଡା

୫୭) ବୈଦେହୀଶ ବିଳାସର ମଙ୍ଗଳାଚରଣ —ଶ୍ରୀ ଗୌରିଶ୍ୟାମ ଦାସ

୫୮) ଉପେନ୍ଦ୍ର ଭଞ୍ଜଙ୍କ ଭଜନ ଓ ସଙ୍ଗୀତ —ଶ୍ରୀ ମାଗୁଣି ଦାସ

୫୯) ଭଞ୍ଜ ଗୀତାଭିଧାନ —ପଣ୍ଡିତ ଶ୍ରୀ ଚନ୍ଦ୍ରଶେଖର ଆଚାର୍ଯ୍ୟ

୬୦) ଭଞ୍ଜ କାବ୍ୟ କାହାଣୀ ମାଳା ( ୧, ୨ ) —ଶ୍ରୀ ଭଗୀରଥି ନେପାକ

୬୧) ଲାବଣ୍ୟବତୀ —ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର

୬୨) ଉପେନ୍ଦ୍ର ଭଞ୍ଜଙ୍କ ଚଉପଦୀ : ସମୀକ୍ଷା ଓ ସଙ୍ଗ୍ରହ—ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର

୬୩) ରସିକ ଉପେନ୍ଦ୍ର ଭଞ୍ଜ ରହସ୍ୟ —ଶ୍ରୀ ଚନ୍ଦ୍ର ଶେଖର ନନ୍ଦ

୬୪) କଥା ଲାବଣ୍ୟବତୀ —ଶ୍ରୀ କିଶୋର ଚନ୍ଦ୍ର ପଣ୍ଡା

## ସ୍ମରଣୀକା —

୧୮) ଭଞ୍ଜ ସୌରଭ (ଭଞ୍ଜ ସ୍ମରଣିକା)
—କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟ-୧୯୯୨

୧୯) ଭଞ୍ଜ ସ୍ମରଣିକା ( ୨୪, ୨୫ ଅର୍ଘ୍ୟ )
—ଆଦର୍ଶ ପାଠାଗାର, ରାଉରକେଲା-୧୯୯୩

୨୦) ଉତ୍କଳ ପ୍ରସଙ୍ଗ (ଭଞ୍ଜ ବିଶେଷାଙ୍କ) —ମେ ୧୯୯୩




ସୂଚୀପତ୍ର

# ।। ଊନବିଂଶ ଶତାବ୍ଦୀର ଭଞ୍ଜସାହିତ୍ୟ ସମାଲୋଚନା ।।

❀ ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର

ଓଡ଼ିଶାରେ ସମାଲୋଚନା ସାହିତ୍ୟର କୋଣ ଆଧୁନିକ ଯୁଗରେ ହୋଇଲେ ହେଁ ଏହାର ପ୍ରବୃତ୍ତି ପ୍ରାଚୀନ କାଳରୁ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସାହିତ୍ୟ ମୁଦ୍ରିତ ରୂପ ଗ୍ରହଣ କରିବା ପୂର୍ବରୁ ଏହି ପ୍ରବୃତ୍ତିର ନିଦର୍ଶନ ପ୍ରାଚୀନ ତାଳପତ୍ର ପୋଥିରେ ପରିଦୃଷ୍ଟ ହୋଇଥିଲା । ମଧ୍ୟ ଯୁଗରେ ରଚିତ ବିଭିନ୍ନ ଅଳଙ୍କାର ଶାସ୍ତ୍ର, କାବ୍ୟ କବିତାଦି ରଚନାର ଆଦର୍ଶ, କାବ୍ୟ ମଧ୍ୟରେ କାବ୍ୟ ପାଠକ ନିରୂପଣ, ସାଧୁ ସ୍ତୁତି, ଖଳନିନ୍ଦା ଓ ବିଭିନ୍ନ ଟୀକା ଗ୍ରନ୍ଥକୁ ପ୍ରତ୍ୟକ୍ଷ ସମାଲୋଚନା ସାହିତ୍ୟ ରୂପେ ସ୍ୱୀକୃତି ପ୍ରଦାନ କରାନଗଲେ ମଧ୍ୟ ଏହାର ଅନ୍ତରାଳରେ ଯେ ସାହିତ୍ୟ ସମାଲୋଚନାର ପ୍ରବୃତ୍ତିଟି ରହିଥିଲା ତାହା ଅନସ୍ୱୀକାର୍ଯ୍ୟ ।

ଏହି ଦୃଷ୍ଟିରୁ ବିବେଚନା କଲେ ଭଞ୍ଜ ସାହିତ୍ୟର ଆଦ୍ୟ ସମାଲୋଚନା ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧରୁ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ମଧ୍ୟରେ ହୋଇଥିବା ବିଭିନ୍ନ ଟୀକା ଗ୍ରନ୍ଥକୁ ଗ୍ରହଣ କରାଯାଇପାରେ । ଏହି ଟୀକାକାର-ମାନଙ୍କ ମଧ୍ୟରେ କୃଷ୍ଣଦାସ, ଲୋକନାଥ ଦାସ ଆଦି ଅନ୍ୟତମ । କୃଷ୍ଣ ଦାସ ଉପେନ୍ଦ୍ର ଭଞ୍ଜ କୃତ 'ଲାବଣ୍ୟବତୀ'ର ଗଦ୍ୟଟୀକାକୁ ଦିବ୍ୟସିଂହ ଦେବ ୩ୟଙ୍କ ୨ୟ ଅଙ୍କ ଖ୍ରୀ: ୧୮୫୯ ରେ ଶେଷ କରିଥିବା କଥା ଉକ୍ତ ପୋଥିରେ ଉଲ୍ଲେଖ କରିଛନ୍ତି । (୧) ସେହିଭଳି ବୈଦେହୀଶ ବିଳାସ, ସୁଭଦ୍ରା ପରିଣୟ ଆଦିର ଟୀକା ଲୋକନାଥ ଦାସଙ୍କ ଦ୍ୱାରା ଓ ଅବକାରସ ତରଙ୍ଗର ଟୀକା ଲୋକନାଥ ପଟ୍ଟନାୟକଙ୍କ ଦ୍ୱାରା ଊନବିଂଶ ଶତାବ୍ଦୀରେ ହୋଇଥିବାର ଜଣାଯାଏ ।

---

୧) ଓଡ଼ିଆ ସାହିତ୍ୟର ଇତିହାସ (୪ର୍ଥ ଭାଗ), ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, କଟକ : ଗ୍ରନ୍ଥ ମନ୍ଦିର, ୧୯୭୧, ପୃ. ୧୬୬ ।

ଉପରୋକ୍ତ ଟୀକାକାରମାନଙ୍କ ଟୀକାକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସେମାନେ ମୂଳ ପାଠକୁ ବୋଧଗମ୍ୟ କରିବା ପରିବର୍ତ୍ତେ ଅବୋଧ କରି ଦେଇଛନ୍ତି । କେବଳ ସେତିକି ନୁହେଁ ସଂସ୍କୃତ ଭାଷା ଓ କଥନ ଭଙ୍ଗୀର ପ୍ରଭାବ ମଧ୍ୟ ଏଥିରେ ପ୍ରତିଫଳିତ ହୋଇଛି । ଏତଦ୍ ବ୍ୟତୀତ ସଂସ୍କୃତ ସାହିତ୍ୟରେ ପ୍ରଯୁକ୍ତ ଭଙ୍ଗୀକୁ ମଧ୍ୟ ଉଦାହରଣ ରୂପେ ନିଆଯାଇଛି ।

ଊନବିଂଶ ଶତାବ୍ଦୀରେ ଭଞ୍ଜ ସାହିତ୍ୟ ସମ୍ପର୍କିତ ଆଦ୍ୟ ଆଲୋଚନା ଓଡ଼ିଆ ଭାଷାରେ ହେବା ପୂର୍ବରୁ ପ୍ରଥମେ ୧୮୬୪ ମସିହାରେ ରାଜେନ୍ଦ୍ର ଲାଲ ମିତ୍ରଙ୍କ ଦ୍ୱାରା ସମ୍ପାଦିତ "ରହସ୍ୟ ସନ୍ଦର୍ଭ" (୨) ପତ୍ରିକାରେ ରଙ୍ଗଲାଲ ବନ୍ଦୋପାଧ୍ୟାୟ "ଉପେନ୍ଦ୍ର ଭଞ୍ଜ" ଶୀର୍ଷକ ପ୍ରବନ୍ଧ ଲେଖି ଭଞ୍ଜ ସାହିତ୍ୟାଲୋଚନାର ଶୁଭାରମ୍ଭ କରିଥିଲେ । ଉକ୍ତ ପ୍ରବନ୍ଧରେ ଆଲୋଚକ ଭଞ୍ଜଙ୍କର ୫୨ ଗୋଟି ବହିଥିବା କଥା ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ୧୭ଟି ବହିର ନାମ ପ୍ରଦାନ କରିଥିଲେ । ଭଞ୍ଜଙ୍କ ସମ୍ପର୍କରେ ରଙ୍ଗଲାଲଙ୍କର ମନ୍ତବ୍ୟ ଥିଲା, "ବର୍ତ୍ତମାନ ସଂଖ୍ୟାୟ ତଦେଶୀୟ ଦ୍ୱିତୀୟ ସୁବିଖ୍ୟାତ କାବ୍ୟକାର ଉପେନ୍ଦ୍ର ଭଞ୍ଜେର ବିଷୟେ କଥାଞ୍ଚିତ ଲିପି କରିତେଛି; ପାଠକ ମହାଶୟେରା ତତ୍ପାଠେ ବୁଝିତେ ପାରିବେନ୍, ଉତ୍କଳ ଭାଷାୟ କବିତ୍ୱର ସବିଶେଷ ଚର୍ଚ୍ଚା ହଇୟାଛିଲ ।" (୩) ଏହାଙ୍କ ପୂର୍ବରୁ Rev. J. Long ସାହେବ ୧୮୫୯ ମସିହାରେ 'ଓଡ଼ିଶା ଭ୍ରମଣ' (୪) ସମ୍ପର୍କିତ ଏକ ବୃତ୍ତାନ୍ତ ମଧ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ରସ ବିଷୟକ ବୈଦେହୀଶ ବିଳାସ, ଲାବଣ୍ୟବତୀ, ରସମଞ୍ଜରୀ ଓ ରସପଞ୍ଚକ ଆଦି କେତେକ ଗ୍ରନ୍ଥର ସୂଚନା ଦେଇଥିଲେ ମଧ୍ୟ ରଙ୍ଗଲାଲଙ୍କ ଭଳି ଭଞ୍ଜସାହିତ୍ୟର ଆଲୋଚନା କରିନଥିଲେ ।

ଏହାପରେ ଊନବିଂଶ ଶତାବ୍ଦୀରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଓଡ଼ିଆରେ ପ୍ରକାଶିତ ଉତ୍କଳଦୀପିକା, ଉତ୍କଳ ପୁତ୍ର, ଉତ୍କଳ ମଧୁପ, ଉତ୍କଳ ପ୍ରଭା, ସମ୍ବଲପୁର ହିତୈଷିଣୀ, ନବସମ୍ବାଦ, ଓଡ଼ିଆ ଓ ନବ ସମ୍ବାଦ, ଓ ସମ୍ବାଦ ବାହିକା ଆଦି

---

୨) ରହସ୍ୟ ସନ୍ଦର୍ଭ ୨ୟ ପର୍ବ ୧୭ ଖଣ୍ଡ ୧୮୬୪ ମସିହା । ପୁନର୍ମୁଦ୍ରଣ- ବନ୍ଧନ-୮ (ରସିକ ହାରାବଳୀ ବିଶେଷାଙ୍କ) ଭଞ୍ଜନଗର : ୧୯୯୧ ପୃ.ଗ.ରୁଜ

୩) ବନ୍ଧନ-୮, ପୃ.ଗ

୪) Notes and queries suggested by a visit to Orissa in January 1859 by Rev. J. Long, J. A. S. B. Vol. XXVIII. No. III, Calcutta : 1859, P. 189-190.

ଏହି ପତ୍ରିକାରେ ତତ୍କାଳୀନ ଓଡ଼ିଶାର ବିଭିନ୍ନ ପ୍ରସଙ୍ଗ ସଙ୍ଗେ ସଙ୍ଗେ ସାହିତ୍ୟ ଆଲୋଚନା ମଧ୍ୟ ସ୍ଥାନ ପାଇଥିଲା । ଏହି ସାହିତ୍ୟାଲୋଚନା ମଧ୍ୟରେ ଓଡ଼ିଶାର ପ୍ରାଚୀନ ତଥା ତତ୍କାଳୀନ ସାହିତ୍ୟ ସମ୍ପର୍କରେ କେତେକ ଆଲୋଚନା ସହିତ ଉପେନ୍ଦ୍ର ସାହିତ୍ୟ ସମୀକ୍ଷା ସମୟାନୁକ୍ରମେ ମୁଖ୍ୟ ଆସନ ଲାଭ କରିଥିଲା ।

ସେ ସମୟର ସାପ୍ତାହିକ ପତ୍ରିକା 'ଉତ୍କଳ ଦୀପିକା'ରେ ଉପେନ୍ଦ୍ର ଭଞ୍ଜଙ୍କ ସୃଷ୍ଟି ସମ୍ପର୍କରେ ଉଲ୍ଲେଖ କରାଯାଇଥିଲା, "କି ଆଦିରସ କି ବୀରରସ କି ଭକ୍ତିରସ କି କରୁଣରସ ସକଳ ବିଷୟ ରଚନାରେ ଉପେନ୍ଦ୍ର ଭଞ୍ଜ ଅଦ୍ୱିତୀୟ କବିତ୍ୱ ଶକ୍ତି ପ୍ରକାଶ କରିଯାଇଅଛନ୍ତି; ବିଶେଷରେ ଯମକ ଓ ଶ୍ଳେଷ ପଦ ରଚନାରେ ଯେପରି ନିପୁଣତା ଦେଖାଇଅଛନ୍ତି; "ଆମ୍ଭେ ସାହସ କରି କହିପାରୁ ସଂସ୍କୃତ ଭିନ୍ନ ଭାରତ ବର୍ଷୀୟ ଏମନ୍ତ ଭାଷାର କାବ୍ୟକାର ନାହାନ୍ତି ଯେ ଯାହାଙ୍କ ସହିତ ତୁଳନା ହୋଇପାରେ" । (୫) ୧୮୬୭ ମସିହାରେ ଉକ୍ତ ପତ୍ରିକାର ସମ୍ପାଦକ ଗୌରୀଶଙ୍କର ସ୍ୱୟଂ ଏଭଳି ମନ୍ତବ୍ୟ ପ୍ରଦାନ କରିଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଉପେନ୍ଦ୍ର ଭଞ୍ଜଙ୍କ ସମ୍ପର୍କିତ ଅନ୍ୟାନ୍ୟ ଅନେକ ଆଲୋଚନା ଏଥିରେ ସ୍ଥାନ ପାଇଥିଲା ।

୧୮୭୮ ମସିହାରେ ବଙ୍ଗଳା 'କବିତାବଳୀ'ରେ କବିବର ରାଧାନାଥ ଉପେନ୍ଦ୍ର ଭଞ୍ଜଙ୍କର ଭୂୟସୀ ପ୍ରଶଂସା କରି ଉଲ୍ଲେଖ କରିଥିଲେ :—

"ଧନ୍ୟ ରାଜକବି ତୁମି ! ଜନମ ସୁକ୍ଷଣେ
ଗ୍ରହିଲ ଏ ପ୍ରଦେଶେ ହେ କବୀନ୍ଦ୍ର ମଣି !
ସୁରଶଶ୍ରୀ ସୁଧମୟେ ସରସ ଲେଖନୀ
ଧରିଲ ଉପେନ୍ଦ୍ର ! ମରି ଯେ ଚାରୁ ଭୂଷଣେ
ସାଜାୟେଛ ବୈଦେହୀରେ ହେ କବିରତନ
ତୋମା ବିନା ସାଧକାର ସାଜାୟ ଏମନ ।" (୬)

---

୫) ଉତ୍କଳଦୀପିକା (୧/୧୨) ତା ୨୦-୧୦-୧୮୬୭ । ପୁନର୍ମୁଦ୍ରଣ — ଉତ୍କଳ ଦୀପିକା– ୧୮୬୭, ଉତ୍କଳ ବଂଶୀଧର ମହାନ୍ତି, କଟକ: ଫ୍ରେଣ୍ଡସ୍ ପବ୍ଲିଶର୍ସ, ୧୯୭୮ ପୃ-୨୨୨ ।

୬) କବିତାବଳୀ (୧ମ ଭାଗ) ୧୮୭୮ରେ ପ୍ରଥମେ ପ୍ରକାଶ ପାଇଥିଲା ଓ ପରେ ଲେଖାବଳୀ ୧୯୦୨ରେ ମଧ୍ୟ ପ୍ରକାଶ ପାଇଲା ।

ଏହାର କିଛିଦିନ ପରେ ୧୮୭୨ ମସିହାରେ ବୀମ୍ସ ସାହେବ ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀର ଏକ ତାଲିକା ପ୍ରଦାନ କରିବା ସଙ୍ଗେ ସଙ୍ଗେ ଉଲ୍ଲେଖ କରିଥିଲେ, "The above thirty works are by the celebrated Upendra Bhanja of Gunsar." (୭) ଏହି ବର୍ଷ ହଣ୍ଟର ସାହେବ ଏ ଦେଶର ଅତୀତ ପ୍ରତି ଦୃଷ୍ଟି ନିକ୍ଷେପ କରିବା ସଙ୍ଗେ ସଙ୍ଗେ ଭାରତର ଅଞ୍ଚଳିକ ଭାଷାପ୍ରତି ମଧ୍ୟ ଦୃଷ୍ଟି ପାତ କରିଥିଲେ । ଏ ଦେଶର ସାରସ୍ବତ ସୃଷ୍ଟି ସମ୍ପଦର ସୂଚନା ଦେବା ସମୟରେ ସେ ମଧ୍ୟ ଉପେନ୍ଦ୍ର ଭଞ୍ଜଙ୍କର ୪୨ ଗୋଟି ବହିର ଏକ ତାଲିକା ପ୍ରଦାନ କରିଥିଲେ । (୮)

୧୮୭୪ ମସିହାରେ 'ଉତ୍କଳପୁତ୍ର' ପତ୍ରିକାର "ଉତ୍କଳ ସାହିତ୍ୟ" ଶୀର୍ଷକ ମଧ୍ୟରେ ଏ ଦେଶର ସୃଷ୍ଟି ସମ୍ପଦକୁ ସମୀକ୍ଷା କରାଯାଇଥିଲା । ଏହି ସାରସ୍ବତ ସୃଷ୍ଟି ସମ୍ପଦ ମଧ୍ୟରେ ଥିବା ଗତାନୁଗତିକ ନଗ୍ନ ପ୍ରେମ ଚିତ୍ରର କଠୋର ସମାଲୋଚନାକରି ସମ୍ପାଦକ ପ୍ୟାରୀମୋହନ ଆଚାର୍ଯ୍ୟ ଉଲ୍ଲେଖ କରିଥିଲେ, "ଶୃଙ୍ଗାରସାହିତ୍ୟର ଗନ୍ଧ ସ୍ଥୂଳରେ ଆନନ୍ଦଦାୟକ ନୁହେଁ । ତେବେ ଏ ବିଷୟରେ ପ୍ରକୃତ ଯାହାକିଛି ଅଛି ତାହା କେବଳ ପୂର୍ବକାଳୀୟ ଦୀର୍ଘ ଛନ୍ଦୋଡ଼ମ୍ବର ବିଶିଷ୍ଟ, ସାତ୍ତ୍ୱିକ ଭାବପୂର୍ଣ୍ଣ, ଅଶ୍ଳୀଳ ଭାଷା ମଣ୍ଡିତ ଓ ସ୍ଥାନ ସ୍ଥାନରେ ଅବଶ୍ୟ ହୃଦୟ ମୋହନକାରୀ ସରଳ ଭାଷାରେ ଲିଖିତ, ସୁଲଳିତ ଓ ସ୍ୱାଭାବିକ ଭାବଯୁକ୍ତ ଭଞ୍ଜ, ବ୍ରହ୍ମା, ଦାସ, ସାମନ୍ତସିଂହାର ପ୍ରଭୃତି କବି କବିମାନଙ୍କ ଲୌହ ଲେଖନୀ ସମ୍ଭୂତ ଖଣ୍ଡେ କେତେ କାବ୍ୟ ! (୯) ଏହି ପତ୍ରିକା ପ୍ରାଚୀନ ସାହିତ୍ୟ ସମୀକ୍ଷା ସମୟରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ସମ୍ପଦ ଉପରେ ସାମାନ୍ୟ ଦୃଷ୍ଟିପାତ କରିଥିବା ପରି ମନେ ହୁଏ ।

ଏହାପରେ ଓଡ଼ିଶାର ଦ୍ୱିତୀୟ ସାହିତ୍ୟ ପତ୍ରିକା ରୂପେ ଖ୍ୟାତି ଅର୍ଜନ କରିଥିବା 'ଉତ୍କଳ ମଧୁପ' କଟକ ଉତ୍କଳ ସଭାର ମୁଖପତ୍ର ଭାବେ ୧୮୭୮ ମସିହା

---

୭) The Indigenious Literature of Orissa-- Indian Antiquary, 1.March, 1872, P.80

୮) The Literature of Orissa (Vol II), London, 1872, P. 208-209.

୯) ଉତ୍କଳ ପୁତ୍ର (୨ । ୪) ତା ୩୦-୭-୧୮୭୪, ପୃ-୧୫ ।

ଏପ୍ରିଲ ମାସରେ ଆତ୍ମପ୍ରକାଶ କରିଥିଲା । ଏହି ପତ୍ରିକାର ଲକ୍ଷ୍ୟ ଥିଲା, "ଉତ୍କଳର ପ୍ରାଚୀନ କବି ଉପେନ୍ଦ୍ର ଭଞ୍ଜ ପ୍ରଭୃତିଙ୍କ ରଚିତ କବିତା ମାନଙ୍କର ସମାଲୋଚନା ଏବଂ ତନ୍ମଧ୍ୟର ଦୋଷ ଗୁଣ ଦେଖିବା ।" (୧୦) ତେଣୁ ଏହି ସଭାରେ ଭଞ୍ଜୀୟ କାବ୍ୟାଲୋଚନା କରାଯାଉଥିବା କଥା ଜଣେ ଦର୍ଶକ ଗୋଟିଏ କ୍ଷୁଦ୍ର କବିତାରେ (୧୧) ନିମ୍ନୋକ୍ତ ପ୍ରକାରେ ଉଲ୍ଲେଖ କରିଥିଲେ :—

"ଲାବଣ୍ୟ ବତୀର ଅର୍ଥ ହେବାର ଶୁଣିଲୁ
କବିତା ଚାତୁରୀ ଦେଖି ବିମୋହିତ ହେଲୁ ।
ଧନ୍ୟ ସେ ଉପେନ୍ଦ୍ର ଭଞ୍ଜ କବି ଚୂଡ଼ାମଣି
କବିତାରେ ଝଞ୍ଜିଛନ୍ତି ଚନ୍ଦ୍ର ସୂର୍ଯ୍ୟ ଆଣି ।" ଇତ୍ୟାଦି

ଏହି ପତ୍ରିକାରେ ପ୍ରଥମେ ଉପେନ୍ଦ୍ର ଭଞ୍ଜଙ୍କର ଲାବଣ୍ୟବତୀ (୧୨) ଓ ପରେ କୋଟିବ୍ରହ୍ମାଣ୍ଡସୁନ୍ଦରୀ (୧୩) ଉପରେ ଧାରାବାହିକ ଆଲୋଚନା ପ୍ରକାଶ ପାଉଥିଲା । ଉକ୍ତ କାବ୍ୟ ଦ୍ୱୟରେ ଥିବା ଅଶ୍ଳୀଳତାକୁ କେନ୍ଦ୍ର କରି ଆଲୋଚନା ବିଶେଷ ଭାବରେ ପରିପୁଷ୍ଟ ହୋଇଥିଲା । ଉତ୍କଳ ସଭାର ନିଷ୍ପତ୍ତି ଅନୁଯାୟୀ ଲାବଣ୍ୟବତୀ ଆଲୋଚନାକୁ ବନ୍ଦକରି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଆଲୋଚନା ଆରମ୍ଭ କରିବାରୁ ଉତ୍କଳ ଦୀପିକା ଉକ୍ତ ସଭାର ବିବରଣୀକୁ ଉଦ୍ଧାର କରି କହିଥିଲେ, "ପ୍ରଥମୋକ୍ତ (ଲାବଣ୍ୟବତୀ) ପୁସ୍ତକରେ ବିଶେଷ ଅଶ୍ଳୀଳତାର ପରିଚୟ ମିଳିବାରୁ ସଭା ତାକୁ ତ୍ୟାଗ କରି ବର୍ତ୍ତମାନ ଶେଷୋକ୍ତ (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ) ଗ୍ରନ୍ଥକୁ ଗ୍ରହଣ କରିଅଛନ୍ତି ।" (୧୩)

ଏଭଳି ସଭାର ନିଷ୍ପତ୍ତି ଉପରେ ଉତ୍କଳ ଦୀପିକାର ସମ୍ପାଦକ ଏକ ମନ୍ତବ୍ୟ ପ୍ରଦାନ କରି ଉଲ୍ଲେଖ କରିଥିଲେ, "ଲାବଣ୍ୟବତୀର ଦାମ୍ପତ୍ୟ ପ୍ରଣୟର କୌଣସି ବ୍ୟଭିଚାର ନାହିଁ ଏବଂ ଆଦିରସ ଘଟିତ କାବ୍ୟରୁ ଅନ୍ୟ ଯାହା ଆଶା କରାଯାଇ ପାରେ ତାହା ଯେ ଏଥିରୁ ଲାଭ କରିବା ଅସମ୍ଭବ ଏପରି ଆମ୍ଭେ କହି ନ ପାରୁଁ । ତେବେ ପଢ଼ାଶୁଣା ଲୋକେ ଯେବେ ଯେଉଁ ଭାବ ସମୁଦ୍ରରୁ ଅମୃତ ଜାତ ହୋଇ-

୧୦) ଉତ୍କଳ ଦୀପିକା—୧୮୭୮, ପୃ-୩୨ ।

୧୧) ତତ୍ରୈବ—୧୮୭୮, ପୃ-୫୫ ।

୧୨) ଉତ୍କଳ ମଧୁପ ୧ମ ବର୍ଷ, ପୃ-୭୫, ପୃ-୮୧-୮୫, ପୃ-୧୪୫-୧୫୦, ପୃ-୧୭୧-୧୭୮ ।

୧୩) ଉତ୍କଳଦୀପିକା—୧୮୭୯, ପୃ-୧୪୭ ।

ପରେ ତାହାକୁ ବନ୍ଦ କାହାର କର ତଦ୍ୱାରା ଆପଣା ଚରିତ୍ରକୁ ନଷ୍ଟ କରିବେ, ତାହା ନିବାରଣ କରିବାକୁ ଅତ୍ୟନ୍ତ କାହାର ।" (୧୪) ମୋଟ ଉପରେ ଲବଣ୍ୟବତୀର ଅଶ୍ଳୀଳତାକୁ ଦୂର କରିବା ପାଇଁ ଉତ୍କଳ ମଧୁପ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଆଲୋଚନା ଆରମ୍ଭ କରିଥିବା କଥା ଜଣାଯାଏ ।

୧୮୮୭ ମସିହା ଜାନୁଯାରୀ ମାସରେ ଉତ୍କଳ ସାହିତ୍ୟାକାଶରେ 'ନବସମ୍ବାଦ' ନାମକ ଏକ ପତ୍ରିକା ଆବିର୍ଭୂତ ହୋଇଥିଲା । ଏହି ପତ୍ରିକାରେ (୧୫) "ଉତ୍କଳ କବିତା ଓ କବି" ଶୀର୍ଷକ ଆଲୋଚନା ମଧ୍ୟରେ ବଳରାମ ଦାସ, ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜ, ଓ ଦୀନକୃଷ୍ଣ ଆଦିଙ୍କ କୃତି ଗୁଡ଼ିକର ସୂଚନାତ୍ମକ ପରିଚୟ ପ୍ରଦାନ କରାଯାଇଥିଲା । ଏହି ପତ୍ରିକାଟି ଏକ ବର୍ଷ ମଧ୍ୟରେ ବିଲୟପ୍ରାପ୍ତ ହେବାରୁ ୧୮୮୮ ମସିହା ଜାନୁୟାରି ମାସରେ 'ଓଡ଼ିଆ ଓ ନବସମ୍ବାଦ' ନାମକ ପତ୍ରିକା ଆତ୍ମପ୍ରକାଶ କଲା ।

ଏହି ପତ୍ରିକାଟିର ତା ୨୦/୧/୧୮୮୯ ସଂଖ୍ୟାରେ 'ଉତ୍କଳ ସାହିତ୍ୟ' ଶୀର୍ଷକ ପ୍ରବନ୍ଧରେ ପ୍ରଥମେ ଭଞ୍ଜ ସାହିତ୍ୟର ତୀବ୍ର ସମାଲୋଚନା କରାଯିବା ସଙ୍ଗେ ସଙ୍ଗେ ତା ୨୦/୨/୧୮୮୯ ସଂଖ୍ୟାରେ କବିବର ରାଧାନାଥଙ୍କର ଭୂୟସୀ ପ୍ରଶଂସା ଗାନ କରାଯାଇଥିଲା । ଏହି ଆଲୋଚନା ଅବସରରେ ଆଧୁନିକ ସାହିତ୍ୟାଲୋଚନାର ଏକ ନୂତନ ଆଭିମୁଖ୍ୟ ବିଶେଷ ଭାବରେ ଆତ୍ମପ୍ରକାଶ କରିଥିଲା । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସକୁ ମୁଖ୍ୟ ଆଲୋଚ୍ୟ ବିଷୟ ରୂପେ ଏହି ପତ୍ରିକା ଗ୍ରହଣ କରିଥିଲା । (୧୬) ଏହି ଆଲୋଚ୍ୟ ବିଷୟ ମଧ୍ୟରେ ନୂତନ ରୁଚି ବୋଧ, କବିର ପାରିପାର୍ଶ୍ୱିକ ପରିବେଶ ତଥା ବାତାବରଣ, କବିର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ବୋଧ, କବିତାର ଆତ୍ମିକ ସୌନ୍ଦର୍ଯ୍ୟାନୁଶୀଳନ ଆଦି ମୁଖ୍ୟ ସ୍ଥାନ ଗ୍ରହଣ କରିଥିଲା । ଫଳରେ ଏହା ପରବର୍ତ୍ତୀ ସମାଲୋଚକମାନଙ୍କୁ ନୂତନ ଦିଗ୍‌ଦର୍ଶନ ପ୍ରଦାନ ନିମନ୍ତେ ଯଥେଷ୍ଟ ସହାୟକ ହୋଇଥିଲା ।

୧୮୯୧ ମସିହା ଏପ୍ରିଲ ମାସରେ ମୟୂରଭଞ୍ଜ ଜିଲ୍ଲାର ବାରିପଦାରୁ ଶ୍ରୀ ଚୈତନ୍ୟ ପ୍ରସାଦ ରାୟଙ୍କ ସମ୍ପାଦନାରେ 'ଉତ୍କଳ ପ୍ରଭା' ନାମକ ଏକ ମାସିକ

---

୧୪) ତତ୍ରୈବ— ପୃ–୧୪୬ ।

୧୫) ଓଡ଼ିଆ ଓ ନବସମ୍ବାଦ— ତା ୧୬।୬।୧୮୮୭, ତା ୧୪।୭।୧୮୮୭ ।

୧୬) ଓଡ଼ିଆ ଓ ନବସମ୍ବାଦ— ତା ୨୦।୨।୧୮୮୯, ପୃ–୫୦ ।

ପତ୍ରିକା ପ୍ରକାଶ ପାଇଥିଲା । ଉକ୍ତ ପତ୍ରିକାର ପ୍ରଥମ ସଂଖ୍ୟାରେ ସଂପାଦକ ପତ୍ରିକାର ଉଦ୍ଦେଶ୍ୟ ସଂପର୍କରେ ସୂଚନା ଦେଇ ସମ୍ପାଦକୀୟ ପ୍ରକାଶ କରିଥିଲେ । ତନ୍ମଧ୍ୟରେ ଓଡ଼ିଆ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ଭଞ୍ଜ ସାହିତ୍ୟକୁ ତୀବ୍ର ଭାବରେ ଆକ୍ଷେପ କରି କହିଥିଲେ, "ଭଞ୍ଜକବି ସ୍ୱୀୟ ଗ୍ରନ୍ଥମାନଙ୍କରେ ଆଦିରସ ରୂପ ହଳାହଳ ସମୁଦ୍ର ମନ୍ଥନ କରିଅଛନ୍ତି । ଏଭଳି ଗ୍ରନ୍ଥ ସମାଜର ବୈଗୁଣ୍ୟ ଜଣାଇବାକୁ ହିଁ ସକ୍ଷମ ।" (୧୭) ଏହି ପତ୍ରିକାରେ ବିଜୟ ଚନ୍ଦ୍ର ମଜୁମଦାର 'ସାହିତ୍ୟ ଚର୍ଚ୍ଚା' ଶୀର୍ଷକ ପ୍ରବନ୍ଧ ମାଧ୍ୟମରେ ଉପେନ୍ଦ୍ର ଭଞ୍ଜଙ୍କ ସମ୍ପର୍କିତ କେତେକ ବିରୋଧ ମନ୍ତବ୍ୟ ପ୍ରଦାନ କରି ଉଲ୍ଲେଖ କରିଥିଲେ, "ରୁଚି ଓ ପ୍ରବୃତ୍ତି ଅନୁସାରେ ଅନେକ ସମୟରେ ଅନେକ ଅନଷ୍ଟକାଙ୍କ୍ଷୀ ଗ୍ରନ୍ଥ ସମାଜରେ ଖ୍ୟାତି ପ୍ରାପ୍ତ ହୋଇଅଛି । ଦୃଷ୍ଟାନ୍ତ ଛଳରେ ଖ୍ୟାତନାମା କବି ଉପେନ୍ଦ୍ର ଭଞ୍ଜଙ୍କ ନାମ ଉଲ୍ଲିଖିତ ହୋଇପାରେ । (୧୮) ସଂପାଦକଙ୍କ କଟୂକ୍ତି ପୂର୍ଣ୍ଣ ଅଭିମତ ସାଙ୍ଗକୁ ବିଜୟ ଚନ୍ଦ୍ର ମଜୁମଦାରଙ୍କ ମତକୁ ସୁହାଇଲା ଭଳି ଲାଲା ରାମ ନାରାୟଣ ରାୟଙ୍କ "କବି ଉପେନ୍ଦ୍ର ଭଞ୍ଜ" ଶୀର୍ଷକ ଏକ ଧାରାବାହିକ ଆଲୋଚନା ଏହି ପତ୍ରିକାରେ ପ୍ରକାଶ ପାଇଥିଲା । (୧୯) ଲାଲା ରାମ ନାରାୟଣ ତାଙ୍କ ଆଲୋଚନା ମଧ୍ୟରେ ଆଦିରସକୁ ନିନ୍ଦନୀୟ ନୁହେଁ କହିବା ସଙ୍ଗେ ସଙ୍ଗେ ଏହାର ଅତିଶଯ୍ୟୋକ୍ତି ସର୍ବଦା ବର୍ଜନୀୟ ବୋଲି ମତବ୍ୟକ୍ତ କରିଥିଲେ ତାଙ୍କ ମତରେ ସଂସ୍କୃତ କାବ୍ୟରେ ଆଦି ରସର ବର୍ଣ୍ଣନା ଦେଖାଗଲେ ମଧ୍ୟ ତାହା ସମୁଚ୍ଚ ତଥା ଐଶ୍ୱର୍ଯ୍ୟ ପୂର୍ଣ୍ଣ । ଉପେନ୍ଦ୍ର ଭଞ୍ଜଙ୍କର ଅଧିକ ଆଦିରସର ବର୍ଣ୍ଣନାକୁ ସେ ଅତ୍ୟନ୍ତ ଉତ୍କଟ ଏବଂ କଇଁଆ ସହିତ ତୁଳନା କରିଥିଲେ । ପୁନଶ୍ଚ ଯେଉଁ ରାମଚନ୍ଦ୍ରଙ୍କୁ ଭାରତୀୟ ସମାଜ ନୂତନ ଯୁଗ ଧରି ଆଦର୍ଶ ପୁରୁଷ ଓ ନମସ୍ୟ ଦେବତା ରୂପେ କଳ୍ପନା କରି ଆସିଛି ଉପେନ୍ଦ୍ର ଭଞ୍ଜ ତାହାଙ୍କୁ କାମୁକ ଓ ଲମ୍ପଟ ରୂପେ ବୈଦେହୀଶ ବିଳାସରେ ବର୍ଣ୍ଣନା କରିବା ଅତ୍ୟନ୍ତ ପରିତାପର ବିଷୟ ବୋଲି ସେ ଉଲ୍ଲେଖ କରିଥିଲେ । (୨୦)

---

୧୭) ଉତ୍କଳପ୍ରଭା (୧।୧), ପୃ-୪ ।

୧୮) ଉତ୍କଳପ୍ରଭା (୧।୭), ପୃ-୧୭ ।

୧୯) କବିଉପେନ୍ଦ୍ର ଭଞ୍ଜ — ଉତ୍କଳପ୍ରଭା ୧।୯, ପୃ-୨୪୦-୨୪୮, ୨।୧, ପୃ-୧୯-୨୮, ୨।୫, ପୃ-୧୪୦-୧୫୮, ୨।୮ ପୃ-୨୪୪-୨୫୭, ୨।୯ ପୃ-୨୫୭-୨୬୫ ଇତ୍ୟାଦି ।

୨୦) ଉତ୍କଳ ପ୍ରଭା (୨।୧) ପୃ-୧୯ ।

ଲାଲାରାମ ନାରାୟଣ ଭଞ୍ଜ ସାହିତ୍ୟକୁ ଯତିପାତ, ଉପଧାମେଳ, ଅଳଂକାର ରସ, ରୁଚି, କାବ୍ୟ ଶିଳ୍ପ ଓ କଳ୍ପନା ପ୍ରଭୃତି ମାନଦଣ୍ଡରେ ଯେଉଁ ସମାଲୋଚନା କରିଥିଲେ ତନ୍ମଧ୍ୟରେ ପ୍ରାଚ୍ୟ ପଦ୍ଧତି ସହ ପାଶ୍ଚାତ୍ୟ ମନୋବୃତ୍ତିର ପରିଚୟ ଦେଖିବାକୁ ମିଳାଇ । ସେ ଉପେନ୍ଦ୍ର ଭଞ୍ଜଙ୍କ ରଚନାକୁ ଦୁର୍ବୋଧତା କ୍ଲିଷ୍ଟକଳ୍ପିତା ବ୍ୟାକରଣ ଦୁଷ୍ଟତା ପ୍ରଭୃତି ଦୋଷଦୁଷ୍ଟରୂପେ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଉପେନ୍ଦ୍ର ଭଞ୍ଜଙ୍କ ପାଠରେ ଥିବା ଗୁଣ ଅପେକ୍ଷା ଦୋଷକୁ ଜଣାଇବା ନିମନ୍ତେ ପ୍ରବଳ ଭାବରେ ଉଦ୍ୟମ କରିଥିଲେ । ଏପରିକି ଉପେନ୍ଦ୍ର ଭଞ୍ଜଙ୍କର ତଥା କଥିତ ଅଶ୍ଳୀଳତା ତତ୍କାଳୀନ ରୁଚିବିରୁଦ୍ଧ ଥିବାରୁ ସେ ଏ ବିଷୟଟିକୁ ବିଶେଷ ଭାବେ ସମାଲୋଚନା କରିବା ସଙ୍ଗେ ସଙ୍ଗେ ପ୍ରସଙ୍ଗ କ୍ରମେ ବଙ୍ଗବାସୀ ପତ୍ରିକାରେ ହୋଇଥିବା ଜୟଦେବଙ୍କ ଶୃଙ୍ଗାରରସ ସମ୍ପର୍କିତ ସମାଲୋଚନାତ୍ମକ ମନ୍ତବ୍ୟକୁ ଉଦ୍ଧାର କରିଥିଲେ । ଏପରିକି ଉତ୍କଳ ପ୍ରଭା (୨୧)ରେ ଲାଲା ଉପେନ୍ଦ୍ର ଭଞ୍ଜଙ୍କ ଜୀବନୀ ସମ୍ପର୍କରେ ମତ ଦେଇଥିଲେ "ଆଧିପତ୍ୟର ଉଚ୍ଚତମ ଆସନରେ ଆସୀନ ହୋଇ ସେ ସର୍ବଦା କାବ୍ୟ ଚିନ୍ତାରେ ନିମଗ୍ନ ଥିଲେ । ବସ୍ତୁତଃ ଅଭାବ ତାଙ୍କୁ ଆଶ୍ରୟ କରିପାରି ନଥିଲା ।" କିନ୍ତୁ ଉତ୍କଳ ପ୍ରଭାର ସମ୍ପାଦକ ଗୋବିନ୍ଦ ଚନ୍ଦ୍ର ମହାପାତ୍ର କବିଙ୍କ ଜୀବନୀ ସମ୍ପର୍କରେ ପ୍ରସଙ୍ଗ କ୍ରମେ ଉଲ୍ଲେଖ କରିଥିଲେ "ତାହାଙ୍କ (ଉପେନ୍ଦ୍ର ଭଞ୍ଜଙ୍କ) ପିତା ଦୁଇ ବର୍ଷ ମାତ୍ର ରାଜତ୍ୱ କଲା ପରେ ଘନଶ୍ୟାମ ଭଞ୍ଜ ତାହାଙ୍କୁ ରାଜ୍ୟଚ୍ୟୁତ କରାଇ ଦେଶରୁ ବହିଷ୍କୃତ କରିଦେଲେ । ନୀଳକଣ୍ଠଭଞ୍ଜେ ଆପଣା ପୁତ୍ର ଉପେନ୍ଦ୍ର ଭଞ୍ଜଙ୍କୁ ସମସ୍ତ ଦ୍ରବ୍ୟାଦି ସହିତରେ ଅଠଗଡ଼ ପଳାଇଲେ । କିୟଦ୍ଦିବସ ପରେ ତାହାଙ୍କ ପରଲୋକ ହୁଅନ୍ତେ ଉପେନ୍ଦ୍ର ଭଞ୍ଜ ନୂଆଗଡ଼ ଅଧିପତି ରହିଲେ ଏହିଠାରେ ନିଜ ବୃତ୍ତିର ଉପସ୍ୱତ୍ୱରେ ସାଂସାରିକ ନିର୍ବାହ ଚଳନ୍ତି । ଏପରି ଶୁଣାଅଛୁ ଯେ ପରିଶେଷରେ ତାହାଙ୍କର ବ୍ୟୟ ଅନଟନ ହେବାରୁ ସେ ଅନେକ ଗଡ଼ଜାତକୁ ଯାଇ ରାଜାମାନଙ୍କର ଆନୁକୂଲ୍ୟ ଗ୍ରହଣ କରିଥିଲେ ।" (୨୨)

ଉତ୍କଳ ପ୍ରଭାରେ ପ୍ରକାଶିତ ଏ ସମସ୍ତ ବିବରଣୀ ସହିତ ଲାଲା ରାମନାରାୟଣ ଉପେନ୍ଦ୍ର ଭଂଜଙ୍କ ମହତ୍ତ୍ୱନ୍ୟୂନ କରିବା ନିମନ୍ତେ ଅପ୍ରାଣ ଉଦ୍ୟମ କରିଥିବାରୁ ତତ୍କାଳୀନ ଭଂଜସାହିତ୍ୟ ପ୍ରେମୀ ପ୍ରାଚୀନ ପନ୍ଥୀମାନଙ୍କ ମନରେ ପ୍ରବଳ ଆଲୋଡ଼ନ ସୃଷ୍ଟି ହୋଇଥିଲା । ଫଳରେ ଉପେନ୍ଦ୍ର ଭଂଜଙ୍କୁ ସମର୍ଥନ କରି

---

୨୧) ଉତ୍କଳପ୍ରଭା [୨।୮] ପୃ—୧୪୯ ।

୨୨) ଉତ୍କଳପ୍ରଭା [୩।୫] ପୃ—୧୬୨ ।

୧୮୯୩ ମସିହା ଅଗଷ୍ଟ ମାସ ୧୭ ତାରିଖ ଗୁରୁବାର ଦିନ "ଇନ୍ଦ୍ରଧନୁ" ନାମକ ବିଏଲ ବୃହତ୍ପୃଷ୍ଠା ଆକୃତିର ଗୋଟିଏ ପତ୍ରିକା ଆତ୍ମପ୍ରକାଶ କରିଥିଲା। ଇନ୍ଦ୍ରଧନୁ ପତ୍ରିକା ଖଣ୍ଡିଏ ଉପହାର ପାଇବା ପରେ 'ସମ୍ବାଦ ବାହିକା' ମତ ଦେଇଥିଲା,

"ଉତ୍କଳର ପୁରାତନ କବି ୫ ମୃତ ଉପେନ୍ଦ୍ର ଭଂଜଙ୍କ ନିନ୍ଦା ପ୍ରଚାର କରିବା ପାଇଁ ଇନ୍ଦ୍ରଧନୁ ପତ୍ରିକା ଆଧୁନିକ କବି ଓ ଲେଖକ ଲେଖନୀ ଧାରଣ କରିଥିବାର ଦେଖି ଆମ୍ଭେମାନେ ଦୁଃଖିତ ଥିଲୁଁ। ଉପେନ୍ଦ୍ର ଭଂଜଙ୍କ କବିତ ମାନ ଯେ ଦୋଷ ଶୂନ୍ୟ ତାହା ଅମ୍ଭେମାନେ କହିବାକୁ ସକ୍ଷମ ନୋହୁଁ। କିନ୍ତୁ ତାହା ବୋଲି ତାଙ୍କର ଅଗାଧ ଗୁଣରାଶିକୁ ବିସ୍ମୃତ ହୋଇ କେବଳ ଦୋଷଗୁଡ଼ିକ ଦେଖାଇବା ଅମ୍ଭମାନଙ୍କ ବିବେଚନାରେ ନ୍ୟାୟ ସଙ୍ଗତ ହେଉ ନାହିଁ। ଭଂଜ କବିଙ୍କ ବିପକ୍ଷମାନେ ବାବୁ ରାଧାନାଥ ରାୟଙ୍କର ପ୍ରଶଂସା ସହସ୍ର ମୁଖରେ କରନ୍ତୁ ତହିଁରେ ଆମ୍ଭମାନଙ୍କର ସହାନୁଭୂତି ଅଛି, କାରଣ ବାବୁ ମହୋଦୟଙ୍କ-ଠାରେ ଉତ୍କଳ ସାହିତ୍ୟ ଅନେକ ପ୍ରକାର ଋଣୀ ଅଛି। କିନ୍ତୁ ଶତବର୍ଷ ପୂର୍ବେ ମୃତ ଗୋଟିଏ ଚିରସ୍ମରଣୀୟ କବିର ନିନ୍ଦନ ଦ୍ୱାରା ରାଧାନାଥ ବାବୁଙ୍କର ଗୌରବ କେଉଁ ପ୍ରକାରେ ବୃଦ୍ଧି ହେବ, ତାହା ଅମ୍ଭମାନଙ୍କ କ୍ଷୁଦ୍ର ବୁଦ୍ଧିର ଅଗମ୍ୟ।" (୨୩)

ଇନ୍ଦ୍ରଧନୁ ପତ୍ରିକାର ୧ମ ସଂଖ୍ୟାରେ 'ଉପେନ୍ଦ୍ର ଭଂଜ' ଶୀର୍ଷକ ଗୋଟିଏ ପ୍ରବନ୍ଧ ପ୍ରକାଶ ପାଇଥିଲା। ଏହା ବ୍ୟତୀତ ବିଭିନ୍ନ ସଂଖ୍ୟାରେ 'ଗୋଲକ ଧନ୍ଦା' ଭଂଜସାହିତ୍ୟ ବିପକ୍ଷରେ ନାନା ଆଲୋଚନା କରି ଭଂଜସାହିତ୍ୟର ମହତ୍ତ୍ୱ ବୃଦ୍ଧି ପାଇଁ ଉଦ୍ୟମ କରୁଥିଲେ। କିନ୍ତୁ ଇନ୍ଦ୍ରଧନୁ ପ୍ରକାଶ ପାଇବାର ଅଳ୍ପଦିନ ପରେ ୧୮୯୩ ମସିହା ସେପ୍ଟେମ୍ବର ମାସ ୧୭ ତାରିଖ ଶନିବାର ଦିନ ବାମଣ୍ଡାରୁ 'ବିଜୁଳି' ପତ୍ରିକା ଆତ୍ମପ୍ରକାଶ କରିଥିଲା। ଏହି ପତ୍ରିକାର ମୁଖ୍ୟ ଉଦ୍ଦେଶ୍ୟ ଥିଲା "ଗୋଲକ ଧନ୍ଦାଙ୍କ ଯୁକ୍ତି ଖଣ୍ଡନ ଏବଂ ବୈଦେହୀଶ ବିଳାସର ଦୋଷୋଦ୍ଘାଟନ କରିବ।" (୨୪) ଏହି ପତ୍ରିକାଟି ବିନାମୂଲ୍ୟରେ ବିତରଣ କରାଯାଉଥିବାରୁ ଭଂଜ ପ୍ରତିଭାକୁ ବିରୋଧ କରି ସମାଜରେ ପ୍ରତିଷ୍ଠା ଅର୍ଜନ କରିବା ଏହାର ମୁଖ୍ୟ ଅଭିପ୍ରାୟ ଥିବା ଭଳି ମନେ ହୁଏ। ଭଂଜ ସାହିତ୍ୟ ବିରୋଧିମାନଙ୍କର ଏକ ପ୍ରଚାର ପତ୍ର ରୂପେ ଏହି ପତ୍ରିକା କାର୍ଯ୍ୟ କରୁଥିଲା।

---

୨୩) ସମ୍ବାଦ ବାହିକା (୧୮୯୩) ପୃ—୧୩୮

୨୪) ଉତ୍କଳ ଦୀପିକା (୧୮୯୩) ପୃ—୨୯୦।

ବିଜୁଳି ପତ୍ରିକାର ଦ୍ୱିତୀୟ ଓ ତୃତୀୟ ସଂଖ୍ୟା ସମ୍ପର୍କରେ ଉତ୍କଳ-ଦୀପିକା (୨୫) ରେ ଉଲ୍ଲେଖ ଥିଲା, "ଦ୍ୱିତୀୟ ସଂଖ୍ୟାରେ 'ଅଶ୍ଳୀଳ ନାଗିଣୀ' ଦେଖି ବଡ଼ ବଡ଼ ଅକ୍ଷରରେ ଛପା ହୋଇଅଛି । ଯାହାଙ୍କ ଲେଖନୀରୁ ଏ କବିତା ବାହାରିଅଛି ତାଙ୍କର ସଭ୍ୟତା ଓ ରୁଚି କି ଧନ୍ୟ । ଏପରି ନ ହେଲେ କି ଆଧୁନିକ ଉତ୍କଳ ସାହିତ୍ୟର ଉନ୍ନତି ହେବ ?" ଇନ୍ଦ୍ରଧନୁ ସମ୍ପର୍କରେ ମଧ୍ୟ ଏଥିରେ ଉଲ୍ଲେଖ ଥିଲା, "ଏଥର ଇନ୍ଦ୍ରଧନୁ ପୁରା ଦେଢ଼ଖଣ୍ଡ କାଗଜ, ସୁତରାଂ ବିଜୁଳିରୁ ଅନେକ ବଡ଼ । ଏହାର ଆଦର ଏତେ ହେଲା ଯେ ଯେତେ ଖଣ୍ଡ ବିକ୍ରୟ ନିମନ୍ତେ ଥିଲା ଦୁଇ ଦିନରେ ଶେଷ ହୋଇଗଲା । ପଛକୁ ଅନେକ ଗ୍ରାହକ ନିରାଶ ହୋଇ ଫେରିଗଲେ । ବିଶେଷତଃ ଏଥିରେ 'ପଞ୍ଚାଏତ ନାମା' ନାମରେ ଯେଉଁ କବିତାଟି ପ୍ରକାଶିତ ହୋଇଅଛି, ତାହା ଲୋକଙ୍କ ମନକୁ ବଡ଼ ଯୋଗିବାର ଦେଖାଗଲା ଏବଂ ପ୍ରାୟ ସକଳ ସ୍ଥାନରେ ତହିଁର ଚର୍ଚ୍ଚା ଲାଗିଥିଲା ।"

ମୋଟ ଉପରେ ଇନ୍ଦ୍ରଧନୁ ଓ ବିଜୁଳି ପ୍ରକାଶ ପରେ ପରେ ଭଞ୍ଜଙ୍କ ସପକ୍ଷବାଦୀ ଓ ବିପକ୍ଷବାଦୀ ଛଦ୍ମ ନାମରେ ଓ କେତେକ ନିଜ ନାମରେ ସାହିତ୍ୟ ଆଲୋଚନା ସ୍ତରରୁ କ୍ରମଶଃ ବ୍ୟକ୍ତିଗତ କୁତ୍ସାରଟନା ସ୍ତରକୁ ଖସି ଆସିଥିଲେ । ଭଞ୍ଜଙ୍କ ବିପକ୍ଷ ବାଦୀମାନେ ବିଭିନ୍ନ ପ୍ରତିଷ୍ଠିତ ଆସନରେ ଥିବାରୁ ଭଞ୍ଜ ସପକ୍ଷବାଦୀଙ୍କ ମଧ୍ୟରୁ କେତେଙ୍କ ବିରୋଧରେ ଦୁଷ୍ଟ କାର୍ଯ୍ୟାନୁଷ୍ଠାନ ମାନ ଗ୍ରହଣ କରୁଥିଲେ । 'ପ୍ରାଚୀନ ସାହିତ୍ୟ ଅଶ୍ଳୀଳ' ଶିରୋନାମାରେ ଇଂରାଜୀ ସ୍କୁଲର ହେଡ଼ମାଷ୍ଟର ବାବୁ ବୈକୁଣ୍ଠନାଥ ନନ୍ଦୀ ଏବଂ ନର୍ମାଲସ୍କୁଲର ହେଡ଼ମାଷ୍ଟର ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ପାଠଶାଳାରେ ବିତରଣ ନିମନ୍ତେ କେତେକ ପ୍ରାଚୀନ ସାହିତ୍ୟ ନିର୍ବାଚନ କରିଥିବାରୁ ସେମାନଙ୍କର ପଦୋନ୍ନତି ସ୍ଥଗିତ ରହିଥିଲା । (୨୬) କେବଳ ସେତିକି ନୁହେଁ ଇନ୍ଦ୍ରଧନୁ ସହିତ ସମ୍ପର୍କ ସ୍ଥାପନ କରିଥିବାରୁ ଗୋପବନ୍ଧୁ ଦାସଙ୍କର ସାତ ଦିନର ବୃତ୍ତି କୋରିମାନା ଓ ଗତବର୍ଷର ପରୀକ୍ଷାରେ କୃତକାର୍ଯ୍ୟ ନିମନ୍ତେ ମିଳିବାକୁ ଥିବା ପ୍ରାଇଜ୍ କଟାଯାଇଥିଲା । (୨୭)

ଲାଲ ରାମନାରାୟଣଙ୍କ 'କବି ଉପେନ୍ଦ୍ର ଭଞ୍ଜ' ଆଲୋଚନା ଫଳରେ ଇନ୍ଦ୍ରଧନୁ ଓ ବିଜୁଳି ଆତ୍ମପ୍ରକାଶ କରି କାହ୍ନି ଦିନ ପାଇଁ ଓଡ଼ିଶାର ସାହିତ୍ୟ

---

୨୫) ତତ୍ରୈବ — ପୃ. ୩୧୫ ।

୨୬) ଉତ୍କଳ ଦୀପିକା (୧୮୮୫) ପୃ. ୨୩୪ ।

୨୭) ଉତ୍କଳ ଦୀପିକା (୧୮୯୪) ପୃ. ୦୬ ।

ଆଲୋଚନାର ବାତାବରଣକୁ ବେଶ୍ ସରଗରମ କରି ରଖି ପାରିଥିଲା । କିନ୍ତୁ ଏହା ସାହିତ୍ୟ ଆଲୋଚନା କେନ୍ଦ୍ରକରି କ୍ରମେ ବ୍ୟକ୍ତିଗତ କୁତ୍ସାରଟନା ନିମନ୍ତେ ଅଗ୍ରସର ହେବା ଦ୍ୱାରା ବହୁ ପତ୍ର ପତ୍ରିକା ତଥା ପତ୍ର ପ୍ରେରକମାନେ ବିରକ୍ତି ପ୍ରକାଶ ସଙ୍ଗେ ସଙ୍ଗେ କବିତାର ଭଲ ମନ୍ଦ ସମ୍ପର୍କରେ ଆଲୋଚନା ପାଇଁ ଅନୁରୋଧ କରିଥିଲେ । (୨୮) ଏପରିକି କେତେକ ପତ୍ରିକାରେ ଏ ସମ୍ପର୍କରେ ନିରପେକ୍ଷ ମନ୍ତବ୍ୟ ପ୍ରଦାନ ତଥା ସାଲିସ ପାଇଁ ମଧ୍ୟ ଉଦ୍ୟମ କରାଯାଇଥିଲା । ଶ୍ରୀ ଭୋଳାନାଥ ସାମନ୍ତରାୟ ଏକ ନିରପେକ୍ଷ ମନ୍ତବ୍ୟ ଦେଇ କହିଥିଲେ, "ଭଞ୍ଜୀୟ କାବ୍ୟ ମନ୍ଥନକାରୀମାନେ ହୃଦୟବାନ୍ ହୋଇ ପାରନ୍ତି, ଜାତୀୟ ସାହିତ୍ୟାନୁରାଗୀ ହୋଇପାରନ୍ତି, ସେମାନଙ୍କର ଉଦ୍ଦେଶ୍ୟ ମହତ୍ତ୍ୱ ହୋଇପାରେ କିନ୍ତୁ ଯେ ଭାବରେ ଏ ଆନ୍ଦୋଳନ ଚାଲିଅଛି ତାହା କବିଗତ, କାବ୍ୟଗତ ଓ ଭାଷାଗତ ନ ହୋଇ ବ୍ୟକ୍ତିଗତ, ଜାତିଗତ ଓ ଦଳଗତ ହୋଇ ମୂଳରୁ ଅଶ୍ଳୀଳ ରୁଚି ଅଶ୍ଳୀଳ ଭାବ ଏବଂ ଗ୍ରାମ୍ୟତା ଦୋଷରେ ଆକ୍ରାନ୍ତ । XXX ଓଡ଼ିଶାର ଶିକ୍ଷିତ ମାନଙ୍କ ହସ୍ତରେ ଓଡ଼ିଶାର ଅଦୃଷ୍ଟ ! ବୀରକୁଳ ଓ କବିକୁଳ ଲୀଳାଭୂମି ସ୍ୱରୂପ ଉତ୍କଳ ସାମାନ୍ୟ ଭଞ୍ଜ କବି ଯେନ ବାତୁଳ ! ଭାରତ ବର୍ଷରେ ପ୍ରତି ପ୍ରଦେଶରେ ଜ୍ଞାନର ପ୍ରଦୀପ ଜଳି ଉଠିଅଛି, ଜାତୀୟତାର ଅଗ୍ନି ପ୍ରଜ୍ଜ୍ୱଳିତ ହୋଇଅଛି, କିନ୍ତୁ ଉତ୍କଳ ଛନ୍ଦ ଧନ୍ଦ ଓ ବକୁଳ ଯେନ ବାଳକେଳି କରୁଅଛି । ଏ ହତଭାଗ୍ୟ ଦେଶର କି ଭାବି ଉନ୍ନତିର ଆଶା ନାହିଁ ? (୨୯) କେବଳ ସେତିକି ନୁହେଁ ସମ୍ବାଦ ବାହିକା (୩୦) 'ବିଜୟା ଦଶମୀ ଓ ଭଞ୍ଜକବି' ଶୀର୍ଷକ ଲେଖାରେ ସମ୍ପାଦକ ରାଧାନାଥ ସାହିତ୍ୟ ଓ ଭଞ୍ଜ ସାହିତ୍ୟାଲୋଚନାରେ ଏକ ସାଲିସ ଅଣିବା ନିମନ୍ତେ ମଧ୍ୟ ଉଦ୍ୟମ କରିଥିବାର ଜଣାଯାଏ ।

ଏହି ସମୟରେ ଉତ୍କଳକବି ମଧୁସୂଦନ ଛନ୍ଦଧନ୍ଦ ଓ ବକୁଳର ବାଦାନୁବାଦରେ ବିତୃଷ୍ଣ ହୋଇ ଶେଷରେ ଉଭୟ ଦଳଙ୍କ ଉଦ୍ଦେଶ୍ୟରେ 'ଭଣ୍ଡରସାୟନ କାବ୍ୟ' ପ୍ରକାଶ କରି ତନ୍ମଧ୍ୟରେ ତୀବ୍ର ବ୍ୟଙ୍ଗୋକ୍ତି ପ୍ରକାଶ କରିଥିଲେ । (୩୧) ଶେଷରେ ପରିସ୍ଥିତି ଓ ପରିବେଶ ପ୍ରଭାବରେ ତଥା କୌଣସି କୌଣସି ଆନ୍ତରିକ ହିତୈଷୀ ବନ୍ଧୁଙ୍କର ସଦିଚ୍ଛାପ୍ରସୂତ ସମ୍ମାନ ରକ୍ଷା ନିମନ୍ତେ

---

୨୮) ଓଡ଼ିଆ ଓ ନବ ସମ୍ବାଦ (୧୮୯୩) ପୃ. ୧୮୫-୧୮୬)

୨୯) ଉତ୍କଳ ଦୀପିକା (୧୮୯୪) ପୃ. ୨୭୮ ।

୩୦) ସମ୍ବାଦ ବାହିକା (୧୮୯୪) ପୃ ୧୭୧ ।

୩୧) ଓଡ଼ିଆ ଓ ନବ ସମ୍ବାଦ ତା ୧୮-୧୦-୧୮୯୩, ପୃ. ୧୯୦ ।

ଏହି ବାଦବିବାଦର ପରିସମାପ୍ତି ପାଇଁ ରାଧାନାଥ ରାୟ ଏଗାର ଅନୁଚ୍ଛେଦ ବିଶିଷ୍ଟ ଏକ ପତ୍ର ପ୍ରକାଶ କରିଥିଲେ । (୩୨) ଏହିପତ୍ରରେ ସେ ଭଞ୍ଜ କବିଙ୍କୁ ଏକତର ଶିକ୍ଷାଗୁରୁ ରୂପେ ଗ୍ରହଣ କରି ଆବାଲ୍ୟରୁ ଭକ୍ତି କରିଆସୁଥିବା କଥା ଉଲ୍ଲେଖ କରିଥିଲେ । କିନ୍ତୁ ଏହା ରାଧାନାଥ ରାୟଙ୍କର ଅନ୍ତରବାଣୀ ବୋଲି ମନେହୁଏ ନାହିଁ । କାରଣ ତା ୧୮-୩-୧୮୯୫ ମସିହାରେ ସେ ଗଙ୍ଗାଧର ମେହେରଙ୍କ ପାଖକୁ ଲେଖିଥିବା ପତ୍ରରେ ଉଲ୍ଲେଖ କରିଥିଲେ, "ପାରିବାରିକ ପୀଡ଼ା, କାର୍ଯ୍ୟର ଝଞ୍ଜଟ ଏବଂ ଦେଶର ଅଗ୍ରାହକତା ନିବନ୍ଧନରେ ମୁଁ ସାହିତ୍ୟ ଚର୍ଚ୍ଚା ପରିତ୍ୟାଗ କରିଅଛି । ପ୍ରକୃତ ସାହିତ୍ୟଜ୍ଞାନ ସମୟ ସାପେକ୍ଷ ଅଟେ, ବିଶେଷତଃ ଓଡ଼ିଶ୍ୟାରେ । ଓଡ଼ିଶ୍ୟାରେ କାଳିଦାସଙ୍କ ସହିତ ଭଞ୍ଜଙ୍କ ପରି କବି ସମାନ ଆସନ ପାଆନ୍ତି । ହିମାଳୟ ସହିତ କପିଳାସ ତୁଳିତ ହୁଏ । ଏପରି ଦେଶରେ ସାହିତ୍ୟ ଜ୍ଞାନ ଲାଭ ସହଜ କଥା ନୁହେଁ । (୩୩)

ତେଣୁ ଗଙ୍ଗାଧରଙ୍କ ପାଖକୁ ପ୍ରେରିତ ପତ୍ର (ତା ୧୮-୩-୧୮୯୫) ରେ ରାଧାନାଥ ଭଞ୍ଜ ସାହିତ୍ୟ ପ୍ରତି ନିଜର ମନୋଭାବ ପ୍ରକାଶ କରିଛନ୍ତି । ଏହା ରାଧାନାଥ ରାୟଙ୍କର ଅନ୍ତରବାଣୀ ଥିଲେ ମଧ୍ୟ ସେ କପଟତା ଆଚରଣ କରି ତଥା ହିତୈଷୀ ବନ୍ଧୁମାନଙ୍କର ସମ୍ମାନ ରକ୍ଷାର୍ଥେ ଓଡ଼ିଆ ଓ ନବ ସମ୍ବାଦକୁ ପତ୍ରଟି ଲେଖିବା ନିମନ୍ତେ ବାଧ୍ୟ ହୋଇଥିଲେ । କାରଣ ସେ ଓଡ଼ିଶା ଲୋକଙ୍କର ଚିତ୍ତବୃତ୍ତି ସହିତ ଯେଉଁ ଖେଳ ଆରମ୍ଭ କରିଥିଲେ ପରବର୍ତ୍ତୀ ସମୟରେ ସେହି ଖେଳ ତାଙ୍କର କପଟତାର ମୁଖାକୁ ଖୋଲି ଦେବାରୁ ବାଧ୍ୟ ହୋଇ ସେ ଉପରୋକ୍ତ ପତ୍ର ମାଧ୍ୟମରେ ଆତ୍ମସମର୍ପଣ କରିଥିଲେ ।

ଇନ୍ଦ୍ରଧନୁ ଓ ବିଜୁଳି କନ୍ଦଳର ଅବସାନ ପରେ ୧୮୯୫ ମସିହାରେ ଶ୍ରୀ ଦାମୋଦର ମିଶ୍ରଙ୍କ ଦ୍ୱାରା 'ଦୋଷଦର୍ଶନ' ନାମକ ଏକ ପୁସ୍ତକରେ ଭଞ୍ଜ ସାହିତ୍ୟର ବିଭିନ୍ନ ଦୋଷ ପ୍ରଦର୍ଶିତ ହୋଇଥିଲା । ବିଜୁଳିରେ ପ୍ରକାଶିତ ଭଞ୍ଜ ସାହିତ୍ୟର ବିଭିନ୍ନ ଦୋଷ ସହିତ ଲେଖକ ନିଜେ କେତେକ ନୂତନ ଦୋଷ ଏହି ପୁସ୍ତକରେ ପ୍ରଦାନ କରିଥିଲେ । ଏଥିରେ ଭଞ୍ଜ ସାହିତ୍ୟରେ ଥିବା ଅସଙ୍ଗତ ବର୍ଣ୍ଣନା, ଅସମର୍ଥକ କଥନ, ନିକୃଷ୍ଟ ବର୍ଣ୍ଣନା, ନ୍ୟୂନପଦତା, କୁତ୍ସିତ ବର୍ଣ୍ଣନା,

---

୩୨) ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି-ଡ଼: ନଟବର ସାମନ୍ତରାୟ, କଟକ : ୧୯୬୪, ପୃ. ୫୮-୬୦ ।

୩୩) କଳିଲିପି-ଦେବୀ ପ୍ରସନ୍ନ ପଟ୍ଟନାୟକ, ବିଶ୍ୱଭାରତୀ : ୧୯୫୭, ପୃ. ୭୦ ।

ଅଳଂକାର ପ୍ରୟୋଗରେ ଅସଙ୍ଗତ, ଅଶ୍ଳୀଳ ବର୍ଣ୍ଣନ, ନିରର୍ଥକ କଥନ ଆଦି ଅନୁଷ୍ଠାନ ପ୍ରଦର୍ଶନ କରିଥିଲେ । ବିଜୁଳିରେ ଭଞ୍ଜ ସାହିତ୍ୟ ସମ୍ପର୍କରେ ଯେଉଁ ତୀବ୍ର ସମାଲୋଚନା କରାଯାଇଥିଲା ତାହାକୁ ଏଥିରେ ପୁନରୁଜ୍ଜୀବିତ କରିବା ନିମନ୍ତେ ଅଲୋଚକ ବ୍ୟଗ୍ର ଥିବାପରି ମନେହୁଏ ।

୧୮୯୫ ମସିହାରେ ଉପେନ୍ଦ୍ର ଭଞ୍ଜଙ୍କ ସାଂଗୀତିକତା ସମ୍ପର୍କରେ ଗୋପାଳବଲ୍ଲଭ ଦାସ କବିତା ମାଧ୍ୟମରେ ମତବ୍ୟକ୍ତ କରିଥିଲେ । (୩୪) ୧୮୯୬ ମସିହାରେ 'ବିବିଧ ପ୍ରବନ୍ଧ' (୩୫) ଗ୍ରନ୍ଥରେ ସମ୍ବଲପୁର ହିତୈଷିଣୀରେ ପ୍ରକାଶିତ ଗୋଟିଏ ଉତ୍ତର (୩୬) ଓ କବି ଉପେନ୍ଦ୍ର ଭଞ୍ଜଙ୍କୁ (୩୭) ସ୍ବାଗତ କରିଥିଲେ । ୧୮୯୭ ମସିହାରେ ନାଟ୍ୟକାର କାମପାଳ ମିଶ୍ର 'କବି ଉପେନ୍ଦ୍ର ଭଞ୍ଜ' ଶୀର୍ଷକ ଗୋଟିଏ କବିତା ପ୍ରକାଶ କରିଥିଲେ ।

ବିଜୁଳି ଓ ଇନ୍ଦ୍ରଧନୁର ବିବାଦ ସମାପ୍ତି ପରେ ଭଞ୍ଜସାହିତ୍ୟ ଅଲୋଚନା ମଧ୍ୟରେ ସଂଯମତା ପରିଲକ୍ଷିତ ହୋଇଥିଲା । ଫଳରେ କେତେକ କବି କବିତା ମାଧ୍ୟମରେ ଭଞ୍ଜସାହିତ୍ୟର ଆଲୋଚନା କରିଥିଲେ ।

ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଅର୍ଥାତ୍ ୧୮୯୮ ମସିହାରେ ମନମୋହନ ଚକ୍ରବର୍ତ୍ତୀ (୩୮) ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ପର୍କିତ ଆଲୋଚନା ମଧ୍ୟରେ ଭଞ୍ଜ ସାହିତ୍ୟକୁ ପୁଙ୍ଖାନୁପୁଙ୍ଖ ଭାବେ ବିଶ୍ଳେଷଣ କରିବାକୁ ଚେଷ୍ଟା କରିଥିଲେ । ତାଙ୍କ ବିଶ୍ଳେଷଣ ମଧ୍ୟରେ ଓଡ଼ିଆ କାବ୍ୟଯୁଗ ପ୍ରତି ମନ୍ତବ୍ୟ ଅନେକାଂଶରେ ଠିକ୍ ହୋଇଥିଲେ ମଧ୍ୟ ତତ୍କାଳୀନ ସମୟରେ ସଂସ୍କୃତ ସାହିତ୍ୟ ଉପରେ ପାଶ୍ଚାତ୍ୟ ପଣ୍ଡିତମାନେ କରୁଥିବା ଅଲୋଚନାର ମାନଦଣ୍ଡରେ ସେ ଓଡ଼ିଆ ସାହିତ୍ୟକୁ ମାପିବାକୁ ଚେଷ୍ଟା କରିଥିଲେ । ସଂସ୍କୃତ ସାହିତ୍ୟ ପରି ଏ

---

୩୪) କବିତା ମଞ୍ଜୁଷା-ଗୋପାଳବଲ୍ଲଭ ଦାସ, କଟକ : ୧୮୯୫, ପୃ. ୪୪-୪୫ ।

୩୫) ବିବିଧ ପ୍ରବନ୍ଧ—ବିଶ୍ଵନାଥକର, କଟକ : ୧୮୯୬, ୨ୟ ସଂ, ୧୯୦୭ ପୃ ୧୦୨ ରୁ ୧୧୯ ।

୩୬) ସମ୍ବଲପୁର ହିତୈଷିଣୀ (୪/୨୧) ୧୮୯୨, ପୃ. ୮୦ ।

୩୭) ସମ୍ବଲପୁର ହିତୈଷିଣୀ (୫/୧୫) ୧୮୯୩, ପୃ. ୫୯ ।

୩୮) JASB Vol. LXVII, PTI, No IV, Calcutta : 1898, P. 362-368.

ସାହିତ୍ୟରେ ରହିଥିବା ଅନେକ ଅଶ୍ଳୀଳକୁ ଦେଖାଇବା ନିମନ୍ତେ ଯାଇ ସେ କହିଥିଲେ, 'ଚରିତ୍ର ଓ କଥା ବସ୍ତୁର ସମ୍ୟକ୍ ବିକାଶ ନାହିଁ, ନାୟିକା ନାୟକ ପ୍ରଭୃତି କବିମାନଙ୍କର ଉଚ୍ଚ ମନୋଭାବ ନାହିଁ ଇତ୍ୟାଦି । ଭଞ୍ଜ ସାହିତ୍ୟର ସାମଗ୍ରିକ ଆଲୋଚନା ସମ୍ବନ୍ଧରେ କେତେ ଗୁଡ଼ିଏ ପ୍ରମାଦ ପୂର୍ଣ୍ଣ ସିଦ୍ଧାନ୍ତ ପ୍ରଦାନ କରିଥିଲେ । ତନ୍ମଧ୍ୟରେ ଭଞ୍ଜ ସାହିତ୍ୟର ଅତ୍ୟଧିକ ଶୃଙ୍ଗାର ଉପରେ ନିର୍ଣ୍ଣୟନାକୁ ବିଶେଷ୍ଣ କରି ସେ ମତ ଦେଇଥିଲେ ଯେ 'ଘୁମୁସର ରାଜଦରବାର ଦୂଷିତ ତଥା କଳୁଷିତ ବାୟୁମଣ୍ଡଳର ପ୍ରଭାବ ଭଞ୍ଜଙ୍କ ଉପରେ ପଡ଼ିଛି' । ଏହି ପ୍ରବନ୍ଧରେ ଉପେନ୍ଦ୍ର ଭଞ୍ଜଙ୍କ ସଂକ୍ଷିପ୍ତ ଜୀବନୀ, ରଚନାବଳୀର ତାଲିକା, ପାଣ୍ଡିତ୍ୟ ଓ ସାହିତ୍ୟିକ ଦୋଷାଦୋଷର କେତେକ ସୂଚନା ଦେଲେ ମଧ୍ୟ ମନମୋହନ ଚକ୍ରବର୍ତ୍ତୀଙ୍କ ମତରେ, "Upendra Bhanja is in Oriya language, the most volumnious author, the earliest and most prominent fictional poet, the most obscene, the most unintelligible and on the whole the best writer of rhetorical excellences." (୩୯)

ଉନବିଂଶ ଶତାବ୍ଦୀର ଶେଷପାଦରେ ପଣ୍ଡିତ ବୃନ୍ଦାବନ କାବ୍ୟତୀର୍ଥ ଶର୍ମା ଭଞ୍ଜ ସାହିତ୍ୟର ଆଲୋଚନା କରିବାକୁ ଯାଇ ଉଲ୍ଲେଖ କରିଛନ୍ତି, "ମହାକବି ଉପେନ୍ଦ୍ର ଭଞ୍ଜ ବୀରଙ୍କୁ ଉତ୍କଳ ଭାଷା କାବ୍ୟର ରଚନା ସମ୍ବନ୍ଧରେ ଆଦିମ କବି ବୋଲି କହିଲେ କୌଣସି ଅତ୍ୟୁକ୍ତି ହୋଇପାରେ ନାହିଁ । × × କେତେକ ବ୍ୟକ୍ତିମାନେ ମହାକବି ଉପେନ୍ଦ୍ର ଭଞ୍ଜ ବୀରଙ୍କ ପ୍ରଣୀତ କାବ୍ୟର ସର୍ବାଂଶ ପର୍ଯ୍ୟାଲୋଚନା ନକରି ଓ ତାହାର ଗୁଣାଂଶ ପରିତ୍ୟାଗ ପୂର୍ବକ କେତେ ଗୁଡ଼ିଏ ସାମାନ୍ୟ ଦୋଷ ଭାଗକୁ ମହାଦୋଷ ରୂପରେ ନିର୍ଦ୍ଦିଷ୍ଟ କରି ଉଲ୍ଲେଖ କରିଅଛନ୍ତି ।" (୪୦) ତେଣୁ କାବ୍ୟତୀର୍ଥ ଶର୍ମା ଏହି ଗ୍ରନ୍ଥରେ ଉପେନ୍ଦ୍ର ଭଞ୍ଜଙ୍କ ଦୋଷ ବୋଲି କଥିତ ଲାବଣ୍ୟବତୀ, ବୈଦେହୀଶ ବିଳାସ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଆଦିରୁ କେତେକ ଉଦାହରଣକୁ ଆଲୋଚନା କରି ଏହାକୁ ଗୁଣ ବୋଲି ଗ୍ରହଣ କରିଛନ୍ତି । ଏହି ଆଲୋଚନା ମଧ୍ୟରେ

---

୩୯) "Notes on the language and literature of Orissa" by M. M. Chakravarty in JASB Vol. LXVII, PTI, No IV, Calcutta : 1898, P. 367.

୪୦) ଆଦର୍ଶ-ବୃନ୍ଦାବନ କାବ୍ୟତୀର୍ଥ ଶର୍ମା, ବାରିପଦା : ୧୯୦୦, ଭୂମିକା ପୃ. ୯, ପୁନର୍ମୁଦ୍ରଣ ଏଷଣା (୧୯) କଟକ: ଡିସେମ୍ବର ୧୯୮୯ପୃ. ୩୨ ।

ବିଭିନ୍ନ ବ୍ୟାକରଣ ନିୟମ ଓ ସଂସ୍କୃତ କାବ୍ୟର ଉଦାହରଣ ଦେବାକୁ ସେ ପଶ୍ଚାତପଦ ହୋଇ ନାହାନ୍ତି ।

ଊନବିଂଶ ଶତାବ୍ଦୀର ଷଷ୍ଠଦଶକରୁ ରଙ୍ଗଲାଲ ବନ୍ଦୋପାଧ୍ୟାୟଙ୍କ ଦ୍ୱାରା ଭଞ୍ଜ ସାହିତ୍ୟ ସମ୍ପର୍କିତ ଆଲୋଚନା ନିମନ୍ତେ ପ୍ରାରମ୍ଭିକ ଉଦ୍ୟମ ହୋଇଥିଲେହେଁ ଏହାପରେ ପ୍ରାୟ ୩୦/୩୫ ବର୍ଷ ଧରି ହୋଇଥିବା ଭଞ୍ଜ ସାହିତ୍ୟାଲୋଚନା ବିଶେଷ କରି ଭଞ୍ଜ ସାହିତ୍ୟର ତ୍ରୁଟି ବିଚ୍ୟୁତି, ଅଶ୍ଳୀଳତା ଦୁର୍ବୋଧ୍ୟତା ଓ କୃତ୍ରିମତା ଆଦି ଉପରେ ପର୍ଯ୍ୟବେସିତ ଥିଲା । ଏହି ଆଲୋଚନାର ପୃଷ୍ଠପୀଠିକାରେ ଓଡ଼ିଆ ଭାଷା ବିଲୋପକାରୀଙ୍କ ଚକ୍ରାନ୍ତ, ଆଧୁନିକ ପନ୍ଥୀଙ୍କର ପ୍ରକୋପ, ବ୍ରାହ୍ମଧର୍ମୀଙ୍କ ବିରୋଧ ମନୋଭାବ ତଥା ଭଞ୍ଜ ରଚନାବଳୀର ଉପଯୁକ୍ତ ସମ୍ପାଦନର ଅଭାବ ଆଦିର ପ୍ରଚ୍ଛନ୍ନ ସଙ୍କେତ ଥିବାପରି ମନେହୁଏ । କେବଳ ସେତିକି ନୁହେଁ ୧୮୬୯ ମସିହାରେ ଓଡ଼ିଆ ଭାଷାକୁ ନେଇ ଚାଲିଥିବା ଆନ୍ଦୋଳନ ସମୟରେ ଏ ଦେଶର କେତେକ ଅଣ ଓଡ଼ିଆ, ଓଡ଼ିଆ ଭାଷାର ଅସ୍ତିତ୍ୱକୁ ଅସ୍ୱୀକାର କରିବା ନିମନ୍ତେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ କବି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ତୀବ୍ର ସମାଲୋଚନା କରିବା ନିମନ୍ତେ ବାଧ୍ୟ ହୋଇଥିଲେ । କେବଳ ସେତିକି ନୁହେଁ ଉପେନ୍ଦ୍ର ଭଞ୍ଜଙ୍କର ରଚନାବଳୀ ତତ୍କାଳୀନ ସୁରୁଚି ଦ୍ୱାରା ଅନୁମୋଦନ ଲାଭ କରିପାରୁ ନଥିବାରୁ ବ୍ରାହ୍ମ ଧର୍ମାବଲମ୍ବୀ ତଥା ଆଧୁନିକ ପନ୍ଥୀମାନେ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ୧୮୭୮ ରୁ ୧୮୮୦ ମସିହା ମଧ୍ୟରେ 'ଉତ୍କଳ ମଧୁପ' ପତ୍ରିକାରେ ଉପେନ୍ଦ୍ର ଭଞ୍ଜଙ୍କର ଅଗୌରବ ଘୋଷଣା କରି ଯେଉଁ ଆଲୋଚନା ଆରମ୍ଭ ହୋଇଥିଲା ସେଥିରେ ଏହି ଆଧୁନିକ ପନ୍ଥୀମାନେ ଭାଗ ନେଇଥିଲେ । ଏମାନେ ନୂତନ ଆଲୋକ ପ୍ରାପ୍ତିର ଅହମିକାରେ ମତାନ୍ଧ ହୋଇ ଭଞ୍ଜ ସାହିତ୍ୟ ବିପକ୍ଷରେ କଠୋର ମନ୍ତବ୍ୟ ପ୍ରଦାନ ନିମନ୍ତେ ପଶ୍ଚାତ୍ପଦ ହୋଇନଥିଲେ ।

ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀକୁ ଏହି ଶତାବ୍ଦୀରେ ଯେଉଁଭଳି ଭାବରେ ବିଶ୍ଳେଷଣ କରାଗଲା ତାର ଅନ୍ତରାଳରେ ବିଭିନ୍ନ ଦିଗରୁ ଭଞ୍ଜସାହିତ୍ୟର ଦୋଷତ୍ରୁଟି ଦେଖାଇବା ପାଇଁ ଆଲୋଚକମାନେ ଆଗ୍ରହୀ ଥିବାପରି ମନେହୁଏ । ଭଞ୍ଜଙ୍କର ତ୍ରୁଟି ବିଚ୍ୟୁତିକୁ ସେମାନେ ଦୃଢ଼ଭାବରେ ଉପସ୍ଥାପନ କଲେ ମଧ୍ୟ ସମସାମୟିକ ଓଡ଼ିଆ ସାହିତ୍ୟରେ କୌଣସିଏ ଉନ୍ନତମାନର ଉଦାହରଣ ଦେବା ନିମନ୍ତେ ଆଧୁନିକ ପନ୍ଥୀ-ମାନେ ସକ୍ଷମ ହୋଇପାରୁ ନଥିଲେ । ଫଳରେ ଭଞ୍ଜପ୍ରେମୀ ପ୍ରାଚୀନ ପନ୍ଥୀମାନେ ସେହି ଅସ୍ତ୍ରକୁ ପ୍ରୟୋଗ କରି ଆଧୁନିକ ପନ୍ଥୀଙ୍କୁ ଦୃଢ଼ ଭାବରେ ମୁକାବିଲା କରି

ପାରୁଥିଲେ । ମୋଟ ଉପରେ ଊନବିଂଶ ଶତାବ୍ଦୀରେ ଭଞ୍ଜସାହିତ୍ୟ ସମ୍ପର୍କରେ ଯେଉଁଭଳି ଭାବରେ ଆଲୋଚନା ଓ ପ୍ରତିଆଲୋଚନା କରାଗଲା ତାହାକୁ ସମାଲୋଚନାର କୌଣସି ନିର୍ଦ୍ଧାରିତ ମାନଦଣ୍ଡରେ ବିଶ୍ଳେଷଣ କରାଯାଇ ନପାରେ । କାରଣ ଭଞ୍ଜଙ୍କୁ ବିରୋଧ କରି ବା ସେହି ବିରୋଧରୁ ମୁକ୍ତି ପାଇବା ନିମନ୍ତେ ବିଭିନ୍ନ ଆଲୋଚନା ତଥା ପ୍ରେରିତ ପତ୍ରାଦି ମାଧ୍ୟମରେ ପ୍ରତିକ୍ରିୟା ସୃଷ୍ଟି କରାଯାଇଥିଲା । ତେଣୁ ଊନବିଂଶ ଶତାବ୍ଦୀର ଭଞ୍ଜ ସାହିତ୍ୟ ଆଲୋଚନା ମଧ୍ୟରେ କୌଣସି କ୍ରିୟା ପ୍ରଦର୍ଶିତ ନ ହୋଇ କେବଳ ବିଭିନ୍ନ ପ୍ରତିକ୍ରିୟାର ଅନୁରଣନ ଦ୍ୱାରା ଅନୁରଣିତ ହେବା ଭଳି ମନେ ହୁଏ ।

ପରିଶେଷରେ ଏହି ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀର ସଟୀକ ଗ୍ରନ୍ଥ ଓ ସଙ୍କଳନ ପ୍ରକାଶ ନିମନ୍ତେ ଗୌରିଶଙ୍କର ରାୟ, ବନମାଳୀ ସିଂହ, କପିଳେଶ୍ୱର ବିଦ୍ୟାଭୂଷଣ, ଗଣେଶ୍ୱର ଦାସ, ଗୋପୀବଲ୍ଲଭ ରାୟ ଓ ବଳରାମ ଦାସ ଆଦି ଉଦ୍ୟମ କରିଥିଲେ । ଏହି ଉଦ୍ୟମର ପରିଣାମ ସ୍ୱରୂପ ଉପେନ୍ଦ୍ର ଭଞ୍ଜଙ୍କର କେତେକ ଗ୍ରନ୍ଥ ମୁଦ୍ରିତ ରୂପ ଗ୍ରହଣ କରିବା ସଙ୍ଗେ ସଙ୍ଗେ ପାଠକ ତଥା ଆଲୋଚକ ଭଞ୍ଜ ସାହିତ୍ୟ ଆଲୋଚନା ନିମନ୍ତେ ଆଗ୍ରହୀ ହୋଇ ଥିଲେ । ଫଳରେ ବିଂଶ ଶତାବ୍ଦୀରେ ଭଞ୍ଜୀୟ ରଚନାବଳୀର ବହୁ ସଂସ୍କରଣ ପ୍ରକାଶିତ ହେବା ସହିତ ସର୍ବସାଧାରଣଙ୍କ ନିମନ୍ତେ ଭଞ୍ଜସାହିତ୍ୟ ଆଲୋଚନାର ଦ୍ୱାର ଉନ୍ମୁକ୍ତ ହୋଇପାରିଥିଲା ।



ଓଡ଼ିଆ ବିଭାଗ,
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ,
ବ୍ରହ୍ମପୁର—୭୬୦୦୦୭
ଗଞ୍ଜାମ

# କଳା ପ୍ରବୀଣ ଉପେନ୍ଦ୍ର ଓ
# କେଳି ପ୍ରବୀଣା ରସଲେଖା

॥ ପ୍ରାଧ୍ୟାପକ ବିଜୟ ବସନ୍ତ ଦାସ ॥

---

Take from our hearts the love of the beautiful
And you take away the charms of life.

—Rousseau : Emile- BK IV

ସୌନ୍ଦର୍ଯ୍ୟ ଚିର ପୁରାତନ ହେଲେ ବି ରସିକ ନିକଟରେ ନିତ୍ୟ ନୂତନ । ହୃଦୟର ଅନିବାର୍ଯ୍ୟ ରୂପ ତୃଷ୍ଣାର ଫଳଶ୍ରୁତି ହେଉଛି ପ୍ରେମ । ତେଣୁ ସୌନ୍ଦର୍ଯ୍ୟ ହିଁ ହେଉଛି ପ୍ରେମର ବିଷୟାଳମ୍ବ । ମୂଳତଃ ପ୍ରେମ ଓ ସୌନ୍ଦର୍ଯ୍ୟ ଅଭିନ୍ନ ଏବଂ ରସସୃଷ୍ଟି ଦିଗରୁ ଉଭୟଙ୍କ ଭିତରେ ସମ୍ପର୍କ ଚିରନ୍ତନ । ହୃଦୟରେ ଭଲ ପାଇବା ନିହିତ ଥିଲେ ଆଖି ସେଇ ରାଗ ରଙ୍ଗରେ ରଞ୍ଜିତ ହୋଇ ସୌନ୍ଦର୍ଯ୍ୟ ରସ ପାନ କରିଥାଏ । କଳା ହୃଦୟାଭ୍ୟନ୍ତରରେ ନିହିତ ଥିବା ଚାତୁର୍ଯ୍ୟ ହିଁ ଆମକୁ ସୌନ୍ଦର୍ଯ୍ୟର ସମୀପବର୍ତ୍ତୀ କରିଦିଏ । ଯାହା ସାହାଯ୍ୟରେ ଏଇ ଭାବ ଉତ୍ତୁରି ଆସେ ତାହା ହେଲା ରସ । ଉଦ୍ଦିଷ୍ଟ ବସ୍ତୁ ଉପରେ ସୌନ୍ଦର୍ଯ୍ୟର ପ୍ରଲେପ ବୋଳି ପାଠକ ହୃଦୟରେ ରସ ସଞ୍ଚାର କରିବାର ଦାୟିତ୍ୱ କବିର । ଅସଂଖ୍ୟ ଶବ୍ଦ କବିଙ୍କ ଲେଖନୀ ମୁନରେ ଭିଡ଼ ଜମାଇ ଥାଆନ୍ତି । ତନ୍ମଧ୍ୟରୁ ଅନୁରୂପ ଶବ୍ଦଟିକୁ ଚୟନ କରି ଭାବ ପ୍ରକାଶର ମାଧ୍ୟମ ଭାବରେ ଗ୍ରହଣ କରିବା ହିଁ କବିର ଚାତୁର୍ଯ୍ୟ । ତା' ଲେଖନୀର କୁଶଳତା ଯୋଗୁଁ ହିଁ ପାଠକ ମନରେ ପ୍ରେମ ଓ ସୌନ୍ଦର୍ଯ୍ୟର ଭାବ ଆପେ ଆପେ ସଞ୍ଚରି ଆସେ । ସୁନିର୍ବାଚିତ ଶବ୍ଦ ମାନଙ୍କ ସାହାଯ୍ୟରେ ଗୋଟିଏ ଗୋଟିଏ ରୂପାତ୍ମକ ବାକ୍ୟ ମଧ୍ୟଦେଇ କବି ଗୋଟିଏ ସୁନ୍ଦରୀ ନାରୀର ଭାବମୂର୍ତ୍ତି ପାଠକର ମାନସ ପଟରେ ଅଙ୍କନ କରି ଯେତେବେଳେ କହନ୍ତି :

ଆହା! ଚାଲି ଆସୁଛି ଗେଲେ ଗେଲେ
ମହୀ ମଣ୍ଡି ଦେଉଛି ପଦ୍ମ ଫୁଲେ
ଗଜ ମନ୍ଥର ଗତି ଲକ୍ଷ୍ୟ ନାହିଁ
ଗତିରେ ମୋହି ଦେଉଛି ମହୀ । ( ରସ ଲେଖା ୫-୩ )

ଏକ ଅଲୌକିକ ରମ୍ୟାନୁଭୂତ ଆମ କଳ୍ପନାକୁ ଉଦ୍ରେକିତ କରିଦିଏ । ଏକ ମୋହ ମୁଗ୍ଧ ଭାବ ଆମ ଚିତ୍ତ ବୃତ୍ତିକୁ ଦ୍ରବୀଭୂତ କରିପକାଏ । କବି ହୃଦୟର ତୀବ୍ର ସୌନ୍ଦର୍ଯ୍ୟ ବୋଧରୁ ହିଁ ଏହି କାମନାର ସୃଷ୍ଟି । କାମଭାବ ଅଙ୍କୁରିତ ହେବା ଅବସ୍ଥାକୁ ଶୃଙ୍ଗ କହନ୍ତି ଏବଂ ଯେଉଁ କାରଣରୁ ଏହି ଭାବ ଅଙ୍କୁରିତ, ତାହା ହେଲା ଶୃଙ୍ଗାର ରସ । ସୌନ୍ଦର୍ଯ୍ୟ ବିଳାସୀ ଶିଳ୍ପୀଗଣ ଏଇ ଭାବନାକୁ ନେଇ କେତେ ଭଙ୍ଗୀରେ, କେତେ ଛନ୍ଦରେ ନିଜ ପ୍ରାଣର ଅର୍ଘ୍ୟକୁ ସୌନ୍ଦର୍ଯ୍ୟର ବେଦୀ ତଳେ ନିବେଦନ କରିଯାଇ ଅଛନ୍ତି । ଆପାତତ ସାହିତ୍ୟ ରାଜ୍ୟରେ ଶୃଙ୍ଗାର ରସର ପ୍ରତିଷ୍ଠା ଅସପତ୍ନ । ଓଡ଼ିଆ ସାହିତ୍ୟ ମଧ୍ୟ ୧୫୦୦ ରୁ ୧୮୫୦ ପର୍ଯ୍ୟନ୍ତ ସାଢ଼େ ତିନି ଶହ ବର୍ଷ ଧରି ଶୃଙ୍ଗାର ରସର ପ୍ରାଧାନ୍ୟକୁ ବହନ କରି ଆସିଛି ।

ଭଂଜ ହେଲେ ମୁଖ୍ୟତଃ ଶୃଙ୍ଗାର ରସର କବି । କିନ୍ତୁ ଏଇ ସର୍ବଭୌମ ପରିଚୟ ପଶ୍ଚାତରେ ଏକ ବୈଚିତ୍ର୍ୟପୂର୍ଣ୍ଣ ଗହନ ସତ୍ୟ ନିହିତ ତାହି ହେଲା ପ୍ରେମର ଭିନ୍ନ ଭିନ୍ନ ଅବସ୍ଥାର ଏକ ମନୋବୈଜ୍ଞାନିକ ପରିବେକ୍ଷଣ । ମଣିଷ ମନର ସ୍ୱାଭାବିକ ଦୈହିକ ମାନସିକ କାମନାକୁ ସେ ଅତ୍ୟନ୍ତ ସାବଲୀଳ ଭାବରେ ରୂପ ଦେଇଛନ୍ତି । ଅବଶ୍ୟ ତାଙ୍କ ପରିବେଷଣରେ ଅତିରଂଜନ ରହିଛି, ଉତ୍କର୍ଷତା ମଧ୍ୟ ଅଛି । ତାଙ୍କ କାବ୍ୟ ପରମ୍ପରା ଯେ ସମାଲୋଚନାର ଊର୍ଦ୍ଧ୍ୱରେ, ତା' ନୁହେଁ । କିନ୍ତୁ ଯୁଗ ଭେଦରେ ସାହିତ୍ୟର ସ୍ୱରୂପ ସହିତ ପାଠକର ରୁଚି ବୋଧରେ ମଧ୍ୟ ପରିବର୍ତ୍ତନ ଦେଖାଦିଏ । ଏଣୁ ବର୍ତ୍ତମାନର ପୃଷ୍ଠଭୂମି ଉପରେ ଛିଡ଼ା ହୋଇ ତାଙ୍କ ରଚନାର ବିଶ୍ଳେଷଣ ପାଇଁ ଏକ ବାଧିତ ନୈତିକତାର ମାନଦଣ୍ଡ ନିରୂପଣ ନକରି ସେ ଯେଉଁ ସଂସ୍କୃତ କାବ୍ୟ ଗୁରୁ ମାନଙ୍କର ସମକକ୍ଷୀ ଉତ୍ତର ପୁରୁଷ ଭାବେ ଦେଖା-ଦେଇଥିଲେ ସେମାନଙ୍କ ସହିତ ଏକ ତୁଳନାତ୍ମକ ନିର୍ଣ୍ଣୟ ନିରୂପଣ କରାଯାଇପାରେ ।

ସଂସ୍କୃତ ସାହିତ୍ୟରେ କାଳିଦାସ ହେଉଛନ୍ତି ସହଜ, ନିରଳଙ୍କୃତ ସୌନ୍ଦର୍ଯ୍ୟର ଉପାସକ । ତାଙ୍କର ନାରୀ ମାନସ ସୃଷ୍ଟି ହେଲେ ବି ସୌନ୍ଦର୍ଯ୍ୟର ସର୍ବୋତ୍କୃଷ୍ଟ ଆଦର୍ଶ । ତା'ର ସ୍ୱାଭାବିକ ସରଳ ସୌନ୍ଦର୍ଯ୍ୟକୁ ଅଳଙ୍କାରିତ କରିବା ଅନାବଶ୍ୟକ । ତାଙ୍କ ନାୟିକାର ଶରୀର ଆଭରଣରେ ମଧ୍ୟ ଆଭରଣ ଅଟେ, ପ୍ରସାଧାନ ସାମଗ୍ରୀ ଗୁଡ଼ିକର ପ୍ରସାଧାନ ଏବଂ ଉପମାନ ଯୋଗ୍ୟ ବସ୍ତୁ ମାନଙ୍କ ପାଇଁ ସେ ହେଉଛନ୍ତି ଉପମାନ—

ଆଭରଣସ୍ୟା ଭରଣଂ ପ୍ରସାଧାନବିଧେ ପ୍ରସାଧାନ ବିଶେଷଃ
ଉପମାନସ୍ୟାପି ସଖେ ପ୍ରତ୍ୟୁପ ମାନଂ ବପୁ ସ୍ତସ୍ୟାଃ ।

( ବିକ୍ରମୋର୍ବଶୀୟ ୨ୟ ଅଙ୍କ ୩ୟ ପଦ )

କନ୍ଦର୍ପର ଗର୍ବକୁ ବଢାଇ ଅନ୍ୟସବୁ ଉପମାନଙ୍କର ଅହଙ୍କାରକୁ ପ୍ରତିହତ କରି "ପୃଥିବୀ ତୁଲ୍ୟା ସ୍ତ୍ରୀର ଚମ୍ପକମାଳା ରୂପା" ରସଲେଖା ମଧ୍ୟ

ବଚନ କନ୍ଦନକୁ ଉପମା ନାହିଁ
ତାହାଙ୍କୁ ସମ ହୋଇ ଜଗତେ ସେହୁ ସେ,
ଭୂଷଣ ଭୂଷଣକୁ ନବ ନାଗଣ୍ଡି
ଯୌବନ ତାକୁ ହେଲା ଭୂଷଣ ପରି ସେ । ( ୧ )
[ ରସଲେଖା ୨-୧୮/୧୯ ]

ତେଣୁ ବହୁଳିତ ନାୟକର ମୁଗ୍ଧ ଦୃଷ୍ଟିରେ :

ଏ'ତ ଲାବଣ୍ୟ ସର୍ବ ରୁଣ୍ଡ ସୀମା
ନାହିଁ ସମ ଏହା ଏହି ଉପମା । ( ୨ ) [ରସଲେଖା ୫-୨]

ଏକ ପ୍ରାଣବନ୍ତ ସ୍ଥୂଳ ବର୍ଣ୍ଣନା ସୃଷ୍ଟି ଦେଇ ଉଭୟ କାଳିଦାସ ଏବଂ ଭଂଜ ରମଣୀର ବନ୍ଧୁର ଅଙ୍ଗକୁ ବର୍ଣ୍ଣନା କରିବା ଅବକାଶରେ ସୃଷ୍ଟିର ବିଭିନ୍ନ ଉପମା ମାନଙ୍କୁ ତାହା ସହିତ ତୁଳିତ ହେବା ନିମନ୍ତେ ଆହ୍ୱାନ ଜଣାଇଛନ୍ତି ।

ନୟନାଭିରାମ ରୂପର ଛବିଳ ବର୍ଣ୍ଣନା ସହିତ ପ୍ରଣୟର ମନ୍ଦ ମାଦକରସ ପରିବେଷଣ କାଳିଦାସୀୟ ପ୍ରତିଭାର ଅନ୍ୟ ଏକ ବୈଶେଷତ୍ୱ । ଉମା-ଶିବ, ଅଜ-ଇନ୍ଦୁମତି, ବିକ୍ରମ ଉର୍ବଶୀ, ଦୁଷ୍ମନ୍ତ-ଶକୁନ୍ତଳା ଆଦି ପ୍ରଣୟୀ ଯୁଗଳଙ୍କର ବର୍ଣ୍ଣନା ଅବକାଶରେ ପ୍ରଣୟର ଯେଉଁ ଚିତ୍ର ଅଙ୍କିତ ତାହା ମନ ମଧ୍ୟରେ ଆନନ୍ଦ ଏବଂ ଉଲ୍ଲାସର ଏକ ବିମଳ ସ୍ରୋତସ୍ୱିନୀ ପ୍ରବାହିତ କରିଦିଏ । ଶକୁନ୍ତଳା ଦୁଷ୍ମନ୍ତଙ୍କର ଚକ୍ଷୁରାଗ ହୋଇଛି । ପ୍ରଥମ ଦେଖାରେ ପ୍ରେମ, ସୌନ୍ଦର୍ଯ୍ୟର ଆକର୍ଷଣ ନାୟକ

---

୧) ତୁଳନୀୟ — "ଅନ୍ୟୋନ୍ୟ ଶୋଭା ଜନନାଦ୍ ବଭୂବ ସାଧାରଣୋ ଭୂଷଣ ଭୂଷ୍ୟ ଭାବଃ" ( କୁମାର ସମ୍ଭବ ୧ମ ସର୍ଗ ୪୨ଶ ପଦ )
ଅନୁରୂପ ବର୍ଣ୍ଣନା ଭଂଜଙ୍କର ଲାବଣ୍ୟବତୀରେ—
"ଉପମା ଆଣିବ କାହୁଁ ମହାକବି ହେଲେ
ସୁନ୍ଦରେ ଯାହା ଅଙ୍ଗରେ ସୁନ୍ଦର ହୋଇଲେ" । (୨ୟ ଛାନ୍ଦ ୮୦ ପଦ)

୨) "ସେ ପଟାନ୍ତର ତାକୁ ସେହି ସେ ସୀମା ପ୍ରତିକଳ୍ପ ଆଉ ନାହିଁ ।"
( ରସ ପଞ୍ଚକ, ଧର୍ମଗ୍ରନ୍ଥ ଷ୍ଟୋର ପୃ ୪୨ )

ନାୟିକାଙ୍କୁ ମୁଗ୍ଧ କରୁଛି । ଆଖି ଚାହୁଁଛି ଦେଖିବାକୁ, ଲଜ ତାକୁ ସେଥିରୁ ନବୃତ୍ତ କରୁଛି । ପାଦରେ କଣ୍ଟା ଫୁଟିଗଲା ବାହାନାରେ ଶକୁନ୍ତଳା ଟିକେ ରହି ଯାଉଛନ୍ତି । ପରିଧେୟ ଲତା ଗହଳରେ ଛନ୍ଦି ହୋଇ ଯାଉଛି ଆଳରେ ଗଡିକୁ ମନ୍ଥର କରି ଫେରି ଚାହୁଁଛନ୍ତି । (୩) ଅନୁରୂପ ଭାବର ଏକ ଆବେଗ ଭରା ଚନ୍ଦ ରଥ ଲେଖାରେ—

ସେହି ପ୍ରକାରେ ପାଲଟି ପାଲଟି
କେତେଥର ଚାହିଁଲ ସିଂହକଟୀ । [ ୫ । ୩୮ ]
× × ×
ତାଙ୍କ ଦୃଷ୍ଟି ଗୋଚର ଉହ୍ନ ହେଲ
ବାଳା ଦଶିବା ଯାଏ ଚାହୁଁ ଥିଲ ।
ଯଥା ଚନ୍ଦ୍ର ଚାହୁଁ ଥାଇ ଚକୋର
ହେବାଯାଏଁ ଅସ୍ତାଦ୍ରି ଚରମର । [ ୫ । ୪୦ ]

ସୁନ୍ଦରୀ ନାୟିକା ପ୍ରସଙ୍ଗ ଶ୍ରବଣରେ ନାୟକର ଆକର୍ଷଣ ଯେତିକି, ରୂପବାନ୍ ଓ ଗୁଣବନ୍ତ ପୁରୁଷ ଦର୍ଶନରେ ନାୟିକା ତତୋଽଧିକ ଲାଳସାବତୀ । ନାୟିକାକୁ କେବଳ ମନର ମାନସୀ କରି ଗଢି ତୋଳିବାରେ ତୃପ୍ତି ମିଳେନାହିଁ । ଭଲ ପାଇବାର ନିବିଡ଼ତା ଭିତରେ ଦେହ ଭୋଗର ଏକ ସୂକ୍ଷ୍ମ କାମନା ପ୍ରଚ୍ଛନ୍ନ ଥାଏ । ବିଚ୍ଛେଦ ବର୍ଣ୍ଣନା ମଧ୍ୟରେ ଏ ପ୍ରକାର ଦେହାଶ୍ରୟୀ ପ୍ରେମର ନିବିଡ଼ତା ଓ ଆନ୍ତରିକତା ପ୍ରକାଶ କରିବା ଦିଗରେ ଭଂଜ ଯଥେଷ୍ଟ ପାରଦର୍ଶିତା ଦେଖାଇଛନ୍ତି । ଏଭଳି କେତେଗୁଡ଼ିଏ ପ୍ରାଣବନ୍ତ ଅନୁଭୂତିର ଆଲେଖ୍ୟ ରହିଛି, ଯାହା ପଢିଲେ ମନ ଏକ ଅଜଣା ପୁଲକରେ ଉଦ୍ଭ୍ରାନ୍ତ ହୋଇ ଉଠେ । ଯେପରି—

ଅଲଗା ହେଲେ ହୃଦୂ ହୃଦ, ତାକୁ ଯେ ନଆସଇ ନିଦ
ଏବେ ସେ କି କରିବ ତହିଁ ନଶି ପାରିବ
ଅଭେଦ ପ୍ରୀତି ହେଲା ଭେଦ ହେ । [ ୧୯-୬ ]

---

(୩) ଦର୍ଭାଙ୍କୁରେଣ ଚରଣଃ କ୍ଷତ ଇତ୍ୟକାଣ୍ଡେ
ତନ୍ୱୀ ସ୍ଥିତା କତିଚଦେବ ପଦାନି ଗତ୍ୱା ।
ଆସୀଦ୍ ବିବୃତ୍ତ ବଦନା ଚ ବିମୋଚୟନ୍ତୀ
ଶାଖାସୁ ବଲ୍କଲମସକ୍ତମପି ଦ୍ରୁମାଣାମ୍ ।
( ଅଭିଜ୍ଞାନ ଶାକୁନ୍ତଲଂ ୨–୧୨ )

ବିରହ ବିଚ୍ଛେଦର ଏ ବିହ୍ୱଳିତ ଭାବ ଯେ କୌଣସି ଉଚ୍ଚକୋଟୀର କାବ୍ୟର ପଂକ୍ତି ସହିତ ତୁଳନୀୟ । ମାଳବିକାଙ୍କର ଆବର୍ତ୍ତିମାନରେ ଅଗ୍ନି ମିତ୍ରଙ୍କ ମନୋଭାବର ସୂଚନା ଦେଇ କାଳିଦାସ କହୁଛନ୍ତି, "ପ୍ରିୟାର ପରିଚୟ ଅଭାବରୁ ମୋର ଶରୀର କ୍ଷୀଣ ହେବାକୁ ଯାଉଛି । ତାକୁ ନିମିଷେ ମାତ୍ର ନ ଦେଖିଲେ ଆଖିରେ ଲୋତକ ଆସୁଛି । ସେହି ସାରଙ୍ଗନୟନା ସୁନ୍ଦରୀଙ୍କୁ ଅନ୍ତରରେ ସର୍ବଶ୍ରେଷ୍ଠ ଆସନ ଦେଇଥିଲେ ମଧ୍ୟ ଏ ଜ୍ୱଳନର ଅବସାନ ଘଟୁନାହିଁ" —

ଶରୀରଂ କ୍ଷାମଂ ସ୍ୟାଦସତି ଦୟିତା ଲିଙ୍ଗନ ସୁଖେ
ଭବେତ୍ସାସ୍ରଂ ଚକ୍ଷୁଃ କ୍ଷଣମପି ନ ସା ଦୃଶ୍ୟତେ ଇତି ।
ତୟା ସାରଙ୍ଗାକ୍ଷ୍ୟା ତ୍ୱମପି ନ କଦାଚିଦ୍ଧି ରହିତଂ
ପ୍ରସକ୍ତେ ନିର୍ବାଣେ ହୃଦୟ ପରିତାପଂ ବହସି କିମ୍ ।
[ ମାଳବିକାଗ୍ନି ମିତ୍ର ୩-୧ ]

କେବେ ଅନୁଭବୀ ହିଁ କେବଳ ଏ ନିବିଡ଼ତାର ଭାବ ଉପଲବ୍ଧି କରିପାରିବ । [୪]

ଉଭୟ ଭଞ୍ଜ ଏବଂ କାଳିଦାସଙ୍କ କାବ୍ୟ ତନ୍ତ୍ରୀରେ ମୁଖ୍ୟତଃ ସୌନ୍ଦର୍ଯ୍ୟ ଓ ପ୍ରେମର ଧ୍ୱନି ହିଁ ନିଃସୃତ । ଆରମ୍ଭରେ କାଳିଦାସଙ୍କର ନାୟକ ନାୟିକାଙ୍କୁ ଦେଖିଲେ ମନେହୁଏ ସତେକି ଏମାନେ କାମର ମାୟାରେ ଅଭିଭୂତ ହୋଇ ସଂଯମ ଏବଂ ଶାଳୀନତାର ସୀମା ଅତିକ୍ରମ କରିଯିବେ । କିନ୍ତୁ କାଳିଦାସ ସେମାନଙ୍କୁ ଏପରି ଭାବରେ ପରିକଳ୍ପିତ କରିଅଛନ୍ତି ପାଠକ କ୍ରମଶଃ ରୂପଜମୋହ ତ୍ୟାଗ କରି ମନ ମଧ୍ୟରେ ଏକ ଦିବ୍ୟ ଆନନ୍ଦର ସ୍ପନ୍ଦନ ପୁଲକ ଅନୁଭବ କରିଯାଏ । କାଳିଦାସଙ୍କ ରଚନାରେ ପ୍ରେମର ବ୍ୟାପକତା ଅତୁଳନୀୟ । ବ୍ରହ୍ମର୍ଷି ହେଲେ ହେଁ ପାଳିତା କନ୍ୟାର ବିଦାୟରେ କଣ୍ୱଙ୍କର ପିତୃ ହୃଦୟର ଆଲୋଡ଼ନ, ଯକ୍ଷ ବଧୂର ବିରହ, ସ୍ୱାମୀର ମୃତ୍ୟୁ ପରେ ରତିଙ୍କର ବୁକୁଫଟା କ୍ରନ୍ଦନ ସବୁ ଯୁଗର ସବୁ ଦେଶର ମଣିଷ ପାଇଁ ଶାଶ୍ୱତ ଅନୁଭୂତି । ଏ ପ୍ରକାର ଚିତ୍ର ଭଞ୍ଜ ସାହିତ୍ୟରେ ଖୋଜିଲେ ହତାଶ ହେବାକୁ ପଡ଼େ । ସେ କେବଳ ପ୍ରେମର ସାଧାରଣ ରୂପ କଥନରେ ବ୍ୟସ୍ତ । କାଳିଦାସଙ୍କ ନାୟକ ନାୟିକା ପ୍ରେମର ପ୍ରଳୟଙ୍କରୀ ବେଗରୁ ନିଜକୁ ମୁକ୍ତ କରି ମଙ୍ଗଳ ରୂପୀ ମହା ସମୁଦ୍ରର ସ୍ଥିରତା ପ୍ରାପ୍ତ ହୋଇଥିବା ସ୍ଥଳେ ଭଞ୍ଜୀୟ ନାୟକ ନାୟିକା କାମର ମାୟାରେ ଅଭିଭୂତ ହୋଇ ସଂଯମର ନିଗଡ଼ ବନ୍ଧନକୁ ସମ୍ପୂର୍ଣ୍ଣ ଭୁଲି ଯାଇଥିବା ପରି ମନେହୁଏ ।

---

୪) "ଜାଣେ ଅନୁଭବୀ ଅନୁଭବରେ"— ( ରସିକ ହାରାବଳୀ ୪ । ୨୫ )

ତେବେ ଯେଉଁ ପ୍ରଣାଳୀ ଏବଂ ଅବସ୍ଥାର କ୍ରମ ମଧ୍ୟ ଦେଇ ଭଂଜ ବୈଦ୍ଧ ଦାମ୍ପତ୍ୟ ପ୍ରେମର ଚିତ୍ର ପ୍ରଦାନ କରିଅଛନ୍ତି ତାହା ଅଳଙ୍କାର ଶାସ୍ତ୍ରରୁ ଗୃହୀତ । ଶୃଙ୍ଗାର ରସକୁ କାବ୍ୟର (୫) ଆତ୍ମା ଭାବରେ ଗ୍ରହଣ କରି ସେ ମୁଖ୍ୟତଃ ବାତ୍ସାୟନଙ୍କର କାମ ଶାସ୍ତ୍ର (୬) ଏବଂ ଶ୍ରୀହର୍ଷଙ୍କର ନୈଷଧ (୭) ପ୍ରତି ଆନୁଗତ୍ୟ ପ୍ରକାଶ କରିଅଛନ୍ତି । ଭାରବୀଙ୍କର କିରାତାର୍ଜୁନୀୟମ୍ ଏବଂ ମାଘଙ୍କର ଶିଶୁପାଳ ବଧର ପ୍ରଭାବ ମଧ୍ୟ ତାଙ୍କ ଉପରେ କିଛି ଅଂଶରେ ପଡ଼ିଛି ।

କାବ୍ୟର ମୁଖ୍ୟ ରସ ଶୃଙ୍ଗାର ସହିତ ତାଙ୍କର ନାୟିକା ଅବିଚ୍ଛେଦ୍ୟ ଭାବରେ ବନ୍ଧା । ଉଚ୍ଛ୍ୱସିତ ବିଳାସ ବର୍ଣ୍ଣନା ନିମନ୍ତେ ଉଦ୍ଦିଷ୍ଟ ନାୟିକାର ନାମକୁ ନେଇ ତେଣୁ କାବ୍ୟର ନାମକରଣ । ଅଙ୍କୁରିତ ଯୌବନା ମୁଗ୍ଧା ନାୟିକା (୮) ରସିଲେଖା ବୟଃସନ୍ଧି ପ୍ରାପ୍ତ ହେଲାପରେ ଦେହରେ ତା'ର ଉଦ୍ଦୀପନାର ଅଫୁରନ୍ତ ତେଜ । ସ୍ୱାଭାବିକ ଭାବରେ ଶାରୀରିକ ପରିବର୍ତ୍ତନ ସହିତ ମାନସିକ କ୍ଷେତ୍ରରେ ମଧ୍ୟ ଚାଞ୍ଚଲ୍ୟ ସୃଷ୍ଟି ହୋଇଛି । ପ୍ରସ୍ଫୁଟିତ ପୁଷ୍ପ ସହିତ ଭ୍ରମରର ବିଳାସ ତା' ମନକୁ ଅନମନା କରିଛି । ଏକାନ୍ତ ସ୍ଥାନରେ ବସି କାମଶାସ୍ତ୍ର ଅଧ୍ୟୟନ ପ୍ରତି ତା'ର ଆଗ୍ରହ

ଅନଙ୍ଗ ଶାସ୍ତ୍ର ପୋଥି ନ ଛାଡ଼େ କରୁ
ଏକାନ୍ତ ସ୍ଥାନେ ବସି ପଢ଼ଇ ଝରୁ ସେ । [ ରସଲେଖା ୨ । ୨୨ ]

---

୫) ଶୃଙ୍ଗାର ବା ମଧୁର ରସକୁ ଅବଲମ୍ବନ କରି ହିଁ କାବ୍ୟର ମାଧୁର୍ଯ୍ୟ ସଂପାଦନ କରାଯାଇପାରେ । ଏ ସଂପର୍କରେ "ଧ୍ୱନ୍ୟା ଲୋକ"ର ନିର୍ଦ୍ଦେଶ-

ଶୃଙ୍ଗାର ଏବ ମଧୁରଃ ପରପ୍ରହ୍ଲାଦନୋରସେ
ସମର୍ଥମବଲମ୍ବେନ ମାଧୁର୍ଯ୍ୟ ପ୍ରତିତିଷ୍ଠତେ ( ୨-୭ )

୬) ବାତ୍ସାୟନ ଋଷିଙ୍କି ଯେ ଏ ରସ ଗୋଚର

୭) ଯେନ ନୈଷଧ ପରାଏ
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ ।

୮) ରସ ଶାସ୍ତ୍ର ମାନଙ୍କରେ ନାୟିକାକୁ ବହୁ ଭାଗରେ ବର୍ଗୀକରଣ କରାଯାଇଥିଲେ ହେଁ ଭଂଜ ତାଙ୍କର ରସ ପଞ୍ଚକରେ ନାୟିକାକୁ ମୁଗ୍ଧା, ମଧ୍ୟା ଓ ପ୍ରଗଳ୍ଭା ଭେଦରେ ତିନି ଭାଗରେ ବିଭକ୍ତ କରିଛନ୍ତି ।
( ଦ୍ରଷ୍ଟବ୍ୟ ରସପଞ୍ଚକ ପୃ ୪୨-୪୪ )

ଅନ୍ତରାଳରୁ ନାୟକ ରସ ଲେଖାର ଯୌବନଶ୍ରୀ ଉପଲକ୍ଷ୍ୟ କରନ୍ତି । ଅଶୋକ ଡାଳକୁ ଧରି ନାୟିକା ଅଳସ ଭାଙ୍ଗିବା ସମୟରେ ତା'ର ସମୁନ୍ନତ ସ୍ତନ ଦ୍ୱୟ ଏବଂ ପାଦ ଉପରେ ପାଦ ଛନ୍ଦି ଦେବାବେଳେ ଜଘନ ଦ୍ୱୟର ଶୋଭା ବର୍ଣ୍ଣନା କରିବାକୁ ଯାଇ କବି ଯେପରିକି ସସୀମର ଚକ୍ରବାଡ଼ ଲଙ୍ଘନ କରି ଯାଇଛନ୍ତି (୯) । ଏସବୁ ନୈଷଧ କାବ୍ୟରେ ପ୍ରକାଶ ପାଇଥିବା ନାରୀ ଯୌବନ ବର୍ଣ୍ଣନା ତୁଲ୍ୟ ସୁବନ୍ଧିତ ଏବଂ ଅତିଶୟୋକ୍ତି ପୂର୍ଣ୍ଣ ।

ଆଳଙ୍କାରିକମାନଙ୍କର ଶିଳ୍ପ ଗ୍ରନ୍ଥ ଅନୁଯାୟୀ ଗୀତ ପରମ୍ପରାର ଏକ ପ୍ରମୁଖ ଅଙ୍ଗ ହେଉଛି ବିପ୍ରଲମ୍ଭ । ଦେବ ଦର୍ଶନ, ଉଦ୍ୟାନ ଭ୍ରମଣ, ସରୋବର ସ୍ନାନ, ଚିଠାଉ ପ୍ରେରଣ, ଚିତ୍ରପଟ ଦର୍ଶନ, ସ୍ମୃତି, ଗୁଣ କୀର୍ତ୍ତନ, ସ୍ୱପ୍ନ ଏବଂ ବିଳାପ ମଧ୍ୟ ଦେଇ ନାୟକ ନାୟିକା ମାନଙ୍କର ଉଦ୍‌ବେଗ ଏବଂ ଉତ୍କଣ୍ଠା ପ୍ରକାଶ କରିବା କବିର ଧର୍ମ । ଗୀତ ପରମ୍ପରାର ଏ କ୍ରମଗୁଡ଼ିକ ଭଂଜ ପୂର୍ଣ୍ଣମାତ୍ରାରେ ଗ୍ରହଣ କରିଅଛନ୍ତି । ନାୟକ ରସଲେଖା ପାଖକୁ ଯେଉଁ ପ୍ରଣୟ ଲେଖା ପଠାଇଛି ତାହା ପ୍ରଣୟୀ ହୃଦୟର ଏକ ଚିରନ୍ତନ ଆବେଗ—

ତୋର ନାମ ହୃଦେ କରୁ କରୁ ଜପ
ପୁଣି ଧ୍ୟାନ କରୁ କରୁ ତୋର ରୂପ
ଯାଉ ଯାଉ ଏ ଜୀବନ ଯଶ ଥାଉ
ଏଥୁଁ ପରମ ଗତି ଅଛି କି ଅଉ । [୭- ୩୪ । ୩୫]

---

୯) ନାୟିକାର ସ୍ତନକୁ ବର୍ଣ୍ଣନା କରିବା ନିମନ୍ତେ ସେ ଏକ ସଙ୍ଗମେ ଟଙ୍କ, ବେଲ, ନଡ଼ିଆ, ପଦ୍ମ, ଶମ୍ଭୁ, କୃଷ୍ଣଙ୍କ ବାଲଲୀଳାର କନ୍ଦୁକ, କନ୍ଦର୍ପର ଫରୁଆ, ଲାବଣ୍ୟ ରୂପୀ ଜଳାଶୟ, ଚକ୍ରବାଳ ଦମ୍ପତି, ନୂଆ ପଦ୍ମ କଢି, ଅମୃତର ଭଣ୍ଡାର, ଯୌବନ ହସ୍ତିର କୁମ୍ଭ, କନ୍ଦର୍ପର ପଗଡ଼ି, ମଲ୍ଲ ମନଙ୍କ ମଠନା ଘର, ପ୍ରେମ ରତ୍ନକୁ ଘୋଡ଼ାଇ ରଖିଥିବା ଓଲଟ ଗିନା, ସରସ୍ୱତୀଙ୍କ ବୀଣାର ତୁମ୍ବି, ପ୍ରାସାଦ, ଦେଉଳର ଉପମା ଗ୍ରହଣ କରିଥିବା ବେଳେ ଜାନୁକୁ ସୁବର୍ଣ୍ଣର ଓଲଟ କଦଳୀ ଗଛ, ଯୁବା ମନକୁ ବାନ୍ଧି ରଖିବାର ଅର୍ଗଳି, ହରିତାଳ ନଦୀର ପୁଳିନ, ସ୍ୱର୍ଗ ଆରୋହଣର ପାହାଚ, କନ୍ଦର୍ପର ସାଧନ ଯନ୍ତ୍ର, ବିରହ ସାଗରର ନୌକା, ହସ୍ତୀ ଦନ୍ତର ସ୍ତମ୍ଭ, କାମଦେବର ସିଂହାସନ ସହିତ ତୁଳନା କରିଅଛନ୍ତି । (ପଞ୍ଚମ ଗ୍ରନ୍ଥ ଦ୍ରଷ୍ଟବ୍ୟ)

ପ୍ରଣୟୀର ଏ ଚ୍ୟୁଷ୍ଟ ଏବଂ ଚଟାଉ ନାୟିକାକୁ ମୁଗ୍ଧ କରିଛି । ସେ ଚତୁରା, ରସିକା । ତେଣୁ ଅନ୍ତର୍ଲିପିକା ମଧ୍ୟଦେଇ "ନାହିଁ ଗତ ତୁମ୍ଭ ବନ୍ଦ ରସ ଦ ଯ୍ନିକାର, କି ରୂପେ କରିବ ଶାନ୍ତି ବେଗ କରି କର ହେ" ବୋଲି ଜଣାଇଛି ( ଦ୍ରଷ୍ଟବ୍ୟ ଦଶମ ଛାନ୍ଦ ୨୨ ରୁ ୨୮ ପଦ ) । ନାୟକ କାର ଏହି ସ୍ୱୀକୃତ ପତ୍ର ପାଇସାରିବା ପରେ ନାୟକ ମନରେ ଉଚ୍ଛ୍ୱାସ ବହୁଗୁଣିତ ହୋଇ ପଡ଼ିଛି । ପ୍ରେୟସୀ ଅଙ୍ଗର ବିବସନ ସୌନ୍ଦର୍ଯ୍ୟ ଦେଖିବା ପାଇଁ, ରତି କାଳରେ ପ୍ରିୟାର କଟୀ-କିଙ୍କିଣୀର ସ୍ୱନ ଶୁଣିବା ନିମନ୍ତେ ତା' ମନରେ ଉଦଗ୍ର କାମନା ( ଦଶମ ଛାନ୍ଦ, ପଦ ୪୩-୪୪ ) ନୈଷଧୀୟ ନଳ ଦମୟନ୍ତୀଙ୍କ ପ୍ରାକ୍ ପରିଣୟ ବିରହ ବର୍ଣ୍ଣନା-ତୁଲ୍ୟ ଅସ୍ୱାଭାବିକ ମନେହୁଏ । ସମ୍ଭ୍ରମ ହୀନ ଭାବରେ ନିଜ ମନର ପ୍ରଦୀପ୍ତ ବାସନାକୁ ମଧ୍ୟ ଭଂଜଙ୍କ ନାୟକ ପ୍ରକାଶ କରି ଦେଇପାରେ—

ମୁଁ ଫେଡ଼ିଇ ନୀବି ତୋର ତୁ ଫେଡ଼ୁ ମୋ ଦୁଃଖ ଘୋର
ଅଙ୍ଗୀକାର କଲି ବୋଲି ଲେଖିଦେବୁ ଧାଡ଼ିଏ ଶ୍ରୀ ହସ୍ତାକ୍ଷରେ । [୯-୨୩]

ଏବଂ

ଯେବେ ଅଙ୍ଗୀକାର ମୋତେ କଲଣି ହେ ମନେ
ନ ବନ୍ଧିବ କି ମୋ ନଖ କ୍ଷତ ତାହା ସ୍ତନେ ଯେ । [୧୦-୫୬]

ନୀବି ଉନ୍ମୋଚନ ଏବଂ ନଖ କ୍ଷତ ପ୍ରଦାନର ସେଇ ରସ ଘନ ମୁହୂର୍ତ୍ତିଟି ପହଞ୍ଚିବାରେ କୌଣସି ପ୍ରତିବନ୍ଧକ ନାହିଁ । ପ୍ରସ୍ତାବ ଗ୍ରହଣ ଏବଂ ଶୁଭଲଗ୍ନାନୁସାରେ ବିବାହ ସମ୍ପନ୍ନ ପରେ ନାୟକ ନାୟିକା ବହୁ ପ୍ରତୀକ୍ଷିତ ମଧୁଶଯ୍ୟା ଗୃହରେ ପରସ୍ପରକୁ ଭେଟି ଅଛନ୍ତି । କେଳିପୂର ରହସ୍ୟ ବର୍ଣ୍ଣନା ନିମନ୍ତେ ଏଥିରେ ଅନ୍ୟାନ୍ୟ କାଳିଦାସଙ୍କ କାବ୍ୟ ତୁଲ୍ୟ ଗୋଟିଏ ଛାନ୍ଦ [ ୧୪ଶ ଛାନ୍ଦ ] ସଂରକ୍ଷିତ ରହିଛି । ସମ୍ଭୋଗର ସାଙ୍ଗୋପାଙ୍ଗ ବର୍ଣ୍ଣନା ନିମନ୍ତେ ଏଠାରେ ମଧ୍ୟ ଶ୍ରୀହର୍ଷ ଓ ବାତ୍ସ୍ୟାୟନ ଭଂଜଙ୍କର ଆଦର୍ଶ ଭାବରେ ଦେଖା ଦେଇଛନ୍ତି ।

କାଳିଦାସଙ୍କ କୁମାର ସମ୍ଭବରେ ସମ୍ଭୋଗ ବେଳେ ଶିବ ନବ ସମାଗତା ପାର୍ବତୀଙ୍କ ପକ୍ଷରେ ସହ୍ୟ ହେଲାପରି ମୃଦୁ ଓଷ୍ଠ ଚୁମ୍ବନ ଏବଂ ଋଜୁ ନିମ୍ନ ନଖାଘାତ କରିଅଛନ୍ତି [ କୁମାର ସମ୍ଭବ ଅଷ୍ଟମ ସର୍ଗ ୮ମ ୯ମ ପଦ ] । ଏ ଦୃଷ୍ଟିରୁ ଭଂଜଙ୍କର ନାୟକ ନାୟିକା ଉଦ୍ଦାମ ଏବଂ ଦୁର୍ଦ୍ଧର୍ଷ । ଦୀର୍ଘ ଦିନର ବୁଭୁକ୍ଷା ସେଇ ଗୋଟିଏ

ରତିରେ ମେଣ୍ଟାଇବା ପାଇଁ ଯେପରିକି ବନ୍ଧ ପରିକର । କାମଶାସ୍ତ୍ର ବର୍ଣ୍ଣିତ ସମସ୍ତ ଉପଚାରଗୁଡ଼ିକ ପର୍ଯ୍ୟାୟକ୍ରମେ ଅନୁସୃତ ହେବାପରେ (୧୦) ରତିକ୍ରୀଡ଼ା ଆରମ୍ଭ ହୋଇଛି । ଏକାଧିକ ବନ୍ଧ (୧୧) ପ୍ରୟୋଗରେ ବିପର୍ଯ୍ୟସ୍ତା ନାୟିକା ମୁଖରେ ନିଜର ଅବସନ୍ନ ଭାବ ପ୍ରକାଶ କରିନପାରି ନାୟକ ହାତରେ ମଲ୍ଲୀଫୁଲ ଧରାଇ ଦେଇଛି । ସାମୟିକ ବିରତି ପରେ ନାୟକ ପୁଣି ଥରେ ନାୟିକାକୁ ଶ୍ରୋଣି ଉପରକୁ ଉଠାଇଛି ଏବଂ ନାୟିକା ଅନୁରୋଧ ଉପେକ୍ଷା କରି ନ ପାରି ସେଇ ଅବସ୍ଥାରେ ସଂଯୁକ୍ତ ହୋଇ ବିପରୀତ ରତିରେ ମତ୍ତ ହୋଇଛନ୍ତି (୧୨) ଏହାପରେ "ମଦନ ମହାରି ରସରେ ଭୋଳ ହୋଇ" ସେ ନବଦମ୍ପତି "କେତେବେଳେ କାହାପରି କେ

---

୧୦) ପଞ୍ଚଶାୟକ ରଚୟିତା ଜ୍ୟୋତିରୀଶ୍ୱରଙ୍କ ମତରେ ରତି ମିଳନର ଅଷ୍ଟବିଧ କ୍ରମ ହେଲା ପ୍ରଥମରେ ଆଶ୍ଳେଷ, ଦ୍ୱିତୀୟରେ ଚୁମ୍ବନ, ତୃତୀୟରେ ନଖକ୍ଷତ ପ୍ରଦାନ, ଚତୁର୍ଥରେ ଦନ୍ତାଘାତ, ପଞ୍ଚମରେ ଚନ୍ଦ୍ରକଳନା, ଷଷ୍ଠରେ ପ୍ରହରଣ, ସପ୍ତମରେ କଣ୍ଠ ଶବ୍ଦ ଏବଂ ଅଷ୍ଟମରେ ବନ୍ଧ ରଚନା ।

୧୧) ତୋଳି ହୃଦରେ ଲଗାଇ ଥୋଇଅଛି ଶେଯେ
କାହିଁପାଇଁ ବିପରୀତ ରସିକ ସହଜେ ।
ଜାନୁ କାନ୍ଧେ ଭୁଜେ କେତେବେଳେ ରଖେ ପାଦ
ଦରିଦ୍ର ପାଇବ ପୁଣି ପରମ ସମ୍ପଦ ଯେ । ( ଚତୁର୍ଦ୍ଦଶ ଛାନ୍ଦ ୪୪ ପଦ )

୧୨) ଅନ୍ୟ ସମୟରେ ଯେଉଁ କାର୍ଯ୍ୟ ଅକରଣୀୟ ରତି କାଳରେ ସ୍ତ୍ରୀ ପୁରୁଷ ସେଇ କାମ କରିଥାଆନ୍ତି ଅର୍ଥାତ୍ ସମ୍ଭୋଗ ବେଳେ ନାରୀମାନେ ଲଜ୍ଜା ତ୍ୟାଗ କରି ଲଜ୍ଜାହୀନା ଏବଂ ସ୍ୱାମୀମାନେ ଦୟା ଶୂନ୍ୟ ନିର୍ଦ୍ଦୟ ହୁଅନ୍ତି । ଏ କଥା ପ୍ରକାଶ କରି ମାଘ କହନ୍ତି

"ଅନ୍ୟ କାଲ ପରିହାର୍ଯ୍ୟମଜସ୍ରଂ ତଦ୍‌ଦ୍ୱୟେନ ବିଦଧେ ଦ୍ୱୟମେବ
ଧୃଷ୍ଟତା ରହସି ଭର୍ତ୍ତୃ ଗୁତାଭି ନିର୍ଦ୍ଦୟତ୍ୱମିତରୈର ବଲାସୁ" ।

( ଶିଶୁପାଳ ବଧ ୧୦ । ୭୧ )

ହୋଇନ୍ତି" ଜଣାପଡ଼ୁନାହିଁ । (୧୩) ଦାମ୍ପତ୍ୟ ପ୍ରଣୟର ଏହି ପ୍ରମତ୍ତ ଶୃଙ୍ଗାର ଲୀଳା ପ୍ରକାଶ କରିବାରେ ଭଂଜ ରୁଚିବାଗୀଶତାର କୌଣସି ବନ୍ଧନ ସ୍ୱୀକାର କରି ନାହାନ୍ତି ।

ନାରୀ ଦେହର କ୍ରମିକ ବର୍ଣ୍ଣନା ରୀତି ଯୁଗୀୟ କବିମାନଙ୍କର ଏକ ପାରମ୍ପରିକ ବିଳାସ । ଭଂଜ ଏହାର ଜଣେ ଶିଷ୍ଟ ଅନୁବର୍ତ୍ତୀ ହୋଇଥିଲେ ହେଁ ନାୟିକାର ଆଶିରଃପାଦ ବର୍ଣ୍ଣନା ଅବକାଶରେ ଶ୍ରୀହର୍ଷଙ୍କ ତୁଲ୍ୟ ତା'ର ଗୋପନାଙ୍ଗକୁ ମଧ୍ୟ ବାଦ୍ ଦେଇନାହାନ୍ତି । ଡ଼କ୍ଟର କିଶୋରଚନ୍ଦ୍ର ମିଶ୍ରଙ୍କ ତଥ୍ୟାନୁସାରେ ଭଞ୍ଜଙ୍କର କାଳ୍ପନିକ କାବ୍ୟମାନଙ୍କର ୧୩ଟି ସ୍ଥାନରେ ଏହି ଅଙ୍ଗଟିକୁ ତୁଳନା କରାଯାଇଛି (୧୪) ଏବଂ ଅଧିକାଂଶ ସ୍ଥାନରେ ଉପମେୟ ବସ୍ତୁ ହୋଇଛି ଅଶ୍ୱତ୍ଥ ପତ୍ର (୧୫) । ସଙ୍ଗମ ପୂର୍ବରୁ ନଳଙ୍କ ମୁଖରେ ଏହି ଗୋପ୍ୟ ଅଙ୍ଗଟିର ବର୍ଣ୍ଣନା କରି ଶ୍ରୀହର୍ଷ କହିଛନ୍ତି, "ବିଭବ ଏବଂ ବୃଦ୍ଧ ବ୍ରହ୍ମା ମଧ୍ୟ ତୁମ ନାଭି ତଥା ଊରୁଯୁଗଳ ମଧ୍ୟସ୍ଥିତ କାମ ମନ୍ଦିରଟିକୁ ଅନୁରାଗ ବଶତଃ ଅଧିକ

---

୧୩) "ସ୍ୱପ୍ନେଷ୍ୱପି ନ ଦୃଶ୍ୟନ୍ତେ ତେ ଭାବସ୍ତେ ଚ ବିଭ୍ରମାଃ
ସୁରତ ବ୍ୟବହାରେଷୁ ଯେ ସ୍ୟୁସ୍ତତ୍କ୍ଷଣ କଳ୍ପିତାଃ ।"

( ନାୟକ ଓ ନାୟିକା ପରସ୍ପର ଅନୁରକ୍ତ ହୋଇ ସୁରତ କଲାବେଳେ ଯେଉଁ ସବୁ ଭାବ ଓ ବିଭ୍ରମ ଅଙ୍କାତସାରରେ ସଙ୍ଗେ ସଙ୍ଗେ କରିଥାଆନ୍ତି, ସେ ସମସ୍ତ ଭାବ ଓ ବିଭ୍ରମ ସ୍ୱପ୍ନରେ ସୁଦ୍ଧା କଳନା କରାଯାଇ ପାରିବ-ନାହିଁ । )

—କାମସୂତ୍ରମ୍ (ଓଡ଼ିଆ ଅନୁବାଦ ଅନନ୍ତ ତ୍ରିପାଠୀ ଶର୍ମା) ପୃ ୧୭୨

୧୪) ଉପେନ୍ଦ୍ର ଭଂଜଙ୍କ କାବ୍ୟରେ ଉପମା ଏକ ଅଧ୍ୟୟନ— ଡ଼ଃ କିଶୋର ଚନ୍ଦ୍ର ମିଶ୍ର, ପୃ- ୨୧୫

୧୫) ନୈଷଧ ମହାକାବ୍ୟର ବିଂଶ ସର୍ଗର ୧୫ ପଦରେ ନାୟିକାର ଯୌନାଙ୍ଗ ସହିତ ପିପ୍ପଳ [ଅଶ୍ୱତ୍ଥ] ପତ୍ରର ଉପଲକ୍ଷ୍ୟ କରାଯାଇଛି ।

ଉଜ୍ଜ୍ୱଳ କର ଅର୍ଥାତ୍ ସୁବର୍ଣ୍ଣରେ ନିର୍ମାଣ କଲପରି ମନେ ହେଉଛୁ । (୧୬) ଭଂଜ ସୃଷ୍ଟିରେ କିନ୍ତୁ ନାୟିକାର ଏହି ଅଙ୍ଗଟି ସୁବର୍ଣ୍ଣ ନିର୍ମିତ ହସ୍ତୀ ଶୁଣ୍ଢର ଅଗ୍ର ଭାଗ ପରି ଏବଂ ଏଥିରେ ଧେନୁ ରସନା ଲକ୍ଷଣ ଗୃହୀତ ।

ମଦନ ପୁଷ୍ପ କନକ କଷ୍ଟି ପୁଷ୍କର ପରି ହୋଇ
ଧେନୁ ରସନା ଲକ୍ଷଣ ଯେନା ଯେନ ହୋଇଛୁ ତହିଁ । ( ୧୫ । ୩୧ )

ରତି ଶାସ୍ତ୍ର ଅନୁସାରେ ଧେନୁ ରସନା ଲକ୍ଷଣ ଯୁକ୍ତା ନାୟିକା ଦୃଢ ପରିରମ୍ଭ ପ୍ରତ୍ୟାଶୀ (୧୭) ଏବଂ କାମ କଳା ପ୍ରବୀଣା ।

ଉପରକୁ କଠୋର ମନେ ହେଉଥିଲେ ସୁଦ୍ଧା ନାୟିକା ରସଲେଖା "ନାରିକେଳ ତୁଲ୍ୟା ରତି ଲାଳସୀ" । କଥା କହି ମନକୁ ମୋହି ଦେବାରେ ସେ ଅଦ୍ୱିତୀୟା, ନାୟକର ସମସ୍ତ ଇଚ୍ଛାକୁ ପୂରଣ କରିବାରେ ସେ ଅନନ୍ୟା—

ଯାହା ବୋଲଇ ମୁହିଁ　　ନାହିଁ କରଇ ନାହିଁ
ଏ ପୁଣି ବଡ଼ ଗୁଣ ତା'ର
କଥାରେ ସେ ବଞ୍ଚାଇ　　ମନକୁ ମୋହି ନେଇ
ଯେବଣ କଥା ନ ଦେବାର ହେ
ନବଘନ ।
ଆହା ସେ ନବ ଅନୁଭବୀ,　　ଯେବେ ମୁଁ ଚୁମ୍ବନ ମାଗିବି
ହୋଇ ସେ ଲାଜ ଲାଜ　　ଅଧର କରି ଗୋଜ
ପଦ୍ମରେ କି କରିଦେବ ହେ । [ ୧୧ । ୮ ]

ପୁଣି କେତେବେଳେ ଇଚ୍ଛା ଥିଲେ ମଧ୍ୟ ନାୟକକୁ ପ୍ରଲୁବ୍ଧ କରିବା ପାଇଁ—

ରତି ମାଗିଲେ କରେ ନାହିଁ
ଉରକୁ ଆଉଜି ପଡ଼ଇ
X　　X　　X

---

୧୬) "ବହୁମାନ ବଧ୍ୟାଦପି ଭାବକଂ ନାଭିମୂଳସୁଗମନ୍ତ୍ରାଙ୍ଗକମ୍
ସବ୍ୟାଧାଦଧିକବର୍ଣ୍ଣ କୈରଦଂ କାଞ୍ଚନୈର୍ଯଦିବ ତାଂ ପୁରୋଽହସଃ
ନୈଷଧ ମହାକାବ୍ୟମ୍ [୮ଶ ସର୍ଗ ୧୪ ପଦ ]

୧୭) ସ୍ପର୍ଶ ଭେଦରେ ନାୟିକା ଯୌନାଙ୍ଗର ଚାରି ପ୍ରକାର ସ୍ପର୍ଶ ଅନୁଭୂତ ହୁଏ— ପଦ୍ମଦଳ ସ୍ପର୍ଶ, ଗୁଟିକା ସ୍ପର୍ଶ, ବାଲୁକା ସ୍ପର୍ଶ ଏବଂ ଗୋଜିହ୍ୱା ସ୍ପର୍ଶ

ଘନେ ଘନେ ସୁରତ ନ ସହି ରସବତୀ

ଉଡ଼ଇ ଉପୁକାଇ ଯିବ

ମୁଖ ଗଣ୍ଡ ପାଶକୁ ନୟନେ ମାନସକୁ

ଆଜକ ଆଉ ଚୁମ୍ବ ଦେବ ହେ

ଧୀର କରି ଶ୍ରବଣେ କହେ, ମୋ ଦୁଃଖ ନ ଜାଣିବ କହେ

ଦେବାକୁ ବିପରୀତ କରିଥା ବୋଲି ସତ୍ୟ

କଲିଟି ବୋଲି ମନ ମୋହେ ହେ । ( ୧୯ । ୧୫, ୧୬ )

ସମ୍ଭୋଗ ଇଚ୍ଛାଥାଇ ମଧ୍ୟ ବିରୋଧ କରିବା, ନିଷେଧ ସୂଚକ ନାହିଁ, ସେତିକି ଥାଉ, ପାରିବିନି ଇତ୍ୟାଦି ବଚନ କହି ପୁରୁଷର ଇଚ୍ଛାକୁ ଜାଗ୍ରତ କରିବା ଚତୁର ନାୟିକାମାନଙ୍କର ଏକ ସହଜାତ ପ୍ରବୃତ୍ତି । (୧୮)

ଭଂଜ ଆପାତତଃ ପ୍ରେମ ଏବଂ କାମ ମଧ୍ୟରେ ପାର୍ଥକ୍ୟ ଦେଖିପାରି-ନଥିଲେ । କେତୋଟି ରୋମାଞ୍ଚକର ମୁହୂର୍ତ୍ତି ଏବଂ ତା'ର ଅନୁଭବକୁ ରୋମନ୍ଥନ କରି ଭଂଜ ଯେଉଁ ବର୍ଣ୍ଣନା ଚାତୁର୍ଯ୍ୟ ପ୍ରଦର୍ଶନ କରିଗଲେ ଆମେ ସେଥିରେ ମାଘ, ଭାରବୀ ଏବଂ ଶ୍ରୀହର୍ଷଙ୍କର ପାଣ୍ଡିତ୍ୟ ଏବଂ ଉଦ୍ଭଟ ରସଚର୍ଯ୍ୟା ଦେଖିବାକୁ ପାଉ ସିନା କାଳିଦାସୀୟ ଶାଶ୍ୱତ ମାନବିକ ବୃତ୍ତି ଏବଂ ଦେହକୁ ଆତ୍ମାର ବାହନ କରି ଇନ୍ଦ୍ରିୟ ମାଧ୍ୟମରେ ଅତୀନ୍ଦ୍ରିୟ ସାଧନାର ସନ୍ଧାନ ପାଉନାହିଁ । ସେତିକି ହୋଇପାରିଥିଲେ ସେ "ମଧ୍ୟଯୁଗୀୟ ଭାରତୀୟ ବାଙ୍ମୟରେ ଯଥାର୍ଥରେ ଯେ କବି ସମ୍ରାଟର ସିଂହାସନରେ ଆସୀନ ହୋଇ ପାରିଥା'ନ୍ତେ ସେଥିରେ ସନ୍ଦେହ ନାହିଁ । (୧୯)"

---

୧୮) ଶିଶୁପାଳ ବଧ ଦଶମ ସର୍ଗର ୬୮-୬୯ ପଦରେ ନାରୀ ମନର ଏଇ ହଁ, ନାହିଁ ର ବିଚିତ୍ର ଭାବ ସମ୍ପର୍କରେ ବ୍ୟାଖ୍ୟା କରାଯାଇଛି ।

୧୯) ଓଡ଼ିଆ ସାହିତ୍ୟର ମଧ୍ୟ ପର୍ବ ଓ ଉତ୍ତର ମଧ୍ୟ ପର୍ବ ଚତୁର୍ଥ ସଂସ୍କରଣ ସୁରେନ୍ଦ୍ର ମହାନ୍ତି ପୃ- ୪୨୨



ରିଡ଼ର, ଭାଷା ସାହିତ୍ୟ ବିଭାଗ
ବାଂକୀ ମହାବିଦ୍ୟାଳୟ, ବାଂକୀ (କଟକ)

# ଭଂଜୀୟ କାବ୍ୟ ପ୍ରତିଭାର
# ପ୍ରଦୀପ୍ତ ଦୀପଶିଖା : ରସଲେଖା

।। ପ୍ରଫେସର୍ ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି ।।
(ଭରଦ୍ୱାଜ)

---

ମହାକବି ଉପେନ୍ଦ୍ର ଭଂଜ ପରିଣତ ବୟସରେ ତାହାଙ୍କ ରଚିତ 'ଚିତ୍ରକାବ୍ୟ ବନ୍ଧୋଦୟ'ରେ ସ୍ୱରଚିତ କାବ୍ୟମାନଙ୍କ ବିବରଣୀ ପ୍ରଦାନ ପ୍ରସଙ୍ଗରେ ସର୍ବାଦୌ 'ଚନ୍ଦ୍ରଲେଖା' ଓ 'ହେମ ମଞ୍ଜରୀ' କାବ୍ୟଦ୍ୱୟ ସ୍ମରଣ କରିଛନ୍ତି । ଏହା ପରେ ସେ 'ରସଲେଖା' କାବ୍ୟକୁ ତୃତୀୟ ସ୍ଥାନରେ ସ୍ଥାପିତ କରିଅଛନ୍ତି । 'ଚନ୍ଦ୍ରଲେଖା' ଓ 'ହେମ ମଂଜରୀ' କାବ୍ୟ ଏ ପର୍ଯ୍ୟନ୍ତ ଲୋକଲୋଚନକୁ ଆସିନାହିଁ । ଏଣୁ 'ରସଲେଖା'କୁ କବିଙ୍କ ପ୍ରକାଶିତ ରଚନା ମଧ୍ୟରେ ପ୍ରଥମ କାବ୍ୟ ଭାବେ ଗ୍ରହଣ କରାଯାଇପାରେ । ବାଇଶିଗୋଟି ଛାନ୍ଦରେ ନିବଦ୍ଧ ଓ ୭୬୦ ପଦ ବିଶିଷ୍ଟ ପ୍ରେମାଖ୍ୟାନ ମୂଳକ ଏହି କାବ୍ୟଟି କଥାବସ୍ତୁ ଦୃଷ୍ଟିରୁ ଗତାନୁଗତିକ କୁହାଯାଇପାରେ । କବିଙ୍କ ପ୍ରାଥମିକ ରଚନ ମାନଙ୍କ ମଧ୍ୟରୁ ଅନ୍ୟତମ ହେଲେ ହେଁ ଏହି କାବ୍ୟରେ କବିଙ୍କ କାବ୍ୟ ପ୍ରତିଭାର ବହୁ ବୈଶିଷ୍ଟ୍ୟ ନିହିତ ।

ଏକମାତ୍ର ଏହି କାବ୍ୟରେ ହିଁ କବି କାବ୍ୟର ରଚନା କାଳ ନିର୍ଦ୍ଦେଶ କରିଅଛନ୍ତି । ଉପେନ୍ଦ୍ର ଭଂଜଙ୍କ ଜୀବନ ଓ ସାହିତ୍ୟ ସାଧନାର କାଳ ନିର୍ଣ୍ଣୟ ଦୃଷ୍ଟିରୁ ଏହା ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ । କାବ୍ୟର ଶେଷ ଛାନ୍ଦର ସପ୍ତଦଶ ପଦରେ କବି ଉଲ୍ଲେଖ କରିଛନ୍ତି—

ଦିବ୍ୟସିଂହ ଗଜପତି        ଅଙ୍କ ସପତ ବିଂଶତି
ଶେଷ ଦିନେ ଶେଷ ଏହି ଗୀତ
ଦେଶେ ଦେଶେ ହେଉ ଖ୍ୟାତ        ମୋହି ଏ ରସିକ ଚିତ୍ତ
ହରିହର କରନ୍ତୁ ଏମନ୍ତ ହେ ସାଧୁଜନେ
ଖଳ ଦୂଷଣକୁ ନାହିଁ ଡର
ସରହଂସାରେ ସେ ମହା ତତପର ହେ ।",

ଦିବ୍ୟସିଂହ ଦେବଙ୍କ [ ୧୬୮୮-୧୭୧୬ ] ୨୭ ଅଙ୍କର ଶେଷଦିନ ଖ୍ରୀଷ୍ଟାବ୍ଦ ୧୭୧୦ ଭାଦ୍ରବ ମାସ ଶୁକ୍ଳ ପକ୍ଷ ଏକାଦଶୀ ଦିନ ଭାବେ ନିର୍ଣ୍ଣୀତ ହୋଇଅଛି (୧) । ସମ୍ଭବତଃ କବି ଗଜପତି ହରେକୃଷ୍ଣ ଦେବଙ୍କ [ ୧୭୧୬-୧୭୨୦ ] ସମୟରେ ମଧ୍ୟ ସାହିତ୍ୟ ସାଧନା ରତ ଥିଲେ । ୧୮ଶ ଶତାବ୍ଦୀର ପ୍ରଥମ ପର୍ଯ୍ୟାୟ ଥିଲା ମୋଗଲ ସାମ୍ରାଜ୍ୟର ବିପର୍ଯ୍ୟୟ ଯୁଗ । ମୋଗଲ ରାଜତ୍ୱ କାଳରେ ଓଡ଼ିଶାର ରାଜନୈତିକ ଓ ସାମାଜିକ ଅବସ୍ଥା ଘୋର ବିପର୍ଯ୍ୟସ୍ତ ହୋଇପଡ଼ିଥିଲା । ଦିଲ୍ଲୀରୁ ନିଯୁକ୍ତି ପ୍ରାପ୍ତ ମୋଗଲ ସୁବାଦାରଙ୍କ ଅତ୍ୟାଚାର ଓ ଲୁଣ୍ଠନକୁ ପ୍ରତିରୋଧ କରିବାରେ ଓଡ଼ିଶାର ତତ୍କାଳୀନ ରାଜ୍ୟହୀନ ଗଜପତି ଥିଲେ ଅତ୍ୟନ୍ତ ଅସମର୍ଥ । ଏହି ଲୁଣ୍ଠନରୁ ମଧ୍ୟ ରକ୍ଷା ପାଇପାରିନଥିଲା ଶ୍ରୀ ମନ୍ଦିର । ଏହି ସମୟ ଥିଲା ଓଡ଼ିଶାର ସାମରିକ ତଥା କ୍ଷାତ୍ର ଧର୍ମର ଚରମ ଦୁର୍ଗତିର କାଳ । ଓଡ଼ିଶାର ରାଜା ରାମଚନ୍ଦ୍ର ଦେବ ସୁବାଦାରଙ୍କ ଦ୍ୱାରା ପରାଜିତ ହେବା ଦିନେ ସଙ୍ଗେ ଧର୍ମାନ୍ତରିତ ହୋଇଥିଲେ । ନବାବଙ୍କ ନିର୍ଦ୍ଦେଶକ୍ରମେ ରାଜାଙ୍କ ଉପସ୍ଥିତିରେ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରର ପ୍ରବେଶ ଦ୍ୱାରର କିୟଦଂଶକୁ ଭଙ୍ଗା ଯାଇଥିଲା, ରତ୍ନ ସିଂହାସନକୁ ଅପବିତ୍ର କରାଯାଇଥିଲା, ଜଗନ୍ନାଥଙ୍କ ଏକ କୃତ୍ରିମ ମୂର୍ତ୍ତିକୁ ବିନଷ୍ଟ କରିବା ଲାଗି ନବାବଙ୍କ ନିକଟକୁ ପ୍ରେରଣ କରାଯାଇଥିଲା । ଶ୍ରୀ ମନ୍ଦିରରେ ପୂଜିତ ପ୍ରତିମାମାନଙ୍କୁ ଗୋପନରେ ବିଭିନ୍ନ ସ୍ଥାନରେ ରଖା ଯାଉଥିଲା—ମାଦଳା ପାଞ୍ଜିର ବର୍ଣ୍ଣନାନୁଯାୟୀ 'ପାତାଳି କରାଯାଉଥିଲା । ଓଡ଼ିଶାର ରାଜା ତଥା ଅଧିବାସୀଗଣ ଏପରି ସଙ୍କଟ ତଥା ଅପମାନର ସମ୍ମୁଖୀନ ଇତି ପୂର୍ବରୁ କେବେ ହୋଇଥିବା ଜଣାଯାଏ ନାହିଁ ।

କବି ଉପେନ୍ଦ୍ର ଭଞ୍ଜ ତତ୍କାଳୀନ ରାଜନୈତିକ ବିପର୍ଯ୍ୟୟ ବିଷୟରେ ଅନବହିତ ଥିବା ବିଶ୍ୱାସଯୋଗ୍ୟ ମନେହୁଏ ନାହିଁ । ସେ ଏହି ସମୟରେ ପ୍ରାଚୀନ ପରମ୍ପରା ସମ୍ମତ କାବ୍ୟ ରଚନାରେ ଅଭିନିବିଷ୍ଟ ଥିଲେ । ଏଣୁ ତାହାଙ୍କ କାବ୍ୟରେ ତତ୍କାଳୀନ ଓଡ଼ିଶାର ରାଜନୈତିକ ବିପର୍ଯ୍ୟୟର ଚିତ୍ର ପରିଦୃଷ୍ଟ ନହେବା ସ୍ୱାଭାବିକ । କାରଣ ଜୀବନର ସମସ୍ୟାକୁ ଅଥବା ଜନଚେତନାକୁ ଉପଜୀବ୍ୟ କରି କାବ୍ୟ ରଚନାର ପରମ୍ପରା ସେ ଯୁଗରେ ସୃଷ୍ଟି ହୋଇନଥିଲା । ତଥାପି ସାଧାରଣ ଜନଜୀବନ ପ୍ରତି କବିଙ୍କ ଉଦାର ଦୃଷ୍ଟିଭଙ୍ଗୀ ଓ ସମ୍ବେଦନଶୀଳତା ତାହାଙ୍କ କାବ୍ୟମାନଙ୍କରୁ ବେଶ୍ ଜାଣିହୁଏ (୨) । ଭଂଜୀୟ କାବ୍ୟ ସୃଷ୍ଟିର ଆଭିମୁଖ୍ୟ ମୁଖ୍ୟତ

---

୧) ଖୁର୍ଦ୍ଧା ଇତିହାସ-ପୃ ୧୪୭- -କେଦାରନାଥ ମହାପାତ୍ର

୨) ଏ ସମ୍ପର୍କରେ ଭଂଜ ମୟୂଖରେ ପ୍ରକାଶିତ ଲେଖକଙ୍କ 'ଭଂଜ ସାହିତ୍ୟରେ ସମାଜ ଚିତ୍ର, ପ୍ରବନ୍ଧ ଦ୍ରଷ୍ଟବ୍ୟ ।

ପ୍ରାପ୍ତ ଚେତନା ମଧ୍ୟରେ ହିଁ ସୀମିତ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଅବଶ୍ୟ କେତେକ ପରିମାଣରେ ସେ ପୁରାଣାଶ୍ରୟୀ ଓ ଭକ୍ତି ଭାବନା ସମ୍ବଳିତ କାବ୍ୟ କବିତା ରଚନା କରିଛନ୍ତି । ମାତ୍ର ସୁଧୀବର୍ଗଙ୍କ ଲାଗି ରସ ସୃଷ୍ଟି ହିଁ ଥିଲା ଏହି ସୁମହାନ ରମ୍ୟବାଦୀ ରସିକ କବିଙ୍କ କାବ୍ୟ ରଚନାର ମୁଖ୍ୟ ଉଦ୍ଦେଶ୍ୟ । 'ରସଲେଖା' କାବ୍ୟରୁ ମଧ୍ୟ ତାହା ହିଁ ପ୍ରତିପନ୍ନ ହୋଇଥାଏ ।

ଜନ ମନୋରଞ୍ଜନ ହିଁ କବିଙ୍କ କାବ୍ୟ ରଚନାର ଅଭିପ୍ରାୟ ଥିଲା । ଏଥି-ପାଇଁ ସେ ଏହି କାବ୍ୟରେ ମଧ୍ୟ ବିବିଧ ରସ ସୃଷ୍ଟିରେ ବିଶେଷତଃ ଆଦିରସ ବର୍ଣ୍ଣନରେ ସବିଶେଷ ଅନୁରାଗୀ ଥିବା ଜଣାଯାଏ । 'ସେ ରସକୁ ଆଉ ଛାନ୍ଦେ ପ୍ରକାଶି କରିବି' (୧୪ । ୭୩), 'ଆହୁରି କହିବା ବିଚ୍ଛେଦ ରସ' (୧୮ । ୨୦), 'କହେ ଏ ରସ ଉପଇନ୍ଦ୍ର ଭଂଜ ହରଷେ' (୧୭ । ୨୪), 'ହୋଇଲା ଷୋଡ଼ଶ ଛାନ୍ଦ ଶେଷ—କହେ ଉପଇନ୍ଦ୍ର ଭଂଜ ରସ' ପ୍ରଭୃତି ଏହି କାବ୍ୟରେ ବର୍ଣ୍ଣିତ ସ୍ୱୀକାରୋକ୍ତିରୁ ଏହା ସହଜରେ ଅନୁମେୟ । ବିଶେଷତଃ ବୁଧ ବା ରସଜ୍ଞ ପଣ୍ଡିତଙ୍କର ପରିତୋଷ ବିଧାନ ପାଇଁ କବିଙ୍କର ଏହି ପ୍ରୟାସ । ଏହା ସ୍ୱୀକାର କରି କବି ଲେଖିଥିଲେ—

'ତୋଷ କରାଇବା ବୁଧ ବୃନ୍ଦଙ୍କୁ' (୧୩ । ୧୦), 'ମୋହିତ କରୁ ଏ ରସିକ ଚିତ୍ତ' (୧୦ । ୨୩) 'ରସିକ ଚିତ୍ତର ରସକର ଛାନ୍ଦ' (୧୧ । ୨୨), 'ହୁଅ ଉଲ୍ଲାସ ହେ ରସିକେ ଶୁଣି' (୫ । ୪୧) ।

ତପସ୍ୱୀ କପିଧ୍ୱଜ ଓ ଶୈଳ ରାଜକୁମାରୀଙ୍କ କନ୍ୟା ରସଲେଖା ସହିତ ସୁଧାନିଧି ନଗରୀର ରାଜକୁମାର ବିଶ୍ୱଭୂତିଙ୍କ ପ୍ରଣୟ ଓ ପରିଣୟ ପ୍ରସଙ୍ଗ ହେଉଛି ଏହି କାବ୍ୟର କଥାବସ୍ତୁ । ଏଥିରେ ଦେବୀ ଦୁର୍ଗା, ନାରଦ, କିନ୍ନର, ଯୋଗିନୀ, ରାକ୍ଷସ ପ୍ରଭୃତି ଅଲୌକିକ ଶକ୍ତି ସମ୍ପନ୍ନ ଦୈବୀ ଚରିତ୍ରର ଭୂମିକା ମଧ୍ୟ ବେଶ୍ ତାତ୍ପର୍ଯ୍ୟ ପୂର୍ଣ୍ଣ । ନାୟକ ନାୟିକାଙ୍କ ମିଳନୋତ୍କଣ୍ଠା, ମିଳନ, ବିରହ ଓ ପୁନର୍ମିଳନରେ କାବ୍ୟଟି ସମାପ୍ତ ହୋଇଅଛି । କବି ସଂସ୍କୃତ କାବ୍ୟ ପରଂପରା ଅନୁସରଣରେ ଏଥିରେ ବହୁବିଧ ଶବ୍ଦ ଓ ଅର୍ଥାଲଂକାର ସମାବେଶ କରିବା ସଙ୍ଗେ ସଙ୍ଗେ ବହିଃପ୍ରକୃତିର ସରସ ବର୍ଣ୍ଣନା ମଧ୍ୟ କରିଅଛନ୍ତି । ନାୟକ ନାୟିକାଙ୍କ ମଧ୍ୟରେ ଚିଠାଉ ପ୍ରେରଣ ଓ ମେଘକୁ ଦୂତ ରୂପେ ପ୍ରେରଣର ବ୍ୟବସ୍ଥା କରିଛନ୍ତି । (୧) ମହାନ ଶବ୍ଦ ଶିଳ୍ପୀ ଉପେନ୍ଦ୍ରଙ୍କ ଏହି କାବ୍ୟରେ ଅନୁପ୍ରାସ, ଯମକ, ଅନୁଲୋମ, ଉପମା, ଉତ୍ପ୍ରେକ୍ଷା, ଦୃଷ୍ଟାନ୍ତ ପ୍ରଭୃତି ଅଳଂକାରର ଯୋଜନା କରି

କାବ୍ୟଟିକୁ ସରସ ଓ ସୁନ୍ଦର କରିଅଛନ୍ତି । ଉପମା ପ୍ରୟୋଗରେ ଭଂଜଙ୍କ କୃତିତ୍ୱ ଅବିସମ୍ବାଦିତ। ତାହା ଏହି କାବ୍ୟରୁ ବେଶ୍ ଜାଣିହୁଏ । ଉଦାହରଣ ସ୍ୱରୂପ, ନାସାକୁ କବି କାମରାଜାର ନଜର ନଳି ସହ ଉତ୍ପ୍ରେକ୍ଷା କରି ଲେଖିଛନ୍ତି— 'କାମ ରାଜାର କସେ ନଜର ନଳି ସୁବର୍ଣ୍ଣ ଝଳି (୧୫ । ୧୪) । ଅନ୍ୟ ଏକ ଦୃଷ୍ଟାନ୍ତ ହେଉଛି—'ରଙ୍କ ରତନ ହରାଇ ପୁନଃ ପାଇଲା ପରିତୁଷ୍ଟ' (୧୫ । ୩୯) 'ପ୍ରେମ ସୁଧାନିଧି' କାବ୍ୟରେ ଏହାର ପ୍ରତିଧ୍ୱନି ହେଉଛି—'ଦରିଦ୍ର ରତନ ପାଇ ହରାଇଲା ପରି ।'

ଅନ୍ୟ ଏକ ଉଲ୍ଲେଖ ଯୋଗ୍ୟ ବିଷୟ ହେଉଛି କବି ଏହି କାବ୍ୟକୁ ଗୀତ ନାମରେହିଁ ଅଭିହିତ କରିଅଛନ୍ତି । ଅତୀତରେ କାବ୍ୟ ଛାନ୍ଦଗୀତ ବା ଗୀତ ନାମରେହିଁ ଅଭିହିତ ହେଉଥିବା ଏଥିରୁ ସୂଚିତ ହୁଏ । 'ଭାବି ଉପେନ୍ଦ୍ର କହେ ଏ ଗୀତ' (୧୮ । ୨୦), 'ଏହୁ ଗୀତ ଦ୍ୱାବିଂଶତି ଛାନ୍ଦ' (୨୨ । ୧୯), 'କହଇ ଉପେନ୍ଦ୍ର ଭଂଜ ଏ ଗୀତ' (୧୨ । ୨୬), 'ଭାବି ତାଙ୍କୁ ଉପେନ୍ଦ୍ର ଭଂଜ କବି ଗୀତ' (୧୦ । ୬୩) 'ନୀଳକଣ୍ଠ ନୃପ ସୁତ ଭାବି ହରିହର—ମାନସ ବଳାଇ କରିବାକୁ ଗୀତ ସାର' (୧ । ୭) ପ୍ରଭୃତି ଉକ୍ତିରୁ ଏହା ପ୍ରମାଣିତ ହୁଏ । ଗୀତ ହେବା ଉଦ୍ଦେଶ୍ୟରେହିଁ କବି ଏହି କାବ୍ୟର ୨୨ ଗୋଟି ଛାନ୍ଦକୁ ୨୨ ଗୋଟି ବିଭିନ୍ନ ଛାନ୍ଦ ବୃତ୍ତରେ ରଚନା କରିଅଛନ୍ତି । ସେହି ବୃତ୍ତଗୁଡ଼ିକ ହେଉଛି ନଳିନୀ ଗୌଡ଼ା, କଳହଂସ କେଦାର, ମୁନିବର ବାଣୀ, ରାମ କେରି, ଚକ୍ରକେଳି, ମଙ୍ଗଳଗୁର୍ଜ୍ଜରୀ (ସଙ୍ଗମ ଢଆଁର ବାଣୀ), ନଟବାଣୀ, କଳସା, ଘଣ୍ଟାରବ, ବସନ୍ତ, ବଙ୍ଗଳାଶ୍ରୀ, ବସନ୍ତ ବରାଡ଼ି, ରସକୂଲ୍ୟା, ମଙ୍ଗଳ ଗୁର୍ଜ୍ଜରୀ, କାଳୀ, ଚନ୍ଦ୍ରା ଭୈରବ, କୌଶିକ, ଆଷାଢ଼ ଶୁକ୍ଳ ବାଣୀ, କାମୋଦୀ (ହଂସ ଦୂତ ବାଣୀ), ଶଙ୍କରା ଭରଣ, କୌଶିକ (ହରି ଚଉତିଶା ବାଣୀ ଓ ବରାଡ଼ି ।

ଏହି କାବ୍ୟ ରଚନା କଲା ବେଳକୁ କବି ବହୁ ଶାସ୍ତ୍ର ନିପୁଣ, ଅଭିଜ୍ଞ ଆତ୍ମ ବିଶ୍ୱାସ ସମ୍ପନ୍ନ ହୋଇଥିବା ଜଣାଯାଏ । ଜୀବନ ଉପଲବ୍ଧିର ଗମ୍ଭୀର ସତ୍ୟ ଓ ବହୁ ସୁଭାଷିତ ତାହାଙ୍କର ଏହି କ୍ଷୁଦ୍ର କାବ୍ୟଟିରେ ଅଭିବ୍ୟକ୍ତି ଲାଭ କରିଅଛି । କଳ୍ପନା ବିଳାସ ବ୍ୟତୀତ ଏହି ସଦୁକ୍ତି ସମ୍ଭାର କାବ୍ୟର ମହତ୍ତ୍ୱ ସୂଚକ ଉପାଦାନ ଭାବେ ଗ୍ରହଣୀୟ । ସେଥିରୁ କେତୋଟି ହେଉଛି—

୧ ଯାଚକ ମାଗିବା ଯାଏ
ଯେଉଁ ନ ଯେଉଁଲେ

ଯାହାର ଗୁରୁତା ଥାଏ
ଦାତାର ଆୟତ୍ତି
ତହିଁକି କେଉଁ ଉପାୟେ । (୯ । ୯)

୨)   ସ୍ୱାଦୁ ତ ପ୍ରୀତରୁ ନାହିଁ                    ମୁଁ ବଶ ହୋଇଛୁ ତହିଁ
      ଅନଳ ପତଙ୍ଗ ପ୍ରାୟେ                    ହେଲେ ହେବ
                                              ତହିଁକି ଶୋଚନା ନାହିଁ । (୯ । ୧୪)

୩)   ବାଞ୍ଛା ସିଦ୍ଧି ହେଲ ଠାରେ ରହ ରହ ନୋହୁ । (୧୪ । ୨)

୪)   ଯେ ଯାହାର ପଦାର୍ଥ ତାହାର ତାକୁ ବ୍ୟଥା
      ଚଣ୍ଡକର ମ୍ଳାନ କରେ ପଦ୍ମ ମା ସର୍ବଥା । (୧୪ । ୧୭)

୫)   ଶ କର ହୁଅଇ ଭକ୍ତ ପୁରାତନ ହେଲେ
      କେ ସମାନ ଅଛୁ ଆଉ ନୂଆଁ ପ୍ରୀତ ଭୁଲେ (୧୪ । ୪)

୬)   ପୀରତରୁ କରତ ସଂସାରେ ନାହିଁ ଆଉ (୧୪ । ୨୨)

୭)   ଉଜ୍ଜ୍ୱଳ କରଇ ନଶାକୁ ଚନ୍ଦ୍ରମା
                        ଚନ୍ଦ୍ରମାକୁ ନଶା ଯେମନ୍ତ
      ରସିକା ନାୟିକା ରସିକ ଯେପରି
                              ରସିକା ରସିକେ ତେମନ୍ତ । (୧୭ । ୧୪)

୮)   ପ୍ରୀତ ବତ୍ସଳା ହୋଇ ନବ ଅବଳା
                              ମିଳଇ ପରମ ଭାଗ୍ୟରେ
      ସୁନା ବଡ଼ ଦ୍ରବ୍ୟ ହେଲେ ସେ ଉଜ୍ଜ୍ୱଳ
                              ଯେମନ୍ତ ରସାଣ ଯୋଗରେ । (୧୭ । ୧୧)

୯)   ସୁନ୍ଦରେ ଗୁଣ ଗୁଣବନ୍ତେ ସୁନ୍ଦର
                              ପଣଥିବା ଅତ ଦୁର୍ଲଭ (୧୭ । ୧୨)

୧୦)  ଏହା ଲେଖି ଦେଇ ଗଲା ଖଣ୍ଡ ଅକ୍ଷରେ
      ଅଣୁ ର ନପାଏ କାର୍ଯ୍ୟ କେଉଁ କାଳରେ (୭ । ୪୦)

ଏହି କାବ୍ୟଟି ପ୍ରଣୟ-ପ୍ରଧାନ ହେଲେ ହେଁ ଏହାର ଅନ୍ୟତମ ଉଲ୍ଲେଖ-ଯୋଗ୍ୟ ବୈଶିଷ୍ଟ୍ୟ ହେଉଛି ଏଥିରେ ପ୍ରତଫଳିତ କବିଙ୍କ ଦୃଢ ଭଗବତ ବଶ୍ୱାସ ଓ ନଷ୍ଠା । କାବ୍ୟର ପ୍ରାରମ୍ଭ ୭ଟି ପଦ ଓ ବାଇଶ ଗୋଟି ଛାନ୍ଦର ଭଣିତାରୁ ଏହା ସହଜରେ ଜଣାଯାଏ । ତରୁଣ ବୟସରେ କବି ଶିବ ଓ ବିଷ୍ଣୁ (ହରିହର) ଙ୍କ ଭକ୍ତ ଥିବା ଏଥିରୁ ସୁପ୍ରମାଣିତ । ଶ୍ରୀ ଜଗନ୍ନାଥଙ୍କୁ ସେ ବିଷ୍ଣୁ ରୂପରେ ତଥା ଶ୍ରୀରାମଙ୍କୁ ବିଷ୍ଣୁଙ୍କ ଅବତାର ଭାବେ ଗ୍ରହଣ କରି ସେମାନଙ୍କ ଉଦ୍ଦେଶ୍ୟରେ ଆପଣାର ପ୍ରଣତ ନବେଦନ କରିଅଛନ୍ତି । ଯଥା —

[କ] ନୀଳଗିରି କେ ଲାସ ଯା ବିହାର ସ୍ଥାନ (୮ । ୧୫)
[ଖ] ଆହେ ଜଗନ୍ନାଥ ବିଶ୍ୱନାଥ ହରିହର
କମଳାକ୍ଷ ବିରୂପାକ୍ଷ କରୁଣା ସାଗର । (୨୦ । ୨୦)

କବି ପୁରାଣ ଶାସ୍ତ୍ରରେ ସୁପ୍ରକାଶ ଥିବା ମଧ୍ୟ ଏହି ସବୁ ଭଣିତାରୁ ଜଣାଯାଏ । ଉପାସ୍ୟ ଏହି ଦୁଇ ଦେବତାଙ୍କ ରୂପ ଗୁଣର ବର୍ଣ୍ଣନା ସହ ଏଥିରେ କବିଙ୍କ ଆଶା-ଆକାଂକ୍ଷା, ଆତ୍ମନିଷ୍ଠତାର ପ୍ରତିଫଳନ ମଧ୍ୟ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ, କବି ହରିହରଙ୍କୁ ସ୍ମରଣ କରି ତାହାଙ୍କ ଅନୁଗ୍ରହରୁ ଉତ୍ତମ କାବ୍ୟ [ଗୀତ ସାର] ରଚନା କରିବାକୁ ଅଭିଳାଷୀ ହୋଇଛନ୍ତି—

'ନୀଳକଣ୍ଠ ନୃପ ସୁତ ଭବ ହରିହର
ମାନସ ବଳାଇ କରିବାକୁ ଗୀତ ସାର' (୧ । ୬)

ପୁନଶ୍ଚ କବି ଆପଣାର 'ସନ୍ତାପ ଛେଦ' ବା ଦୁଃଖ ଦୂର କରିବାକୁ ଉପାସ୍ୟ ଦେବତାଙ୍କୁ ନିବେଦନ କରି ଲେଖିଛନ୍ତି—

'ଶିକ୍ଷା ଗରୁଡ଼ଧ୍ୱଜ ବଲ୍ଲଭ ମୁକ୍ତି ଭୁକ୍ତିଦ
ଉପେନ୍ଦ୍ର ଭଂଜ ମନୁ ସନ୍ତାପ ଛେଦ ।' (୬ । ୪୩)

ଆପଣାର 'ଅର୍ଜିତ ଦୁଃଖ' ସମୂହ ଦୂର କରିବା ଲାଗି କବି ପ୍ରାର୍ଥନା କରି ଲେଖିଛନ୍ତି—

'ମଖ ରକ୍ଷଣ ମଖ ଧ୍ୱଂସନ ହେ ଶିବ ଜନାର୍ଦ୍ଦନ
ବିନାଶ କର ଉପେନ୍ଦ୍ରର ଅର୍ଜିତ ଦୁଃଖମାନ ।' (୧୫ । ୪୨)

ଏହି ସମସ୍ତକୁ କବିଙ୍କର 'ଅର୍ଜିତ ଦୁଃଖ' ଠିକ୍ କରୁଥିଲା ଏହା ଅନୁମାନ କରିବା ସହଜ ନୁହେଁ । ଏହା କ'ଣ କବିଙ୍କର ରାଜ ପଦ ପ୍ରାପ୍ତିରୁ ବଞ୍ଚିତ ହେବା ବା ପତ୍ନୀ ବିୟୋଗ ? କବି ପ୍ରତ୍ୟହ ଏଇ ଦୁଇ ଦେବତାଙ୍କୁ ଉପାସନା କରୁଥିବା ବିଷୟ ମଧ୍ୟ ଏକ ଭଣିତାରୁ ଜଣାଯାଇଥାଏ—

ରଜତ ହରିତାମ୍ବରେ କର କମଳ ଶ୍ରୀକରେ
ଉପେନ୍ଦ୍ର ଭଂଜ ନୀତି ଓଳଗଇ
ସେ ବେନି ଦେବ ପଦ୍ମରେ (୯ । ୩୦)

ଜନ ସାଧାରଣ ମଧ୍ୟ ଏଇ ଦୁଇ ଦେବତାଙ୍କୁ ଧ୍ୟାନ (ଚିନ୍ତା) କରନ୍ତୁ ବୋଲି କବି ଅନୁରୋଧ କରିଛନ୍ତି ।

ରମାପତି, ଉମା ମହେଶ୍ୱର
ଭବ ଭଂଜ ଉପେନ୍ଦ୍ର ରଚନା କଲା ଏ ଛାନ୍ଦ
ତୁମ୍ଭେମାନେ ମନେ ଚିନ୍ତା କରହେ । (୨୨ । ୧୯)

ପରିଶେଷରେ କବିଙ୍କର ପ୍ରାର୍ଥନା ଥିଲା—'ତାହାଙ୍କ ଗୀତ ଦେଶେ ଦେଶେ ହେଉ ଖ୍ୟାତ/ମୋହନ୍ତୁ ଏ ରସିକ ଚିତ୍ତ/ହରିହର କରନ୍ତୁ ଏମନ୍ତ' (୨୨ । ୧୭) କବିଙ୍କର ଏଇ ଅଭିଳାଷ ଯେ ସାର୍ଥକ ହୋଇଛି ଏହା କହିବା ଅନାବଶ୍ୟକ । କବିଙ୍କ ବିଶିଷ୍ଟ କୃତ ବା 'ସିଦ୍ଧି' ବୈଦେହୀଶ ବିଳାସ, ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମ ସୁଧାନିଧି, ରସିକ ହାରାବଳୀ, ସୁଭଦ୍ରା ପରିଣୟ ଭଳି 'ରସଲେଖା' ଦେଶେ ଦେଶେ ସୁଖ୍ୟାତ ଅର୍ଜନ କରି ପାରି ନଥିଲେ ହେଁ ଏହା ଯେ ଭଂଜାୟ କାବ୍ୟ ମୁକୁଟର ଅନ୍ୟତମ ପ୍ରଦୀପ୍ତ ଦୀପଶିଖା ଏ ବିଷୟରେ ସନ୍ଦେହର ଅବକାଶ ନାହିଁ ।



'ଗୀତିକା'
ଜୟଦେବ ନଗର
ଭୁବନେଶ୍ୱର-୨

# ଦୂତକାବ୍ୟ ପରମ୍ପରାରେ ରସଲେଖା

॥ ଅଧ୍ୟାପକ ପ୍ରଫୁଲ୍ଲ କୁମାର ପାଇକରାୟ ॥

ପୃଥିବୀ କ୍ରମଶଃ କ୍ଷୁଦ୍ରରୁ କ୍ଷୁଦ୍ରତର ହେବାରେ ଲଗିଛି । ଗମନା ଗମନ ଓ ବେତାର ଯନ୍ତ୍ର ତଥା ବୈଜ୍ଞାନିକର ନୂତନ ନୂତନ ଉଦ୍ଭାବନ ମଣିଷକୁ ଅଶେଷ ସୁଖ ସୁବିଧା ପ୍ରଦାନ କରି ପୃଥିବୀ ପୃଷ୍ଠ ଦୂରତ୍ୱର ଆଶାତୀତ ହ୍ରାସ ଘଟାଇଅଛି । ମାତ୍ର ପୂର୍ବେ ଏସବୁ ସୁବିଧା ସୁଯୋଗ ନଥିବା ହେତୁ ଜଣେ ଦୂରରେ ଥିବା ଅନ୍ୟ ଜଣକ ସହ ସାକ୍ଷାତ କରିବା, କିମ୍ବା ତା ପାଖକୁ ସମ୍ବାଦ ପ୍ରେରଣ କରିବା ଅତ୍ୟନ୍ତ କଠିନ ତଥା ସମୟ ସାପେକ୍ଷ ହେଉଥିଲା । ସେ ସମୟରେ ଅବସ୍ଥା ସମ୍ପନ୍ନ ବ୍ୟକ୍ତିମାନେ ଏ ସବୁ କାର୍ଯ୍ୟରେ ବିଭିନ୍ନ ଦୂତମାନଙ୍କୁ ନିୟୋଜିତ କରୁଥିଲେ ।

ମନୁଷ୍ୟର ତିନିଗୋଟି ମୁଖ୍ୟ ଅବସ୍ଥା ରହିଅଛି । ତାହା ହେଲା ଚେତନ, ଅଚେତନ ଓ ଅବଚେତନ ଅବସ୍ଥା । ଅବଚେତନ ଅବସ୍ଥା ସୀମାତୀତ ଦୁଃଖ କିମ୍ବା ସୁଖ ସମୟରେ ଘଟିଥାଏ । ଏଇ ଅବସ୍ଥାରେ ମନୁଷ୍ୟ ତାର ସାଧାରଣ ମାନସିକ ଭାରସାମ୍ୟ ହରାଇ ଏକ ଅସ୍ୱାଭାବିକ ଅବସ୍ଥାରେ ପହଞ୍ଚିଥାଏ । ଅସହ୍ୟ ଦୁଃଖ ମନୋବେଦନାର ପରିପ୍ରକାଶ ପାଇଁ ସେ ଏକ ମାଧ୍ୟମ ଖୋଜେ । ଆବେଗାତିଶଯ୍ୟ ହେତୁ, ବାହ୍ୟଜ୍ଞାନ ହରାଇ ତାର ଅଲକ୍ଷ୍ୟରେ କେତେକ ବିଲକ୍ଷଣ କାର୍ଯ୍ୟ କରି ପକାଏ । ସେତେବେଳେ ତାର ଦୃଷ୍ଟି ସମକ୍ଷରେ ଯେ କୌଣସି ପ୍ରାଣୀ ବା ବସ୍ତୁ ପଡ଼ିଲେ ତାକୁ ସମ୍ବାଦ ବାହକ ମନେ କରି ତା' ନିକଟରେ ଅଯାଚିତଭାବେ ତାର ମର୍ମ ବେଦନାର ପରିପ୍ରକାଶ କରେ । ଏଇ ହେଉଛି ବିଖ୍ୟାତ ଦୂତ କାବ୍ୟର ହେତୁ । ଏପରି ଏକ ସନ୍ଧିକ୍ଷଣ ମୁହୂର୍ତ୍ତରେ କାଳିଦାସଙ୍କ ଯକ୍ଷ ତାର ପ୍ରିୟପତ୍ନୀ ନିକଟକୁ ମେଘ ହସ୍ତରେ ଖବର ପଠାଇଛି । ଭାରତ ବର୍ଷର ଅଗଣିତ କବି ଅନୁରୂପ ପରିବେଶରେ ଦୂତକାବ୍ୟ ମାନ ରଚନା କରି ପ୍ରସିଦ୍ଧି ଅର୍ଜନ କରିଅଛନ୍ତି ।

ରାମାୟଣରେ ରାମ ହନୁମାନଙ୍କୁ ସୀତା ଠାବ କରିବାକୁ ଅଙ୍ଗଦକୁ ରାବଣ ପାଖକୁ, ରାବଣ ଶୁକସାରଣଙ୍କୁ ରାମଙ୍କ ଶିବିରକୁ ଗୁପ୍ତ ଦୂତଭାବେ ପଠାଇବା,

ମହାଭାରତରେ କୃଷ୍ଣ ପଞ୍ଚପାଣ୍ଡବଙ୍କ ଦୂତଭାବେ ଦୁର୍ଯ୍ୟୋଧନଙ୍କ ନିକଟକୁ ଯିବା, ଭାଗବତରେ ରୁକ୍ମିଣୀ ଜନୈକ ବ୍ରାହ୍ମଣଙ୍କୁ ଦୂତଭାବେ କୃଷ୍ଣଙ୍କ ନିକଟକୁ ପଠାଇବା କିମ୍ବା ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ଗୋପାଙ୍ଗନାଙ୍କ ନିକଟକୁ ପଠାଇବା ଏହାର ଏକ ଏକ ନିଦର୍ଶନ ।

କ୍ରମେ ସାହିତ୍ୟ କ୍ଷେତ୍ରରେ ଏଗୁଡ଼ିକର ସଦୁପଯୋଗ କରାଯାଇ ବହୁ ମାନବେତର ବିଭାଗକୁ ସଂପ୍ରସାରିତ ହେଲା । କୃଷ୍ଣ ଉଦ୍ଧବଙ୍କ ପରି ମନୁଷ୍ୟ ହଂସ ଶୁକ କୋକିଳ ଚକ୍ରବାକ ପ୍ରଭୃତି ପକ୍ଷୀ, ଚନ୍ଦ୍ର ବାୟୁ ପରି ଅଚେତନ ପଦାର୍ଥ ଓ ମନ ସଦୃଶ ଅମୂର୍ତ୍ତି ବିଷୟମାନଙ୍କୁ ଦୂତ ଭାବେ ବିନିଯୋଗ କରି କାବ୍ୟାଦିର ନାୟକ ନାୟିକାମାନେ ପରସ୍ପର ନିକଟକୁ ସନ୍ଦେଶ ପ୍ରେରଣ କରି ଅଛନ୍ତି ।

ମହର୍ଷି ବାଲ୍ମୀକି ପ୍ରଣୀତ ରାମାୟଣ ବିଭିନ୍ନ କାବ୍ୟିକ ବିଭବର ମୂଳସ୍ରୋତ କହିଲେ ଅତ୍ୟୁକ୍ତି ହେବନାହିଁ ଦୂତ କାବ୍ୟର ମୌଳିକ ଉତ୍ସ ମଧ୍ୟ ସେହି ମହାକାବ୍ୟ ମଧ୍ୟରେ ଉପଲବ୍ଧ ହୁଏ । ରାବଣ ଦ୍ୱାରା ଅପହୃତା ସୀତା ଗଭୀର ଦୁଃଖରେ ଜନସ୍ଥାନ ନିବାସୀ ପୁଷ୍ପିତ କର୍ଣ୍ଣିକାର, ବହୁ ଶୃଙ୍ଗ ବିଶିଷ୍ଟ ଓ ନିର୍ଝରିଣୀ ପୂର୍ଣ୍ଣ ମାଲ୍ୟବନ୍ତ ଗିରି, ହଂସ ସାରସ ସେବିତ ଗୋଦାବରୀ ନଦୀ, ଅରଣ୍ୟବାସୀ ମୃଗ ଓ ପକ୍ଷୀ ପ୍ରଭୃତିଙ୍କୁ ନମସ୍କାର ଜଣାଇ ରାବଣର 'ସୀତା ହରଣ' କଥା ରାମଙ୍କୁ କହିବାକୁ ସନିର୍ବନ୍ଧ ଅନୁରୋଧ କରିଛନ୍ତି । "ଆମନ୍ତ୍ରୟେ ଜନସ୍ଥାନେ କର୍ଣ୍ଣିକାରାନ୍ ସୁପୁଷ୍ପିତାନ୍ କ୍ଷିପ୍ରଂ ରାମାୟଶଂସଧ୍ୱଂ ସୀତାଂ ହରତି ରାବଣଃ ମାଲ୍ୟବନ୍ତଂ ଶିଖରିଣଂ ବନ୍ଦେ ପ୍ରସ୍ରବଣ ଗିରିମ୍ କ୍ଷିପ୍ରଂ ରାମାୟ ଶଂସଧ୍ୱଂ ସୀତାଂ ହରତି ରାବଣଃ ।

× × ×

ସର୍ବାଣି ଶରଣଂ ଯାମି
ମୃଗ ପକ୍ଷିଗଣାନପି
ହ୍ରିୟମାଣାଂ ପ୍ରିୟାଂଭର୍ତ୍ତୁଃ
ପ୍ରାଣେଭ୍ୟୋଽପି ଗରୀୟସୀମ
(ଅରଣ୍ୟ ୪୯ । ୩୦,୩୧,୩୫)

ଅନୁରୂପ ଭାବେ ସୀତା ବିରହ ବିଧୁର ରାମ ଦୁଃଖାତିରେକ ହେତୁ କଦମ୍ବ, ବିଲ୍ୱ, ଅଶୋକ, ତାଳ, ଜାମ୍ବୁ, କର୍ଣ୍ଣିକାର ପ୍ରଭୃତି ବୃକ୍ଷମାନଙ୍କୁ ଅନୁରୋଧ କରି ସୀତାଙ୍କ ଖବର ପଚାରିଥିଲେ "ଅପିକଚ୍ଚିତ୍ୱୟା ଦୃଷ୍ଟା ସାକଦମ୍ବ ପ୍ରିୟା ପ୍ରିୟା କଦମ୍ବ ପଦ

ଜାନକ୍ଷେ ଶଂସ ସୀତାଂ ଶୁଭାନନାମ୍ ସ୍ନିଗ୍ଧ ପଲ୍ଲବ ସଙ୍କାଶା ପୀତ କୌଶେୟ୍ୟ ବାସିନୀ ଶଂସସ୍ୱ ଯଦ୍ଵ ବା ଦୃଷ୍ଟା ବଲ୍ୱ ବଲ୍ଲୋପ ମସ୍ତନ (ଅରଣ୍ୟ ୬୦ । ୧୨,୧୩)

ରାମ କେବଳ ବୃକ୍ଷ ମାନଙ୍କୁ ପଚାରି ନାହାନ୍ତି ମୃଗ ଗଜ ବ୍ୟାଘ୍ର ପ୍ରଭୃତି ପଶୁମାନଙ୍କୁ ସୀତା ସନ୍ଦେଶ ଅତ୍ୟନ୍ତ ବ୍ୟାକୁଳ ଭାବରେ ପଚାରିଛନ୍ତି । (ଅରଣ୍ୟ ୬୦ । ୨୩-୨୫) ଆଦିତ୍ୟ ଓ ବାୟୁଙ୍କୁ ମଧ୍ୟ ରାମ ସୀତାଙ୍କ ସନ୍ଦେଶ ପଚାରି ଅଛନ୍ତି ।

ଆଦିତ୍ୟ ଭୋ ଲୋକ କୃତା କୃତଜ୍ଞ ଲୋକସ୍ୟ ସତ୍ୟାନୃତ କର୍ମ ସାକ୍ଷିନ୍
ମମ ପ୍ରିୟା ସା କ୍ୱଗତା ହୃତା ବା ଶଂସସ୍ୱ ମେ ଶୋକ ବଶସ୍ୟ ନିତ୍ୟମ୍
(ଅରଣ୍ୟ ୬୩ । ୧୬)

ପ୍ରସ୍ରବଣ ଯୁକ୍ତ ପର୍ବତକୁ ରାମ ସମ୍ବୋଧନ କରି କହିଲେ ହେ ପର୍ବତ ଶ୍ରେଷ୍ଠ ! ତୁମେ କଣ ସେହି ସର୍ବାଙ୍ଗସୁନ୍ଦରୀ ମୋ ଦ୍ୱାରା ବିରହିତା ରମଣୀକୁ ବନ ପ୍ରଦେଶରେ ଦେଖି ଅଛ କି ?

ଉବାଚ ରାମୋ ଧର୍ମାତ୍ମା ଗିରିଂ ପ୍ରସ୍ରବଣା କୁଲମ୍

କଚ୍ଚିତ୍ କ୍ଷିତିଭୃତାଂ ନାଥ ଦୃଷ୍ଟା ସର୍ବାଙ୍ଗ ସୁନ୍ଦରୀ (ଅରଣ୍ୟ ୬୪ । ୨୯)
ଏହିପରି ଭାବରେ ରାମ ଚୂତ, ନୀପ, ମହାଶାଳ, ପନସ, କୁରୁବକ, ଦାଡ଼ିମ୍ବ, ଅର୍ଜନ ବକୁଳ, ପୁନ୍ନାଗ, ଚମ୍ପକ ଓ କେତକୀ ବୃକ୍ଷ ନିକଟକୁ ଯାଇ ସେମାନଙ୍କୁ ସୀତାଙ୍କ ସନ୍ଦେଶ ପଚାରି ପଚାରି ଭ୍ରାନ୍ତ ଏବଂ ଉନ୍ମତ୍ତ ପରି ବିଚରଣ କରିବାକୁ ଲାଗିଲେ "ପୃଚ୍ଛନ୍ନ ରାମୋ ବନେ ଭ୍ରାନ୍ତ ଉନ୍ମତ୍ତଇବ ଲକ୍ଷ୍ୟତେ"

(ଅରଣ୍ୟ ୬୦ । ୨୨)

ଅଧ୍ୟାତ୍ମ ରାମାୟଣରେ ମଧ୍ୟ କୁହାଯାଇଛି ରାମ ସୀତା ବିଚ୍ଛେଦ ଦୁଃଖରେ ଅଭିଭୂତ ହୋଇ କହିଲେ ହେ ମୃଗଗଣ, ପକ୍ଷୀଗଣ ତରୁ ସକଳ, ମୋର ପ୍ରାଣପ୍ରିୟା ସୀତାଙ୍କୁ ମୋତେ ଦେଖାଇଦିଅ ।

"ମୃଗାଶ୍ଚ ପକ୍ଷିଣୋ ବୃକ୍ଷା ଦର୍ଶୟନ୍ତୁ ମମପ୍ରିୟାମ୍ (ଅରଣ୍ୟ ୮ । ୧୮)

ରାମ କହିଲେ ହେ ଚନ୍ଦ୍ର ! ତୁମେ ତୁମର କିରଣ ଦ୍ୱାରା ଜାନକୀଙ୍କୁ ସ୍ପର୍ଶ କରି ପରେ ସେହି ଶୀତଳ କିରଣ ଦ୍ୱାରା ମୋତେ ସ୍ପର୍ଶ କର ।

"ଚନ୍ଦ୍ର ତ୍ୱଂ ଜାନକୀଂ ସ୍ପୃଷ୍ଟା କରୈର୍ମାଂ ସ୍ପୃଶ ଶୀତଳୈଃ (ଅଧ୍ୟାତ୍ମ, କିଷ୍କିନ୍ଧା ୫ । ୬)

ଲୋକପ୍ରିୟ 'ମହାନାଟକ'ରେ ଠିକ୍ ସେହି ପରିବେଶରେ ରାମ ଗୋଦାବରୀ ନଦୀ, ସର୍ପ ପ୍ରଭୃତିଙ୍କୁ ସମ୍ବୋଧନ କରି ସୀତାଙ୍କ ବିଷୟରେ ପ୍ରଶ୍ନ ପଚାରି ପରେ ବନରେ ଥିବା ବିବିଧ ପୁଷ୍ପିତ ବୃକ୍ଷମାନଙ୍କୁ ନିଜର ପରିଚୟ ପ୍ରଦାନ କରି ନିରୁଦ୍ଦିଷ୍ଟା ଜାନକୀଙ୍କ ଖବର ପଚାରିଛନ୍ତି ।

"ଭୋ ବୃକ୍ଷାଃ ପର୍ବତସ୍ଥା ବିହୁ କୁସୁମ ଯୁତା ବାୟୁନା ଘୂର୍ଣ୍ଣ୍ୟ ମାନାଃ
ରାମୋଽହଂ ବ୍ୟାକୁଳାତ୍ମା ଦଶରଥ ତନୟଃ ଶୋକ ସନ୍ତାପେଣ ଦଗ୍ଧଃ
ବିମ୍ବୋଷ୍ଠୀ ଚାରୁନେତ୍ରା ସୁବିପୁଳ ଜଘନା ଦୀର୍ଘକେଶୀ ସୁମଧ୍ୟା
ହା ସୀତା କେନନୀତା ମମହୃଦୟଗତା କୋ ଭବାନ୍‌କେନ ଦୃଷ୍ଟା"
(ମହା ନାଟକ ୪/୧୪)

ଉକ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ସଂସ୍କୃତ ଦୂତକାବ୍ୟ ମାନଙ୍କର ଆବିର୍ଭାବ ଆଦୌ ଆକସ୍ମିକ ନୁହେଁ । ପୂର୍ବରୁ ଏହାର ଦୃଢ଼ଭିତ୍ତି ଓ ପରମ୍ପରା ରହିଥିଲା । ସାରା ସଂସାରରେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିବା କାଳିଦାସଙ୍କ ବିଖ୍ୟାତ ଖଣ୍ଡକାବ୍ୟ 'ମେଘଦୂତ'ରେ ବିରହୀର ମର୍ମବେଦନା ଯେପରି ଜୀବନ୍ତ ଓ ବାସ୍ତବଭାବେ ବର୍ଣ୍ଣିତ ହୋଇଛି ବିଶ୍ୱରେ ତାର ପଟାନ୍ତର ମିଳିବା କଷ୍ଟକର । ଏହାର ଅସାଧାରଣ ଲୋକପ୍ରିୟତା ହେତୁ ପରେ ପରେ ଭାରତ ଓ ଭାରତ ବାହାରେ ମେଘଦୂତର ଅନୁକରଣରେ ଅନେକ ଦୂତ କାବ୍ୟ ରଚିତ ହୋଇଅଛି । ପରେ ମେଘଦୂତ ଅବଲମ୍ବନରେ ଦୁଇଗୋଟି ଦୂତକାବ୍ୟ ଲିଖିତ ହୋଇଅଛି । ମେଘପ୍ରତି ସନ୍ଦେଶ କାବ୍ୟରେ ଯକ୍ଷ ପତ୍ନୀ ତାର ପ୍ରିୟତମ ପାଖକୁ ମେଘ ହସ୍ତରେ ପ୍ରତି ସନ୍ଦେଶ ପଠାଇଅଛି । ଦ୍ୱିତୀୟ କାବ୍ୟ 'ମେଘ ଦୌତ୍ୟ' କାବ୍ୟରେ ଯକ୍ଷ ପତ୍ନୀ କୁବେରଙ୍କ ପାଖକୁ ନିଜର ବିଜ୍ଞପ୍ତି ଜଣାଇ ପ୍ରିୟତମଙ୍କୁ ମୁକ୍ତ କରାଇ ଅଛନ୍ତି । ନିଜର ଧର୍ମ ସିଦ୍ଧାନ୍ତମାନ ପ୍ରଚାର କରିବା ପାଇଁ ଜୈନ ଓ ବୈଷ୍ଣବ କବିମାନେ ମଧ୍ୟ ଦୂତ କାବ୍ୟର ଆଶ୍ରୟ ଗ୍ରହଣ କରିଛନ୍ତି ।

ଅଷ୍ଟମ ଶତାବ୍ଦୀରେ ଜୈନ କବି ଜିନସେନ 'ପାର୍ଶ୍ୱାଭ୍ୟୁଦୟ' ନାମକ ବିଖ୍ୟାତ କାବ୍ୟରେ ମେଘଦୂତର ପ୍ରତ୍ୟେକ ପଂକ୍ତିକୁ ନେଇ ତାହାକୁ ନିଜ ଧର୍ମ ମତ ସହ ସଂପକ୍ତ କରି ନୂତନ ଅର୍ଥ ପରିପ୍ରକାଶ କରାଇ ଅଛନ୍ତି । ଅନ୍ୟ କେତେକ ଜୈନ କବି ନିଜ ନିଜର ଆଚାର୍ଯ୍ୟମାନଙ୍କ ନିକଟକୁ ସ୍ୱସ୍ୱ ଇତିବୃତ୍ତ ବିଷୟକ ପତ୍ରମାନ ଦୂତ କାବ୍ୟ ମାଧ୍ୟମରେ ପ୍ରେରଣ କରି ଅଛନ୍ତି ।

ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ଜମ୍ବୁ କବିଙ୍କ ଦ୍ୱାରା 'ଚନ୍ଦ୍ରଦୂତ' ନାମକ ଦୂତକାବ୍ୟ ରଚିତ ହୋଇଥିଲା । ଏଥିରେ ନାୟିକା ନିଜର ପ୍ରାଣ ପ୍ରିୟଙ୍କ ନିକଟକୁ

ଚନ୍ଦ୍ରଙ୍କ ଜରିଆରେ ସନ୍ଦେଶ ପ୍ରେରଣ କରିଛି । ଦ୍ୱାଦଶ ଶତାବ୍ଦୀର କବି ଧୋୟୀଙ୍କ 'ପବନ ଦୂତ, ଖୁବ୍ ଲୋକପ୍ରିୟ । ଏଥିରେ ଗନ୍ଧର୍ବ କନ୍ୟା କୁବଳୟାବତୀ ଲକ୍ଷ୍ମଣସେନଙ୍କୁ ଦିଗ୍ବିଜୟ ସମୟରେ ଦର୍ଶନ କରି ବିବହ୍ୱଳା ହୋଇ ପବନକୁ ଦୂତ କରି ତାଙ୍କ ନିକଟକୁ ବାର୍ତ୍ତା ପ୍ରେରଣ କରିଛି । ଷୋଡ଼ଶ ଶତକର ବିଖ୍ୟାତ ବୈଷ୍ଣବ କବି ଓ ପଣ୍ଡିତ ରୂପ ଗୋସ୍ୱାମୀ ରାଧା ବିରହ ଜନିତ କରୁଣ ରସ ପୂର୍ଣ୍ଣ 'ହଂସଦୂତ' କାବ୍ୟ ରଚନା କରିଥିଲେ ।

କବି ବ୍ରଜନାଥ ବଡ଼ଜେନା 'ମନୋଦୂତ' ନାମକ ଦୂତ କାବ୍ୟ ରଚନା କରିଥିଲେ । ଏହା ବ୍ୟତୀତ ବିଷ୍ଣୁ ଦାସଙ୍କ 'ମନୋଦୂତ' ଲକ୍ଷ୍ମୀଧରଙ୍କ 'ଶୁକଦୂତ' କବି ବିକ୍ରମଙ୍କ 'ନେମୀଦୂତ' ଭୋଳାନାଥଙ୍କ 'ପାନ୍ଥଦୂତ' ବାଦୀଚନ୍ଦ୍ର ସୂରୀଙ୍କ 'ପବନ ଦୂତ' କୃଷ୍ଣ ସାର୍ବଭୌମଙ୍କ 'ପଦାଙ୍କଦୂତ' ବାସୁଦେବଙ୍କ 'ଭୃଙ୍ଗଦୂତ' ବାମନ ଭଟ୍ଟଙ୍କ 'ହଂସଦୂତ' କୃଷ୍ଣ ଶ୍ରୀଚନ୍ଦନଙ୍କ 'ଅବ୍ଦଦୂତ' ପ୍ରଭୃତି ପ୍ରସିଦ୍ଧି ଲାଭ କରିଅଛି । କେବଳ ଭାରତରେ ନୁହେଁ ଭାରତବର୍ଷ ବାହାରେ ମଧ୍ୟ ଅନେକ କବିଙ୍କୁ ଏ ଧାରା ପ୍ରଲୋଭିତ କରିଥିଲା । ବିଖ୍ୟାତ ଜର୍ମାନ କବି ଶୀଲର 'ମେଘଦୂତ' ପାଠ କରି ସାରିବା ପରେ Maria Stwart ନାମକ କାବ୍ୟ ପ୍ରଣୟନ କରିଥିଲେ ଯହିଁରେ ବନ୍ଦୀ ଗୃହରେ ଥିବା ସ୍କଟଲଣ୍ଡର ରାଣୀଙ୍କ ଦ୍ୱାରା ମେଘକୁ ଦୂତ କରି ତାହା ଦ୍ୱାରା ସ୍ୱଦେଶକୁ ସନ୍ଦେଶ ପ୍ରେରଣ କରାଯାଇଛି ।

ଅନେକ ସଂସ୍କୃତ କାବ୍ୟ ସାହିତ୍ୟରେ ମଧ୍ୟ ଏହି ଦୂତକାବ୍ୟଗୁଡ଼ିକର ପ୍ରଭାବ ପଡ଼ିଥିଲା । ସେଥି ମଧ୍ୟରୁ ଦୁଇ ଜଣ ବିଖ୍ୟାତ ଉତ୍କଳୀୟ ମହାକବିଙ୍କ ବିଷୟ ଉଲ୍ଲେଖ କରାଯାଇପାରେ । ମହାକବି ଶ୍ରୀହର୍ଷ ତାଙ୍କ ଅନୁପମ କାବ୍ୟ 'ନୈଷଧୀୟ ଚରିତମ୍'ରେ ହଂସ ଦ୍ୱାରା ଦୂତ କାର୍ଯ୍ୟ କରାଇ ଅଛନ୍ତି । ମହାକବି ଜୟଦେବଙ୍କ ଅସାଧାରଣ ପ୍ରେମ ଭକ୍ତି ଯୁକ୍ତ 'ଗୀତ ଗୋବିନ୍ଦ'ରେ ଦୂତୀ ରାଧା ଓ କୃଷ୍ଣଙ୍କ ମିଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଛି ।

ଓଡ଼ିଆ ସାହିତ୍ୟରେ ଏ ଧାରାର ପ୍ରବର୍ତ୍ତନ ଖୋଜିବା ସମୟରେ ଲୋକ ଗୀତର ଧାରା ଉପରେ ଦୃଷ୍ଟିପାତ କରିବା ଉଚିତ । କାରଣ ପ୍ରତ୍ୟେକ ସାହିତ୍ୟରେ କାବ୍ୟିକ ବିଭବ ପୂର୍ବରୁ ସ୍ୱଚ୍ଛ ସରଳ ଲୋକ ଗୀତର ଧାରା ପ୍ରବାହିତ ହୋଇଥାଏ । ଓଡ଼ିଆ ସାହିତ୍ୟରେ ସେ ନିୟମର ବ୍ୟତିକ୍ରମ ହୋଇ ନାହିଁ ।

ଏ ପ୍ରସଙ୍ଗରେ ବୌଦ୍ଧ ଗୀତିକାରେ 'କୋଇଲି ଦୂତ'ର କିଛି ଅଂଶ ଉଦ୍ଧାର କରାଯାଇପାରେ । ଲଳିତ ପଦାବଳୀ ମଧ୍ୟରେ ଅନାବିଳ ହୃଦୟର କରୁଣ

ଭାବ ବିଚାର ସ୍ୱଚ୍ଛନ୍ଦ ପରପ୍ରକାଶ ଯେପରି ହୃଦ୍ୟ ସେହିପରି ଆବେଗମୟ୍ତ ଶାଶୁଘର ଗଞ୍ଜଣାରେ ଅତିଷ୍ଟ ହୋଇ ବାପଘର କଥା ମନେ ପକାଇ ନବବଧୂର ଚକ୍ଷୁରୁ ଲୋତକ ବନ୍ୟା ପ୍ରବାହିତ ହୋଇଛି ଅନେକ ଦିନଧରି ବାପଘରୁ କେହି ଆସି ନଥିବାରୁ ଅଭିମାନର ବୋଝ ଅଜାଡ଼ି ଦେଇ କୋଇଲିକୁ କହୁଛି–

"କୋଇଲିଲୋ ମୋହପାଇଁ ଉଡ଼ିଉଡ଼ି ଯିବୁ
ମୋ ବୋଉ ନନାଙ୍କୁ କହି ମାନ ଉଦ୍ଧାରିବୁ
ଲୋ କୋଇଲି ।

କୋଇଲି ଲୋ ବୋଉଯେବେ ଜନ୍ମ କରିଥାନ୍ତା
ସତେ ନ ଦେଖିଲେ ମୋତେ ସପନ ଦେଖନ୍ତା
ଲୋ କୋଇଲି ।

କୋଇଲି ଲୋ ସପନରେ କହନ୍ତା ନନାଙ୍କୁ
ବିକଳ ହେଉଛି ମନ ଆଣନ୍ତୁ ଝିଅକୁ
ଲୋ କୋଇଲି ।

କୋଇଲି ଲୋ ନନା ଯେବେ ଜନ୍ମ କରିଥାନ୍ତେ
କାନ୍ଧେ ଛତା ହାତେ ବାଡ଼ି ସନ୍ଧୋଳି ଆସନ୍ତେ
ଲୋ କୋଇଲି ।

କୋଇଲି ଲୋ ଭାଇନା ମୋ ବାଡ଼ପଣ କଲା
ଛମାସକୁ କଣ୍ଠ କରି ବରଷେ ରହିଲା
ଲୋ କୋଇଲି ।"

ଦୂତକାବ୍ୟ ପ୍ରଭାବିତ ଓଡ଼ିଆ କୋଇଲି ସାହିତ୍ୟ ଗୁଡ଼ିକ ଅତ୍ୟନ୍ତ ଲୋକପ୍ରିୟ । ସରଳ ଭାଷା, ସୁଲଳିତ ଛନ୍ଦ, ସୁନିର୍ବାଚିତ ପଦାବଳୀ, ଆଲଙ୍କାରିକ ଛଟା, ଆବେଗମୟ ଭାବଧାରା, ତଥା ଅନେକ ଚିରନ୍ତନ ବିଭବରେ ମଣ୍ଡିତ ଏ କବିତା ଗୁଡ଼ିକ ଶ୍ରୁତି ସୁଖକର ଅଟେ ସେଗୁଡ଼ିକ ମଧ୍ୟରେ ମାର୍କଣ୍ଡ ଦାସଙ୍କ କେଶବ କୋଇଲି, ବଳରାମ ଦାସଙ୍କ କାନ୍ତ କୋଇଲି, ଜଗନ୍ନାଥ ଦାସଙ୍କ ଅର୍ଥ କୋଇଲି, ଲୋକନାଥଙ୍କ ଜ୍ଞାନ ସାଗର କୋଇଲି ପ୍ରଭୃତି ପ୍ରଧାନ ଉଦାହରଣ ସ୍ୱରୂପ ଶଙ୍କର ଦାସଙ୍କ ଲୋକପ୍ରିୟ ବାରମାସୀ କୋଇଲିକୁ ନିଆଯାଇ ପାରେ ।

ଅଳିଅଳ ପୁଅ ରାମ ରାଜା ହେବା ଅବସ୍ଥାରେ ଦୈବ ଯୋଗରେ ବଣକୁ ଯିବାରୁ ମାଆ କୌଶଲ୍ୟାଙ୍କ ଛାତି ଫାଟି ଯାଉଛି । ସେ ଦୁଃଖରେ କୋଇଲିକୁ କହୁଛନ୍ତି–

"ଦେଖିଏ ଧାଇ ଶ୍ରାବଣ
ଜଳପଡ଼େ ଅନୁକ୍ଷଣ
ବାଟଘାଟ ନାହିଁ ମୋ ଦୁଃଖି ସଙ୍ଗାଳି
କି ରୂପେ କାଟିବ ଦିନଲେ
କୋଇଲି ଶୁଣଲେ" ॰

ଅନେକ ଚଉତିଶା ଓଡ଼ିଆ ସାହିତ୍ୟର ଆଦିଯୁଗର ରଚନା । ଦୂତକାବ୍ୟ ମୂଳକ ସାହିତ୍ୟରେ ଏଗୁଡ଼ିକର ଏକ ସ୍ୱତନ୍ତ୍ର ସ୍ଥାନ ରହିଅଛି । ଏଥିମଧ୍ୟରୁ ଅନେକ ସମ୍ବୋଧଗୀତିକା ରହିଅଛି । ସେଗୁଡ଼ିକ ମଧ୍ୟରେ କୋକିଳ ଚଉତିଶା, କଳକଣ୍ଠ, ଚଉତିଶା, ନୀଳକଣ୍ଠ ଚଉତିଶା, ଜଳଧର ଚଉତିଶା, ଜଳଦ ଚଉତିଶା, ପବନଦୂତ ଚଉତିଶା, ମେଘଦୂତ ଚଉତିଶା, ପିକବର ଚଉତିଶା, ମରୁତ ଚଉତିଶା, ହଂସଦୂତ ଚଉତିଶା, ନବଘନ ଚଉତିଶା ଓ ଉଦ୍ଧବ ଚଉତିଶା ପ୍ରଭୃତି ପ୍ରଧାନ । ହନୁମାନ ଚଉତିଶାକୁ ବାଦଦେଲେ ଅନ୍ୟସମସ୍ତ ଚଉତିଶା ଗୁଡ଼ିକ ଶୃଙ୍ଗାର ରସାତ୍ମକ । ଯଦୁ ଦାସଙ୍କ ହଂସଦୂତ ଚଉତିଶାରେ କୃଷ୍ଣ ବିରହ ବିଧୁରା ଗୋପାଙ୍ଗନାଗଣ ହଂସକୁ ଦୂତକରି କୃଷ୍ଣଙ୍କ ପାଖକୁ ପଠାଇ କହିଛନ୍ତି ।

"ଖଣ୍ଡି ଣ ହିଜକାନ୍ତ ବୃଦ୍ଧମାତା ପିତାନ୍ତ
ଖଗେଶ ପତିଙ୍କର ପାଇଁ
ଛଣକେ ଏଡ଼େ ସୁଖ ତେଜିଲେ ପଦ୍ମମୁଖ
ରହିଲେ ମଧୁପୁରେ ଯାଇଁ ହେ ହଂସଦୂତ
ଝରିଯେ କୁମୁଦନିବନ୍ଧୁ
ଝେଦେ ସକଳ ଗୋଇ ତେସନେ ଅଛୁ ହୋଇ
ଚନ୍ଦ୍ରକ ଉଦେ ହେବେ କହ୍ନୁ"

ଏକାତ୍ମ ପ୍ରେମରେ ଦୃଢ଼ ବିଶ୍ୱାସୀ ମୁକୁନ୍ଦ ଦେବ ପ୍ରିୟତମା ପାଖକୁ ସମ୍ବାଦ ପଠାଇଛନ୍ତି

"ଜୀବନ ଧନକୁ କହିବ ମୋହର
ଯହିଁ ଥିଲେ ମୁଁ ତାହାର
ଯେସନେ ଆକାଶେ ମେଘ ଗରଜଇ
ଶୁଣି ଆନନ୍ଦ ମୟୂର"

ଓଡ଼ିଆ କାବ୍ୟ ସାହିତ୍ୟରେ ଏହି ସ୍ତରର ଅନେକଙ୍କ ଅବତାରଣା କରାଯାଇଛି ଏଥିରେ ଋତୁ, ପଶୁପକ୍ଷୀ ଓ ନିର୍ଜୀବ ବସ୍ତୁକୁ ସମ୍ବୋଧନ କରି ହୃଦୟସ୍ଥ ବେଦନାର

ପରିପ୍ରକାଶ କରାଯାଇଅଛି । ରାବଣ ଦ୍ୱାରା ସୀତା ଅପହୃତ ହେବାପରେ ରାମ ପର୍ଣ୍ଣକୁଟୀରକୁ ଆସି ସୀତାଙ୍କୁ ନଦେଖି ବୃକ୍ଷ ମାନଙ୍କୁ ସମ୍ବୋଧନ କରି ସେମାନେ ସୀତାଙ୍କୁ ରକ୍ଷାକରି ନପାରିଥିବାରୁ ଦୋଷ ଦେଇ ଅଛନ୍ତି ।

"ଆହେ ବୃକ୍ଷମାନେ ତୁମ୍ଭେ ସମସ୍ତେହେଁ ଦେଖ
ନିରକ୍ଷ ଜନ ପ୍ରାୟେକ ହୋଇଲ ଅରକ୍ଷ

× × ×

ରଖିନପାରିଲେ ଯେ ମହତ ଜନ ହୋଇ
ଅନାଥ ହେଇଣ ଏବେ ଯାଉଅଛି ମୁହିଁ
(ଜଗମୋହନ ରାମାୟଣ—ଅରଣ୍ୟକାଣ୍ଡ)

ପଞ୍ଚସଖା ଯୁଗର ଅନ୍ୟତମ ରଥୀ ଭକ୍ତ କବି ଜଗନ୍ନାଥ ଦାସ ତାଙ୍କ ତାତ୍ତ୍ୱିକ ଗ୍ରନ୍ଥ ଭାଗବତରେ ଏହାର ପ୍ରୟୋଗ କରିଅଛନ୍ତି । କୃଷ୍ଣ ବିରହ ବିଧୁରା ଗୋପାଙ୍ଗନାଗଣ ବନ ମଧ୍ୟରେ କୃଷ୍ଣଙ୍କୁ ଅନ୍ୱେଷଣ କରି ନପାଇବାରୁ ବାତୁଳ ପ୍ରାୟ ହୋଇ କହୁଛନ୍ତି-

ବୋଲନ୍ତି ଗୁହିଁ ତରୁଗଣ
ତୁମ୍ଭେ ଦେଖିଲ ନାରାୟଣ ।
ଅଶ୍ୱତ୍ଥ ବଟ ଶାଳ ବୃକ୍ଷ
ତୁମ୍ଭେକି ଦେଖିଲ ପ୍ରତ୍ୟକ୍ଷ ।
ହେ କୁରୁବେକ ନାଗେଶ୍ୱର
ଚମ୍ପା ବକୁଳ କନିଅର ।
ତୁମ୍ଭ ପୀରତି ଯେନି ଚନ୍ଦ୍ରେ
ଗୋବିନ୍ଦ ଗଲେ କି ଏ ପଥେ

× × ×

ହରିଣୀ ଯଥଙ୍କୁ ଅନାଇଁ
କହନ୍ତି ଶୋକଭରି ହୋଇ

ଆମ୍ଭେ ଜାଣିଲୁ ନଷ୍ଟେ ଆଜ
ତୁମ୍ଭେ ଦେଖିଲ ଦେବରାଜ"
( ଭାଗବତ ୧୦ । ୩୧ )

ରୀତ ଯୁଗର ମୁଖ୍ୟ ପ୍ରବକ୍ତା ଉପେନ୍ଦ୍ରଙ୍କ ପିତାମହ ଧନଞ୍ଜୟ ଭଞ୍ଜଙ୍କ ଅନଙ୍ଗରେଖା କାବ୍ୟର ନାୟକ ନାୟିକା ମେଘ ଓ ଭ୍ରମରକୁ ସେମାନଙ୍କ ମନୋଭାବ କଥା ବ୍ୟକ୍ତ କରି ପଚାରିଛନ୍ତି ସରଳ ପଦ ମଧ୍ୟରେ ନାୟକର ଆନ୍ତରିକ ଆବେଦନ ଅତ୍ୟନ୍ତ ମର୍ମସ୍ପର୍ଶୀ ଓ ଆବେଗମୟ ହୋଇଅଛି ।

"କହଇ ଶୁଣ ଆହେ ପୟୋଧର ବିନୟ ମୋ ଘେନ,
ଦେଖିଅଛୁ କି ସେ ପ୍ରିୟାରତନ
ଶରଦଛଳେ କି କହୁଛ ବାଣୀ
କିସ ସନ୍ଦେଶ ତାର ଅଛ ଆଣି
କାନ୍ତା ଦରଶନ ଆନନ୍ଦ ନୀର
ଜାଣିଲୁ ତେଜୁଅଛ ଧୀର ଧୀର
ଘନଲୋକ ନୁହଁ, ସଖୀର କୁଶଳ ଉଦନ୍ତ କହ"

ନରସିଂହ ସେଣଙ୍କ 'ପରିମଳା' ଏକ ପ୍ରାଚୀନ କାବ୍ୟ । ବିରହିଣୀ ନାୟିକା ଦୁଃଖରେ ମ୍ରିୟମାଣ ହୋଇ ଚନ୍ଦ୍ର ଓ କନ୍ଦର୍ପକୁ ଅନେକ ପ୍ରକାରେ ଧିକ୍କାର କରି କହୁଅଛି ।

"ଯାହାକୁ ମାନ କରଇ ସେକାଳେ
ରୋଷ କରଇ ତୋତେ ଦେଖି ଡ଼ୋଳେ
ସ୍ନେହେତୁ ମୋହର ବୋଲ ନକର
ହିମ କିରଣେ ଗ୍ୟାଂନ ଦେଉ ସାର
ଶଶିହେ, ଔଷଧଙ୍କର ତୁମ୍ଭେ ପତି
ମଦନ ରୋଗହିଁ ତୁମେ ଯେ ବଢାଅ
କିସ ବୋଲିବି ମୁହିଁ ଯୁବତୀ
(ପରିମଳା ୨୧ / ୧୪)

ଭଞ୍ଜଙ୍କ ଠାରୁ ବର୍ଷୀୟାନ୍ ରୀତ ଯୁଗର ପ୍ରସିଦ୍ଧ ଆଲଙ୍କାରିକ କବି ଲୋକନାଥ ବିଦ୍ୟାଧର ତାଙ୍କର 'ଚନ୍ଦ୍ରକଳା' କାବ୍ୟରେ ଲେଖିଛନ୍ତି- କୃଷ୍ଣା ବେଣୀର ରାଜା

ସୁଦର୍ଶନ କନ୍ୟା ଅନ୍ୱେଷଣ ପାଇଁ ଏକ ହଂସୀକୁ ପ୍ରେରଣ କରିଥିଲେ । ଚନ୍ଦ୍ରକଳା ହଂସୀଠାରୁ ସୁଦର୍ଶନଙ୍କ ରୂପଗୁଣ କଥା ଶୁଣି ବିମୁଗ୍ଧା ହୋଇଛି ହଂସୀ ଫେରିଯାଇ ସୁଦର୍ଶନଙ୍କ ଆଗେ କୁମାରୀର ଅସାମାନ୍ୟରୂପ ଗୁଣ ବର୍ଣ୍ଣନା କରି କୁମାରକୁ କୁମାରୀ ପ୍ରତି ଆକୃଷ୍ଟ କରାଇଛି । କାବ୍ୟରେ ବିରହକାତର ନାୟକ ଜଳଧରକୁ ଦୂତ କରି ପ୍ରିୟା ପାଖକୁ ପଠାଇଛି । ସେ କେବଳ ରୂପାଭିଳାଷୀ ନୁହେଁ ନାୟିକାର ନିର୍ମଳ ପ୍ରେମମୁଗଧ ଓ ଗୁଣଗ୍ରାହୀ ମଧ୍ୟ । ଚତୁର୍ଦ୍ଦଶ ଛନ୍ଦରେ ଉପମା ନିନ୍ଦା ଛଳରେ ଅନୁପ୍ରାସ ଯମକାଦି ଅଳଙ୍କାର ମଣ୍ଡିତ ହୋଇ ଏକ ଅଲୌକିକ ସାମାନ୍ୟ ଗୌରବରେ ବିମଣ୍ଡିତ ହୋଇଅଛି -

"ମଦନ ସମରନ୍ତି
ସମୟେ ଘଡ଼ଘଡ଼ି
ଶୁଣି ଦୃଢ଼ିବ ବାଳା ନାଡ଼ୀ
ନରହି ଏକ ଘଡ଼ି ନିଷ୍ଟୟେ ଯିବଛାଡ଼ି
ନହଅ ତାକୁ ଏତେ ଧାଡ଼ିରେ ଜଳଧର
କଠୋର କୁଳିଶ କଡ଼ିଡ଼ି, ମୋ ଶିରେ ପଡ଼ୁପଛେ ମାଡ଼ି
ଅଦୋଷୀ ସୁକୁମାରୀ ରାଜକୁମାରୀଙ୍କୁ ମାରି କାହିଁ ପାଇବୁ କେତେ ଶାନ୍ତି"
(ଚନ୍ଦ୍ରକଳା ୧୪ । ୬)

କବିଙ୍କ ଅନ୍ୟତମ ଶ୍ରେଷ୍ଠକାବ୍ୟ 'ସର୍ବାଙ୍ଗ ସୁନ୍ଦରୀ'ରେ ମଧ୍ୟ 'ଚନ୍ଦ୍ରକଳା' ପରି ହଂସ ନାୟକ ଅବନୀତିଳକ ଓ ନାୟିକା ସର୍ବାଙ୍ଗ ସୁନ୍ଦରୀ ଉଭୟଙ୍କ ପାଖେ ପରସ୍ପରର ଶୋଭା ବର୍ଣ୍ଣନା କରି ଉଭୟଙ୍କୁ ଉଭୟଙ୍କ ପ୍ରତି ଆକୃଷ୍ଟ କରାଇଅଛି । କେବଳ ସେତିକ ନୁହେଁ ହଂସ ନୀତିବେତ୍ତା ଭାବେ ରାଜାଙ୍କୁ ରାଜଧର୍ମର ମୂଳତତ୍ତ୍ୱ ବୁଝାଇ କହିଛି-

"ପୁତ୍ର ପରାୟେ ପାଳିବୁ ପ୍ରଜା
ଗୁରୁଜନେ ରଖିଥିବୁ ଲଜ୍ଜା
ପରେ ପରାକ୍ରମ ସବୁଠାରେ, ଧର୍ମ
ଦେବ ବ୍ରାହ୍ମଣରେ ପୂଜା ହେ ରାଜନ"

ଭକ୍ତଙ୍କ ସମସାମୟିକ ଅନ୍ୟତମ ବୈଷ୍ଣବ କବି ଭୂପତି ପଣ୍ଡିତ ତାଙ୍କ ରଚିତ ଉଦ୍ଧବ ଚଉତିଶା ଓ 'ପ୍ରେମ ପଞ୍ଚାମୃତ' କାବ୍ୟରେ ଏ ଧାରାର ଅନୁବର୍ତ୍ତନ କରିଛନ୍ତି । କୃଷ୍ଣଙ୍କ ବିଚ୍ଛେଦରେ ଗୋପାଙ୍ଗନାଗଣ ଆତୁର ହୋଇ କହିଛନ୍ତି-

"ଅନାଇ ବନ ତରୁ ଲତା,
ପୁଚ୍ଛନ୍ତ ଗୋବିନ୍ଦ ବାରତା
ଅହୋ କଦମ୍ବ ତରୁ ବର,
ତୁମେ ଦେଖିଲ ବେଣୁଧର
କେତକୀ କୁସୁମକୁ କହି,
କୃଷ୍ଣଙ୍କୁ ଭେଟିଲୁଗୋ ତୁହି,

× × ×

ଏମନ୍ତ ଦେଖିଲେ ହରିଣୀ,
ତାହାକୁ ବୋଲନ୍ତ ଗୋପିନୀ
କେ ବୋଲେ ନୀଳକଣ୍ଠ ଗୃହିଁ,
ଏ ଗୋ ଦେଖିଲ ଭବଗ୍ରାହି
ଏ ରୂପେ ଖଗ ମୃଗ ବୃକ୍ଷେ
ଗୋପୀଏ ପୁଚ୍ଛନ୍ତ ପ୍ରତ୍ୟକ୍ଷେ
(ପ୍ରେମପଞ୍ଚାମୃତ - ଅଷ୍ଟମ ଅଧ୍ୟାୟ)

ଏହି ସମସ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତୀୟମାନ ହେବଯେ ଭଞ୍ଜ ସାହିତ୍ୟରେ ଦୂତ କାବ୍ୟର ପ୍ରଭାବ କିଛି ଆକସ୍ମିକ ନୁହେଁ । ବରଂ ଏହା ଦୂତକାବ୍ୟ ଧାରାର ଏକ କ୍ରମ ବିକାଶ ଅଟେ । ଏହି ପୁରାତନ ଲୋକପ୍ରିୟ ବିଭବରଚନା ଭଞ୍ଜ ସାହିତ୍ୟରେ ପର୍ଯ୍ୟାପ୍ତ ଭାବେ ଦୃଷ୍ଟିଗୋଚର ହୁଏ । ଭଞ୍ଜ ଏହାର ସଦୁପଯୋଗ କରି କାବ୍ୟର କଳାତ୍ମକ ମୂଲ୍ୟବୃଦ୍ଧି କରି ଅଛନ୍ତି । କବି ବହୁ କାବ୍ୟ କବିତାରେ ଏ ଧାରାର ଅନୁବର୍ତ୍ତନ କରିଥିଲେ ମଧ୍ୟ ଏଠାରେ କେବଳ 'ରସଲେଖା' ବିଷୟରେ ଆଲୋଚିତ ହେଉଅଛି ।

'ରସଲେଖା' ବାଇଶଗୁଣ ବିଶିଷ୍ଟ ଏକ କ୍ଷୁଦ୍ର କାବ୍ୟ । କାବ୍ୟର ଶେଷ ଭାଗରେ ଭଞ୍ଜ ଲେଖିଛନ୍ତି, "ଏହି ଗୀତ ଦ୍ୱାବିଂଶତି ଛନ୍ଦ, ନିଷ୍ଟେଅଛି ଷଟଶତ ଷଷ୍ଠୀ ପଦ" ମାତ୍ର ପ୍ରକାଶିତ ଗ୍ରନ୍ଥରେ ସାତଶହ ଛବିଶ ପଦରହିଅଛି । କପିସାଙ୍ଗ୍ର ଋଷିଙ୍କ କନ୍ୟା ଲୀଳାବତୀ ଗର୍ଭଜାତ ରସଲେଖା ସହ ସୁଧାନିଧି ନଗରର ରାଜା ଭୂପତିଙ୍କ ପୁତ୍ର ବିଶ୍ୱଭୂତିର ବିବାହ, ବିଚ୍ଛେଦ ଓ ପୁନର୍ମିଳନକୁ ନେଇ ଏ କାବ୍ୟ ରଚିତ । ଦିବ୍ୟସିଂହ ଗଜପତିଙ୍କ ରାଜତ୍ୱର ସପ୍ତବିଂଶତି ଅଙ୍କର ଶେଷଦିନ ଅର୍ଥାତ ୧୭୧୦ ଖ୍ରୀ; ଭାଦ୍ରଶୁକ୍ଳ ଏକାଦଶୀ ଦିନ ଏକାବ୍ୟ ରଚନା ଶେଷ ହୋଇଥିଲା ।

ଭଞ୍ଜଙ୍କ ଆନ୍ୟାନ୍ୟ ଶ୍ରେଷ୍ଠ କାବ୍ୟପରି ଗତାନୁଗତିକ ବିଷୟବସ୍ତୁ ମଧ୍ୟଦେଇ ଏହା ଗତି କରିଛି । ବିଷୟ ବସ୍ତୁରେ ନୂତନତା ବା ବୈଚିତ୍ର୍ୟ ନାହିଁ କହିଲେ ଚଳେ ଏକାବ୍ୟରେ ସଜୀବ ଓ ନିର୍ଜୀବ ଉଭୟ ପ୍ରକାର ଦୂତର ପ୍ରୟୋଗ କରି ଯାଇଅଛି । ଏଠାରେ ସନ୍ନ୍ୟାସୀ ଓ ମନ୍ତ୍ରୀପୁତ୍ର ଉଭୟେ ବାର୍ତ୍ତାବହ ଭାବରେ କାର୍ଯ୍ୟ କରି ଅଛନ୍ତି । ନିର୍ଜୀବ ବସ୍ତୁ ମଧ୍ୟରେ ମେଘ, ଚନ୍ଦନ, ଭ୍ରମର, ବସନ୍ତ ପ୍ରଭୃତିଙ୍କୁ ଦୂତ କାର୍ଯ୍ୟରେ ନିୟୋଜିତ କରାଯାଇଛି । ବିରହକାତରା ନାୟିକା ଦୂରସ୍ଥ କାନ୍ତ ନିକଟକୁ ନାରୀ ସୁଲଭ ଅଭିମାନରେ ପତ୍ର ଲେଖି ଜଣାଇଛି

"ତୁମ୍ଭ ସେବା କରିବାକୁ
ନାହିଁ ମୋର ଭାଗ୍ୟ

ନୋହିଲି ସଙ୍ଘୋଳା ପତ୍ର
ଖଣ୍ଡିକୁ ଯୋଗ୍ୟ

ଏତେ ଜଣାଇ ତୁମ୍ଭରେ
ମୋହପରି ନିର୍ଦ୍ଦୟ ନୋହିବ କାହାଠାରେ"

(ବଂଶଛନ୍ଦ)

ପତ୍ରଲେଖି ମୁଦ୍ରିଦେଇ ତାହାକୁ ସନ୍ନ୍ୟାସୀ ହସ୍ତରେ ଦେବାରୁ ସେ ଚିଠାଉ ନେଇ

"ନେତ୍ର ଗୋଚରରୁ ଯାଇ ପତ୍ର ଲୁଚ୍ଚାଇଲା
ଦ ମାସକୁ କଣ୍ଠଗୋ ସନ୍ନ୍ୟାସୀ ଜଣେ କଲା

ଯେବେ ଆସିବ ସନ୍ଦେଶ
ବଞ୍ଚାଇ ଏ ରୂପେ କହି ଚଢି କଲା ତୋଷ"

ଏଣେ ବିରହୀ ରାଜପୁତ୍ର ମଧ୍ୟ ଅନୁରୂପ ଭାବେ ବିରହ କାତର ହୋଇ ପତ୍ର ଲେଖି 'ପ୍ରାଣତୁଲ୍ୟ ସଖା ମନ୍ତ୍ରୀ ନନ୍ଦନ' ହସ୍ତରେ ପଠାଇଲେ । ମନ୍ତ୍ରୀସୁତ ଅତ୍ୟନ୍ତ ସାବଧାନ ସହକାରେ ସେ ପତ୍ର ଆଣି ରସଲେଖାର ସଖୀକୁ ଦେବା ସମୟରେ

"ରମା ଲେଖିଥିଲା ଯେବଣ ପତ୍ରିକା
ତା ନେଇ ଥିଲା ବାସରେ

କୁମାର ପତ୍ରିକା ଘେନିଲା ଉତ୍ତାରୁ
ତାହା ଦେଲା ତାର କରେ"

ରସଲେଖା ମୁଦ୍ର ଫିଟାଇ ରାଜପୁତ୍ରର ଚିଠାଉ ପାଠ କଲା ବେଳେ ତାଙ୍କୁ 'ଅମୃତ ସମାନ ତହିଁ ଭାଷା ସ୍ୱାଦ' ଜଣାଗଲା । ପ୍ରକୃତରେ ଏ ପତ୍ରଟିର ଭାଷା ଅତ୍ୟନ୍ତ

ରଙ୍ଗଲା ଓ ଭବକର୍ଭଙ୍କ ଅନାବିଲ ଦାମ୍ପତ୍ୟ ପ୍ରେମର ଶ୍ରେଷ୍ଠ ନିଦର୍ଶନ ସ୍ୱରୂପ ଲଳିତ୍ୟଭରା ଏ ପଦଟି ଭାବ ଭାଷା, କଳ୍ପନା, ଅବେଗ, ଆନୁଗତ୍ୟ ପ୍ରତ୍ୟେକ ଦିଗରୁ ଅତି ଉଚ୍ଚକୋଟିର ହୋଇଛି ।

"ଅରେ ଲାବଣ୍ୟ ପ୍ରତିମା, ଅରେ ପ୍ରେମରସ ସୀମା
ଅରେ ରମା ସୁଦୃଶୀ ମୋ ଧନ
ଆହାରେ କେଳି ପ୍ରବୀଣା, ବୀଣା ବାଣୀ ମୁଁ ତୋ କିଣା
ମୁହିଁ ପିଣ୍ଡ ତୁ ମୋର' ଜୀବନରେ ପ୍ରାଣବନ୍ଧୁ
ସିନ୍ଧୁର ଗମନା ରସ ସିନ୍ଧୁ
ଘୋଟୁଅଛୁ ଚନ୍ଦ୍ରାତମ ମୁଖ ବଧୂରେ
(ଛାନ୍ଦ ୨୨ । ୨)

ସେ ଅନନ୍ୟୋପାୟହୋଇ ଏହି ଅପ୍ରତ୍ୟାଶିତ ବିଚ୍ଛେଦକୁ ଭାଗ୍ୟ ଦୋଷ ଭାବରେ ସ୍ୱୀକାର କରି କହିଛି

"ବିଧାତାକୁ କେହି ବଳୟାର
ସେ ପ୍ରୀତିକି ଏବେ କଲା ଦୂର"

ତା'ର ଅନାବିଲ ଦାମ୍ପତ୍ୟ ପ୍ରେମ ଶୁଦ୍ଧ ସୁବର୍ଣ୍ଣ ପରି ଉଜ୍ଜ୍ୱଳ । ସେ ଦୃଢ଼ ସ୍ୱରରେ ମନୋଭାବ ପ୍ରକାଶ କରି କହିଛି-

"ମୁଁ ହୋଇଲି ବୋଲି ଭିନ୍
ମନେ ନ ଘେନିବୁ ଆନ
ଯହିଁ ଥିଲେ ମୁଁ ତୋ ପାଶେ ଅଛି
ମୁଁ ତୋର ଯେମନ୍ତ ଭୃତ୍ୟ, ତାହାଜାଣ ପ୍ରାଣମିତ
ଆସ୍ୱତେକ ଅନ୍ତର ହୋଇଛିରେ"

ସେ କହିଛି, ଯଦି ରସଲେଖାର ଏଥିରେ ଲେଶମାତ୍ର ସନ୍ଦେହ ଥାଏ ତାହାହେଲେ ସନ୍ଦେହର ଶେଷ ସମାଧାନର ପନ୍ଥା ରୂପେ ଶପଥ କରିବାକୁ ସେ ପ୍ରସ୍ତୁତ ଅଛି । ଯଦି ସେ ଦୋଷୀ ବୋଲି ସାବ୍ୟସ୍ତ ହେବ ତାହାହେଲେ ରସଲେଖା ପ୍ରଦତ୍ତ ଦଣ୍ଡକୁ ସେ ଯଥାସାଧ୍ୟ ଆନନ୍ଦରେ ଗ୍ରହଣ କରିନେବ । ପ୍ରେମର

ଐକାନ୍ତିକତା ରେ ଯେ ଯେପରି ଏକୀଭୂତ ହୋଇଯାଇଛି ପ୍ରେମାନୁଗତ୍ୟର ସାର୍ଥକ ଉଦାହରଣ ଭବେ ତାର ହୃଦୟର ବାର୍ତ୍ତା ହୋଇଛି

"ଏ ଶିର୍ଦ୍ଧେ ତୋ ଏକା ଅଧିକାର
ଆହା କରିବାକୁ ସାହା ନାହିଁ ମୋର"

ପରର ଅନ୍ତିମ ଭାଗ ସ୍ୱତନ୍ତ୍ରତାର ସାର୍ଥକ ନିଦର୍ଶନ । ନାୟକ ଯେପରି ନାୟିକା ସହ ଏକପ୍ରାଣ ହୋଇଯାଇଛି ଆବେଗ ଓ ଭାବବହୁଳତା ମଧ୍ୟରେ ନିମଜ୍ଜିତ ହୋଇ ବଶୀଭୂତ ତାର ଶ୍ରେଷ୍ଠ ଆନୁଗତ୍ୟର ପ୍ରମାଣ ଦର୍ଶାଇଅଛି

"ଲଲାଟେ ଦେଉଛି ଚିତା,
ପାଦେ ଦେଉଛି ଅଳତା,
ମୁକୁର ଦେଖାଉଅଛି ଆଗେ,
ଏତେଦୂରେ ଥିଲେ ରହି
ମାନସିକେ ଚନ୍ଦ୍ରମୁହିଁ
ନିତି ସେବାକରେ ଅନୁରାଗେରେ ପ୍ରାଣବନ୍ଧୁ
ତନ୍ତ୍ରରେ ନାମକରେ ଜପ
ନଥରଇ ତୋ ଗୁଣ କଳାପରେ"

(ଋଃଲେ; ୧୧ । ୭)

ବିବାହ ପରେ ନାୟକ ନାୟିକା ଆବେଗମୟ ଜୀବନ ଯାପନ କରୁଥିବା ସମୟରେ ଋତୁଚକ୍ରର ଆବର୍ତ୍ତନରେ ସେମାନଙ୍କ ମାନସପଟରେ ଭିନ୍ନଭାବ ସ୍ୱଭାବ ଜାଗରିତ ହୋଇଅଛି । ପ୍ରାକୃତର ଧରାବରଣରେ କବିକେତୁ ଚଉଦର୍ପଣରେ ଯେଉଁ ରସଘନ ଛବି ପ୍ରତିଫଳିତ ହୋଇଛି ତାର ପରି ପ୍ରକାଶ ଷୋଡ଼ଶ ଛନ୍ଦରେ ହୋଇଅଛି । ଏ ପଦ ଗୁଡ଼ିକ ଆବେଗ ଧର୍ମୀ ଓ ଲାଳିତ୍ୟ ପୂର୍ଣ୍ଣ । ପ୍ରିୟା ସମ୍ଭୋଗ ଜନିତ ଆନନ୍ଦରେ କାଳାତିପାତ କରୁଥିବା ନାୟକ ନବମୁଦିର ସଂଦର୍ଶନରେ ସଗର୍ବରେ ମେଘକୁ ଆହ୍ୱାନ କରି କହିଛି-

"ବାଦ କରିବାକୁ ତୋର ମୋର
ନାହିଁ ସଖୀ ତୁହି ମନେକର

ତୁ ଅମ୍ବର ଶୋଭା ଦୂର କରିପାରୁ
ମୁହିଁ ଅମ୍ବର କରଇ ଦୂରରେ ଜଳଦ ।

ତୋହ କୋଳେ ଝଟକେ ଦାମିନୀ
ମୋହ କୋଳେ ବସିଲେ କାମିନୀ

ତୁ ଘନରସ ଦେଇ ବଡ଼ ବୋଲଉ
ମୁହିଁ ବଡ଼ ଘନରସ ଦେଇରେ ଜଳଦ ।

ପକ୍ଷୀ ମୟୂର ନଚାଉ ତୁହି
ବେଣୀ ମୟୂର ନଚାଏ ମୁହିଁ

ତୁ ଉଚ୍ଚ ପର୍ବତ ଘୋଡ଼ାଇଣ ପାରୁ
ମୁହିଁ କୁଚ ପର୍ବତ ଘୋଡ଼ାଇରେ ଜଳଦ ।

ଧାରାଧର ସୁରେନ୍ଦ୍ର କମାଣ
ଧରି ଅଛୁକ କରିବୁ ରଣ

ଘୂରିବୁ ନାହିଁକି ସାଜିଲେ ଦେଇବ
ଧାରୁ ଚ୍ୟୁରୁ ନେଇ ଧନୁବାଣରେ ଜଳଦ ।"

(ଛାନ୍ଦ ୧୭ । ୭-୧୦)

ପାଠକ ମାନଙ୍କ ଅବଗତ ପାଇଁ ଉତ୍କଳର ଦୁଇଜଣ ବଶିଷ୍ଟ କବିଙ୍କ ଲେଖାରୁ ଅନୁରୂପ ଭାବନା ସମ୍ବଳିତ ଦୁଇଗୋଟି ଅଂଶ ଉଦ୍ଧାର କରି ଯାଉଅଛି । ଭଞ୍ଜଙ୍କ କଥିତ ପୂର୍ବବର୍ତ୍ତୀ ଶ୍ରେଷ୍ଠ ଆଳଙ୍କାରିକ କବି ଲୋକନାଥ ବିଦ୍ୟାଧରଙ୍କ ଚନ୍ଦ୍ରକଳା କାବ୍ୟରେ ନାୟକ ସୁଦର୍ଶନ ବର୍ଷାଋତୁରେ ନାୟିକା ନିକଟକୁ ଜଳଧରକୁ ଦୂତରୂପେ ପଠାଇଅଛି । ନାୟିକା ସୁଷମା ବର୍ଣ୍ଣରେ ରାଜପୁତ୍ର ଉପମା ନିନ୍ଦା ଛଳରେ ନାୟିକା କେଶର ଅନିନ୍ଦ୍ୟ ସୁନ୍ଦର ଶୋଭାସମ୍ଭାରର ସୂଚନା ପ୍ରଦାନକରି ଜଳଧରକୁ କହୁଛି ।

"ଶୁଣି ବୋଲେ କାଳିକା ନୃପସୁତା ବାଳିକା'
କେଶ ମାଳିକାତ ଦେଖୁଛୁ
ଚେତନପାଉ ଲାଜ, ଉଦେ ହୋଇଛୁ ଆଜ
ଅଳିଭ ଲଭ କାର୍ଯ୍ୟ ଇଚ୍ଛୁରେ ଜଳଧର

କେତେବେଳେ ସୁନ୍ଦର ପଟଣେ
ଥିବୁ ଏ ଗଗନ ପ୍ରାଙ୍ଗଣେ
ଏହି ଛଣି ବିବର୍ଣ୍ଣ       ହୋଇବୁ ଗୃହୁଁ 'ଗୃହୁଁ
ପଳାଇ ନିରହିବୁ କ୍ଷଣେରେ ।
ଏଥକୁ କମ୍ପା ଏତେ       ଗାରିମା ପଣ କରି
ବୃଥର୍ଥେ ଘୋର ନାଦ କରୁ
ଏଭଳି ହେଲେନି କି, ସେ କେଶ ବେଶ ଲେଶ
ପାଇବୁ ବିଗ୍ରହ ନ କରୁରେ ଜଳଧର,
ମଧୁର ଖ୍ୟାତି ଯେ ଭଜନ
ସେ ସର୍ବ ଲୋକରେ ରଞ୍ଜନ
ତୁ କେତେ ଲୋକ ଠାରେ       ପ୍ରଶଂସା ପାଇବାକୁ
କରୁଛୁ ଏଡ଼େ ଗରଜନ"

ଗୀତ ଯୁଗର କର୍ଣ୍ଣଧାର ସଙ୍ଗୀତ ସମ୍ରାଟ କବିସୂର୍ଯ୍ୟ ବଳଦେବ ରଥ ଭଞ୍ଜଙ୍କ ଅନୁରୂପ ଭାବକୁ ନେଇ ଏକ ଚମତ୍କାର ଲୋକପ୍ରିୟ ସଂଗୀତ ରଚନା କରିଛନ୍ତି । ଭାଷା, ଭାବ ଛନ୍ଦ ଅଳଙ୍କାର ପ୍ରଭୃତି ବିମଣ୍ଡିତ ଏ ସଙ୍ଗୀତଟି କବିସୂର୍ଯ୍ୟ ସାହିତ୍ୟ ଆକାଶର ଏକ ଉଜ୍ଜ୍ୱଳ ନକ୍ଷତ୍ର ।

"ରେ ନୀରଦ ! ଗରଜି ମରୁଛୁ କେତେ ।
ଅରଜି ନାହିଁ ତ ମୋ ବନ୍ଧୁ ଲଳିତ
ଭାବ ବିଭବୁ କାହିଁତେ (ଘୋଷା)
ଦେଖୁଛୁ ତ ମୋର       ବାଳା ପୟୋଧର
ମଧ୍ୟରେ ମୁକୁତା ହାର ।
କେଉଁ ବୁଦ୍ଧି ବଳେ       ଧରାଧର ଚୂଳେ
ଲମ୍ବାଉ ସଲିଲ ହାର । ୧ ।

ତ୍ରିଭୁବନେ ସରି       ଅଛି କି କିଶୋରୀ
ଭୁରୁ ଖେଳିବା ଦଣ୍ଡକୁ ।

ଫୁଲୁଅଛୁ କେତେ       ଦେଖାଇ ନିରତେ
ଇନ୍ଦ୍ର କୋଦଣ୍ଡ ଖଣ୍ଡକୁ । ୨ ।

କ୍ଷଣପ୍ରଭା କେଳି                                    ଗ୍ଭୁରକୁ ସଙ୍ଗାଳି
କରି ଫୁଲୁଅଛୁ ଯାହା
ନୀଳ ଚେଳାଛନ୍ନ                                    ବାଳା ଅପଘନ
ଛବିକି ଅଳପ ଗୃହାଁରେ । ୩ ।

ବର୍ଷା ପରେ ଧରା ପୃଷ୍ଠରେ ଶୀତଋତୁର ଆବିର୍ଭାବ । ବିରହୀ ବିରହିଣୀଙ୍କ ପାଇଁ ଏ ଋତୁ ଅତୀବ ବେଦନା ଦାୟକ । ନାୟିକାର ସାନ୍ନିଧ ଲଭ କରୁଥିବା ନାୟକ ପାଇଁ ଏ ଋତୁ ଆଶୀର୍ବାଦ ତୁଲ୍ୟ ହୋଇଛୁ, ଆଗ୍ରହ ଜନିତ ଆନନ୍ଦରେ ସେ ତୁହିନକୁ କହୁଛୁ

"ମୁଁ ଯେ ନୁହିଁଇ ସବିତା ପରି
ଅଗ୍ନି ପଣେ ରହିବାକୁ ଡ଼ରି
ନୁହେଁ ଗୁଆଁର ନଶାର ଘୋଡ଼ହେବି
ଥାଉ ଥାଉ ପାଶରେ ସୁନ୍ଦରୀରେ ତୁହିନ ।
କିସ ହେବ ନିରୋଧ ମନ୍ଦର
କସ ହେବ ମଶାରି ମୋହର
ହେମ ଗୋଷ୍ପନ ଉଷ୍ମ ସକାଶୁଁ
ତୋର ଦୁଃଖ ହେବାକୁ କି ଡ଼ରରେ ତୁହିନ"

ରୁକ୍ଷ ଶୀତ ପରେ କମନୀୟ ବସନ୍ତର ଧରାସ୍ପର୍ଶରେ କୁମର ଆନନ୍ଦରେ ଆତ୍ମହରା ହୋଇଛୁ । ମିଳନ ମାଧୁର୍ଯ୍ୟ ତାର ମନ ପ୍ରାଣକୁ ସୁରଭିତ କରିଛୁ । ପ୍ରକୃତିର ବିବିଧ ବିମୋହନ ରୂପ ସମ୍ଭାର ତା'ର ପ୍ରାଣରେ ମାଦକତା ଭରିଦେଇଛୁ । ସେ ଭାବାବିଷ୍ଟ ହୋଇ ଭ୍ରମରକୁ କହୁଛୁ

"ଚନ୍ଦ୍ର ଉଦୟ ହୋଇବା ବେଳେ
ରମ ମଲ୍ଲିକ ବସାଇ କୋଳେ
ଚୋଳ ଚୋଳ ତୋର ପ୍ରସନ୍ନ ବଦନ
ଧରି ଚବୁକ କହିବ ଖେଳେରେ ଭ୍ରମର ।
ବନେ ଅନାଇଁ ଫୁଲ ବିକାଶ
ବୋଲୁଥିବ ବାଳା ମନ୍ଦେ ହସ
ଏ ମାନଙ୍କୁ ଯେବେ ବଡ଼ ସିନା ସେହି
ତାର କାହିଁରେ ରହିବ ଯଶରେ ଭ୍ରମର"

ଋତୁଲେଖା କାବ୍ୟର ଊନବିଂଶ ଗୁଚ୍ଛଟି ଏକ ଅନନ୍ୟ ସାଧାରଣ ଗୁଚ୍ଛ । ସମଗ୍ର କାବ୍ୟର ଏହା ସର୍ବୋତ୍କୃଷ୍ଟ ଅଂଶ ପରି ମନେ ହୁଏ । ଭାଷା, ଭାବ, ସାରଲ୍ୟ, ପ୍ରକାଶ ଭଙ୍ଗୀ, କଳ୍ପନା ଗୁରୁତ୍ୱ ପ୍ରତ୍ୟେକ ଦିଗରୁ ଏହି ନବଘନ ଦୂତ ଗୁଚ୍ଛଟି ପଟାନ୍ତର ହୀନ । ଏହା 'ମେଘଦୂତ' ଦ୍ୱାରା ପ୍ରଭାବିତ ହେଲେ ମଧ୍ୟ ଅନନ୍ୟ ସାଧାରଣ ଓ ସ୍ୱକୀୟ ମହିମାରେ ମହିମାନ୍ୱିତ । ଅନୁଭବର ଅସାଧାରଣ ତ୍ୟାଗରେ ତଥା ସ୍ୱକୀୟ୍ୟପ୍ରୀତିର ରସାଣରେ ରସାଣିତ । ନବୀନ ମାନଙ୍କ ପରିପ୍ରକାଶର ସ୍ୱଚ୍ଛ ମୁକୁରଭୁଲ୍ୟ ଏ ଗୁଚ୍ଛ ଯେ କୌଣସି ଦେଶ ବା ଜାତି ପକ୍ଷରେ ଗର୍ବ ଓ ଗୌରବ ବୋଧର ସ୍ମାରକୀ ହୋଇ ରହିବ । ବର୍ଷାର ଘନ ଆଶ୍ଳେଷରେ ଧରଣୀ ରାଣୀ ରୋମାଞ୍ଚିତ ଓ ସ୍ୱପ୍ନ ବିଭୋର ହେବା ସମୟରେ ବିରହୀ ନାୟକର ମାନସ ପଟରେ ତାହା କ୍ଳାନ୍ତି ଦାୟକ ଅବସାଦକର ଓ ମର୍ମଭେଦୀ ରୂପରେ ଦେଖା ଦେଇଛି । ସଞ୍ଚରିତ ନବଘନ ଦର୍ଶନରେ କାଳିଦାସଙ୍କ ଯକ୍ଷପରି ପ୍ରାଣ ପ୍ରିୟା ପାଶକୁ ଅନ୍ତରର ବାର୍ତ୍ତା ପ୍ରେରଣ କରିଛି । 'ମେଘଦୂତ' ସହ ଏହାର ଅନେକ ପଦ ଭାବଦୃଷ୍ଟିରୁ ତୁଳନା କରାଯାଇ ପାରେ । ସଂକ୍ଷେପରେ କେତେଗୋଟିର ଉଦାହରଣ ଦିଆଯାଇ ପାରେ । ବିରହୀ ଯକ୍ଷ ମେଘକୁ କହିଛି, "ମୋ ପ୍ରିୟାର ମୁଖଟି ତାର ହାତ ପାପୁଲି ଉପରେ ଥିବ । ଅତ୍ୟଧିକ କାନ୍ଦିବା ଫଳରେ ଚକ୍ଷୁ ଫୁଲି ଯାଇଥିବ । ନିଶ୍ୱାସ ବାୟୁର ଉଷ୍ଣତାରେ ଅଧର ଭିନ୍ନ ବର୍ଣ୍ଣ ଧାରଣ କରିଥିବ, କେଶ ଆଲୁଳାୟିତ ହୋଇ ମୁଖ ଉପରକୁ ଢାଙ୍କି ପଡ଼ିଥିବ । ଫଳରେ ମୁଖଟି ସମ୍ପୂର୍ଣ୍ଣ ଭାବେ ଦିଶୁନଥିବ ।

ହେ ମେଘ ! ତୁମେ ଚନ୍ଦ୍ର ଉପରେ ଆବରଣ ହୋଇଗଲେ ଚନ୍ଦ୍ର ଯେପରି ନିଷ୍ପ୍ରଭ ହୋଇଯାଏ ମୋ ପ୍ରିୟାର ମୁଖଟି ସେହିପରି ଦୁର୍ଦ୍ଦଶାଗ୍ରସ୍ତ ହୋଇ ଯାଇଥିବ ।

"ନୂନଂତସ୍ୟାଃ ପ୍ରବଳ ରୁଦିତୋଚ୍ଛୂନ ନେତ୍ରଂ ପ୍ରିୟାୟା
ନିଶ୍ୱାସନାମଶିଶିର ତୟା ଭିନ୍ନବର୍ଣ୍ଣାଧରୋଷ୍ଠମ୍
ହସ୍ତଂ ନ୍ୟସ୍ତଂ ମୁଖମସକଳ ବ୍ୟକ୍ତିଲମ୍ବାଳକତ୍ୱା–
ଦିନ୍ଦୋର୍ଦୈନ୍ୟଂ ତ୍ୱଦନୁସରଣ କ୍ଲିଷ୍ଟକାନ୍ତେର୍ବିଭର୍ତ୍ତି

(ଉତ୍ତରମେଘ ୨୪ ଶ୍ଳୋକ)

ଠିକ ସେହିପରି ବିରହୀ ଭଞ୍ଜନାୟକ କହନ୍ତି–

"ଚନ୍ଦ୍ରିକୁ ମୋରଧନ ବୋଲି ତାହାକୁ ଘନ
ଏତେ ଲକ୍ଷଣ ଥିବ ବନ୍ଧ
ଦ୍ୱିତୀୟା ଶଶିପରି ଦିଶୁଥିବ ଯେ ତୋରି
କ୍ଷୀଣ ପାଣ୍ଡୁର ଅଙ୍ଗ ବନ୍ଧରେ ନବଘନ
ଏତେ ଥିବ ଭୂଷଣ ହୋଇ, ତାଳପତ୍ର ଅତୁଲ୍ୟ ଦୁଇ
ମୃଣାଳ ମାଳେ ଜପ କରିପ୍ରୀତି କଲାପ
ଯେ ପତ୍ର ଶେଯେ ଥିବ ଶୋଇ"

(ଛାନ୍ଦ ୧୩ / ୧୯)

ମାନସିକ ଦୁଃଖରେ କ୍ଷୀଣ ହୋଇ ସେ ବିରହ ଶଯ୍ୟାର ଗୋଟିଏ କଡ଼କୁ ଶୋଇଥିବ । ତେଣୁ ପୂର୍ବାଦିଗ୍‌ବଳୟ ତଳେ କଳାଏ ମାତ୍ର ଅବଶିଷ୍ଟ ଥିବା ଚନ୍ଦ୍ର ଲେଖାପରି ଦେଖାଯାଉଥିବ । ଆଗେ ସେ ମୋ ସହିତ ଇଚ୍ଛାରତିରେ ଯେଉଁ ରାତ୍ରିକୁ ମୁହୂର୍ତ୍ତେ ପରି କଟାଉଥିଲା ବର୍ତ୍ତମାନ ସେହି ରାତ୍ରି ତାକୁ ସୁଦୀର୍ଘ ଜଣାପଡ଼ୁଥିବ ଏବଂ ସେ ଉଷ୍ଣ ଅଶ୍ରୁ ବର୍ଷଣ କରି କରି ତାହାକୁ ଅତିବାହିତ କରୁଥିବ ।

"ଆଧିକ୍ଷାମାଂ ବିରହ ଶୟନେ ସନ୍ନିଷଣ୍ଣୈକ ପାର୍ଶ୍ୱାଂ
ପ୍ରାଚୀମୂଲେ ତନୁମିବ କଳାମାତ୍ର ଶେଷାଂ ହିମାଂଶୋଃ
ନୀତାରାତ୍ରିଃ କ୍ଷଣଇବମୟା ସାର୍ଦ୍ଧମିଚ୍ଛାରତୈର୍ଯା
ତାମେବୋଷ୍ଣୈର୍ବିରହମହତୀ ମଶ୍ରୁଭି ର୍ଯାପୟନ୍ତୀମ୍

(ଉତ୍ତରମେଘ ୨୯ ଶ୍ଳୋକ)

ଭଞ୍ଜ କାବ୍ୟ ନାୟକ ଦରଦୀ ହୃଦୟରେ କହନ୍ତି–

"ତାକୁ ବୟସ ଯାକ    ସହ୍ୟ ନୁହେଁ ଅଧିକ
ଏ କାଳେ ପଡ଼ିଲା କ ଦଣ୍ଡ
ଶୋଇଲା ଅବନୀରେ    ନେତ୍ର ପୂରିଲନୀରେ
ରଖିଥିବ ସେ କରେ ଗଣ୍ଡ ହେ ନବଘନ

ଅଲଗା ହେଲେ ହୃଦୁଁ ହୃଦ
ତାକୁ ଯେ ନ ଆସଇ ନଦ

ଏବେ ସେ କି କରବ, ତହିଁ ନଶି ସାରବ
ଅଭେଦ ପ୍ରୀତି ହେଲା ଭେଦ"

ମେଘଦୂତର ସେହି ବିଖ୍ୟାତ ଶ୍ଳୋକରେ ଯକ୍ଷ କହୁଛି ସେହି ଘରେ ଯେଉଁ କୃଶାଙ୍ଗୀ ନବଯୌବନା ତରୁଣୀଟିଥିବ, ଯାହାର ଦନ୍ତପନ୍ତି ଫୁଲ କଢି ଅକୁଢର, ଅଧରଓଷ୍ଠ ପାଚିଲା ବିମ୍ବଫଳପର, କଟିଦେଶ କ୍ଷୀଣ, ଚାହାଣି ଭୟଭୀତା ହରିଣୀ ଚାହାଣି ପର, ନାଭି ଗମ୍ଭୀର, ଗୁରୁ ନିତମ୍ବର ଭାର ଯୋଗୁ ମନ୍ଥର, ଅଥଚ ଯାହାକୁ ପୃଥୁଳ ସ୍ତନ ଦୁଇଟି ଟିକିଏ ନୁଆଁଇ ଦେଇଥାଏ, ଯିଏକି ଯୁବତୀ ଜଗତରେ ବିଧାତାଙ୍କର ସତେ ଯେପରି ପ୍ରଥମ ସୃଷ୍ଟି-।

"ତନ୍ୱୀ ଶ୍ୟାମା ଶିଖରି ଦଶନା ପକ୍ୱ ବିମ୍ବାଧରୋଷ୍ଠୀ
ମଧ୍ୟେକ୍ଷାମା ଚକିତ ହରିଣୀ ପ୍ରେକ୍ଷଣା ନିମ୍ନନାଭିଃ
ଶ୍ରୋଣୀଭାର ଦଲସଗମନା ସ୍ତୋକନମ୍ରା ସ୍ତନାଭ୍ୟାଂ
ଯାତନସ୍ୟାଦ୍ ଯୁବତି ବିଷୟେ ସୃଷ୍ଟିରାଦ୍ୟେବଧାତୁଃ

(ଉତ୍ତରମେଘ ୨୨ ଶ୍ଳୋକ)

ଭକ୍ତ ନାୟକର ଅନୁରୂପ ପଦ ହେଉଛି-

ପ୍ରୀତରେ ପକ୍ଷୀମଲ ପ୍ରୀତରେ ଦ୍ରବେଶିଲା
ମୁହିଁ ତୋ ପ୍ରୀତି ପରାଧୀନା

ପ୍ରୀତି ପରମଧନ ପାଇ ମୁଁ ହେଲି ଭିନ୍ନ
କଦୋଷେ ହେଲା ଏ ଯାତନାରେ ନବଘନ

ଯାହାସମ ସୁନ୍ଦର ଯଣେ, ତ୍ରିପୁରେ ନାହିଁ ଆଉ ଜଣେ
ତାକୁ ପାଇ ହରାଇ, ମୁଁ ସତ ଯାଉ ନାହିଁ
କାହିଁକି ରହୁଛି ପରାଣେ

(ସ୍ତ୍ର ୧୯ । ୧୦)

ସେହିପରି ଅଳ୍ପ ବହୁତେ ସାମ୍ୟଥିବା ଏକାଧିକ ପଦ ତୁଳନା ସ୍ୱରୂପ ଉଦ୍ଧାର କରାଯାଇପାରେ ।

ଅନେକ ସମୟରେ ମହାକବି ମାନଙ୍କ ଭାବନା ଏକ ପ୍ରକାରର ହୋଇଥାଏ ଓ ବେଳେ ବେଳେ ଜଣକର ପ୍ରଭାବରେ ଅନ୍ୟ ଜଣେ ପ୍ରଭାବିତ ମଧ୍ୟ ହୋଇଥାଏ । ଓଡ଼ିଆ ଦୂତକାବ୍ୟ ଧାରାରେ ସେହିପରି ଅସଂଖ୍ୟ ସମାନ ଭାବନାଯୁକ୍ତ ପଦ ମିଳିପାରିବ । ଏଠାରେ ଲୋକନାଥ ବିଦ୍ୟାଧର ଓ ଉପେନ୍ଦ୍ର ଭଞ୍ଜଙ୍କର ଦୁଇଟି ପଦ ସୁଧୀବର୍ଗଙ୍କ ତୁଳନା ପାଇଁ ଦିଆଯାଉଛି ଏକ ବିଷୟ, ଏକଭାବ, ଛନ୍ଦ, ଭାଷା ଓ ଅଳଙ୍କାର ଛଟା ମଣ୍ଡିତ ପଦଗୁଡ଼ିକ ହେଉଛି–

"କେଉଁ ସଜନୀତାଙ୍କୁ କହିବ ବୋଧବାଣୀ କାହାର ବୋଧ ସେ ଘେନିବ
ଯେତୁ କରିବ ସେତୁ ମୋହର ପରି କରି
ତାହାର ମନ ନଜାଣିବ ହେ ଜଳଧର
ଦଣ୍ଡେଯେ ପାଶ ନ ଛାଡ଼ଇ ମୁଖ ମଳିନ ନ ସହଇ
ନରନାଥ ନନ୍ଦନା ଏବେ ଏତେ ବେଦନା
ପାଇବ ବୋଲି ନଜାଣଇ-

(ଲୋକନାଥ-ଚନ୍ଦ୍ରକଳା ୧୪ / ୧୪)

ପ୍ରତେ ନଥିଲି ଜୀବ ଥାଉଁ ବିଚ୍ଛେଦ ହେବ
ବୋଲି ମୋ ପରାଣ ଈଶ୍ୱରୀ
ଭୟ ନଥିଲି କାମ ହୋଇବ ବୋଲି ବାମ
ଦଇବ କଲା ଏତେ ସଙ୍ଗରେ ନବଘନ
ମୋ ବେଦନାରୁ ତା ବେଦନା, ଅଧିକ ହୋଇଥିବ ସିନା
ମୋହର ପାଶେ ଚିତ୍ତ ହୋଇଥିବ ଚରିତ
ତେଣୁ ସେ ପ୍ରୀତି ଧର୍ମାଧୀନା–

(ଉପେନ୍ଦ୍ର-ରସଲେଖା ୧୯ / ୫)

ଶୁଦ୍ଧ ଦାମ୍ପତ୍ୟ ପ୍ରେମର ପୂଜାରୀ ରାଜପୁତ୍ର ଉପେନ୍ଦ୍ର ଉତ୍ତମ ରୂପେ ଅବଗତ ଥିଲେ ଯେ ଏକନିଷ୍ଠ ଦାମ୍ପତ୍ୟ ପ୍ରେମହିଁ ସୁସ୍ଥ ସମାଜ ଗଠନ ଓ ସୁସ୍ଥ ଜୀବନ ଯାପନ ପାଇଁ ଅପରିହାର୍ଯ୍ୟ । ବିଳାସ ବ୍ୟଭିଚାର ଯୁକ୍ତ ସମାଜ ଅଚିରେ

ଧ୍ୱଂସ ପ୍ରାପ୍ତ ହୁଏ । ତାଙ୍କର ଲେଖାବଳୀରେ ସେ ସଂଯମ ଓ ଶୃଙ୍ଖଳା ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଉଜନବଂଶ ଗ୍ରନ୍ଥରେ ଦାମ୍ପତ୍ୟ ପ୍ରେମର ଅନେକ ମହନୀୟ ଚିତ୍ର କବି ପ୍ରଦାନ କରିଅଛନ୍ତି ।

"ତା ପାଶୁ ହେଲି ଯାକୁ ଭିନ୍ନ ସରଇ ନାହିଁ ନିଶିଦିନ
ଯେଣେ ଗୃହିଲେ ସେହି ଦଣ୍ଡଇ ନିଦ୍ରା ନାହିଁ
କେମନ୍ତେ ଦେଖିବି ସ୍ୱପନ" (୧୯ । ୧)

ନାଥଙ୍କ ସାରୁ ଏକାଠିରେ ଚନ୍ଦନ ନ ଦେନ୍ତି ଶରୀରେ
ତନୁ ଭିନ୍ନ ବିଗୁରି ସେହି ମୁଁ ଜୀଇଁକରି
ରହିଲି ଗିରି ବନାନ୍ତରେ (୧୯ । ୭)

ବିଗରୁଥିବି ପରିଚଉ ବଡ଼ ଦାରୁଣ ମୋର କାନ୍ତ
ଯାହାଙ୍କୁ କୋଳୁ ତଳେ, ଶୋଇନଥିଲି ତଳେ
ତାଙ୍କୁ ମୁଁ ନ ଦେଲି ଉଦନ୍ତ (୧୯ । ୧୧)

ମୁଁ ସପାଣି ପାଶୋରି ପାରିବି ନା କିଶୋରୀ
ଅଛି ମୋ କେଉଁ ଦାମ୍ପପଣ (୧୯ । ୧୮)

ରହିଲି ଅବା ଏତେଦୂରେ ଦାରୁଣ ଦଇବ ବଶରେ
ଏକା କୁମୁଦ ତୋଷି ପାରନ୍ତି ଦିନେ ଶଶୀ
ବନ୍ଧୁ ମୋ ସେହି ପରକାରେ (୧୯ । ୧୯)

ଏପରି ଅନେକ ଉଦାହରଣ ପ୍ରଦାନ କରାଯାଇପାରେ ଯହିଁରୁ ଉପେନ୍ଦ୍ରଙ୍କ ଅସାଧାରଣ କାବ୍ୟ ଗୌରବର ସାର୍ଥକ ପରିଚୟ ମିଳିପାରିବ । ସେଗୁଡ଼ିକ ଅନୁଭୂତି ପ୍ରସୂତ ଓ ଉଚ୍ଚ କାବ୍ୟଗୁଣ ସମନ୍ୱିତ । ନିତ୍ୟନୂତନ ଏହି କାଳଜୟୀ ମାଧୁରୀ ଜୀବନ ରସରେ ରସାଣିତ ଭାରତୀୟ ସଂସ୍କୃତିର ମହନୀୟ ପରିପ୍ରକାଶ ସହିତ ସୁସ୍ଥ ସମାଜ ଗଠନର ପ୍ରଚୁର ପ୍ରେରଣା ତାହା ମଧ୍ୟରେ ରହିଅଛି । ଜୀବନକୁ ହେୟ ବା ଅବହେଳିତ ଜ୍ଞାନ ନକରି ତ୍ୟାଗ ମଧ୍ୟରେ ଭୋଗର ପ୍ରତିଷ୍ଠା କରାଇ ଏ ଜାତିକୁ ଏକ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିଅଛନ୍ତି । ଜୀବନରେ ଭୋଗର ଯେ ଏକ ସ୍ୱତନ୍ତ୍ର ସ୍ଥିତି ରହିଛି ତାହା ଦୃଢ଼ ସ୍ୱରରେ କହି ବଞ୍ଚିରହିବାର ସ୍ୱାଦକୁ ଆସ୍ୱାଦନ କରାଇଅଛନ୍ତି । ଏ ସ୍ୱାଦ ଆସ୍ୱାଦନ ପାଇଁ ଯେଉଁ ଶ୍ରମ, ଶକ୍ତି, ସାହସ, ସଦିଚ୍ଛା ଓ ସହୃଦୟତା ଦରକାର ତାହା ଅନ୍ତରରେ ଥିବା ବାଞ୍ଛନୀୟ । ସେ ସ୍ୱାଦ ମଧ୍ୟରେ ହୁଏତ କିଛି ଖାଦ ରହିଛି । ରହିବା ସ୍ୱାଭାବିକ । ବିଶ୍ୱର ମହାକବି ମାନଙ୍କ

ରଚନାରେ ତାହା ଦେଖା ଯାଇଥାଏ । କେବଳ ସେହି ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରିବା, ଏକ ଦେଶଦର୍ଶୀ ତୁଲ୍ୟ ହେବ । ସହୃଦୟତା ନଥିଲେ ତାହା ସମ୍ଭବ ହେବ ନାହିଁ । ଭଞ୍ଜ ସାହିତ୍ୟ ସାଗର ମଧ୍ୟକୁ ପ୍ରବେଶ ନକରି ବା କରିବାର ସାମର୍ଥ୍ୟ ନଥାଇ, କୂଳରେ ଉପବେଶନ କରି ସାଗର ଗର୍ଭକୁ ବାଲୁକା ନିକ୍ଷେପ କଲେ ସାଗରର କିଛି ଲାଭ କ୍ଷତି ହୁଏ ନାହିଁ, ଆମର କେବଳ ବୃଥା ଶ୍ରମ ହୁଏ । ସେହିମାନଙ୍କ ଉଦ୍ଦେଶ୍ୟରେ କବି କହିଛନ୍ତି-

ବିଜ୍ଞ ସୁଜନ ରଞ୍ଜନ ପଦମାନ ମାନସେ କରିବ ବିଚାର
ଅଲବ୍ଧବ୍ୟୁତ୍ପତ୍ତି ଉତ୍ପତ୍ତି ନରପଶୁ ବାନର ମୁଷ୍ଟି ପରକାର
ଛୁଡ଼ନ୍ତୁ, ନାହିଁ ଆମ୍ଭେ ବଡ଼ ଏ ଗର୍ବ
ଏ ଗୀତ ସବିତା ପଦ ପ୍ରଭାବରେ ତମସ ତାମସ ନାଶିବ

(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୨୮ ଛାନ୍ଦ)

ସମସ୍ତ ଆସିଛୁ ଦେଶଜାତି ଓ ଭାଷାର ରକ୍ଷାକାର୍ଯ୍ୟ ଏହି ମହାକବିଙ୍କ ଗୌରବର ଗାନରେ ଶତମୁଖ ହୋଇ ତାଙ୍କୁ ଉଚିତ ମର୍ଯ୍ୟାଦା ପ୍ରଦାନ କରିବା । ସେ ହେଉଛନ୍ତି ଏ ମହାନ ଜାତିର ଗର୍ବ ଓ ଗୌରବର ସ୍ମାରକୀ, ପ୍ରେରଣାର ଉତ୍ସ ଓ ଆଶାର ସଙ୍କେତ ।



ପ୍ରାଣନାଥ କଲେଜ,
ଖୋର୍ଦ୍ଧା, ପୁରୀ ।

# ଶୃଙ୍ଗାର ରସପୃଷ୍ଟ : ରସଲେଖା

॥ ଡ଼ଃ ଶ୍ୟାମସୁନ୍ଦର ଡାଂଗୁଆ ॥

---

ରସଲେଖା କବି ସମ୍ରାଟ ଉପେନ୍ଦ୍ର ଭଂଜଙ୍କର କଳ୍ପନା ପ୍ରସୂତ ଏକ ଅତୁଳନୀୟ ଆଳଙ୍କାରିକ ଗୀତ କାବ୍ୟ । ଏହା ଏକ କାଳ୍ପନିକ ବିଷୟ ବସ୍ତୁ ଉପରେ ଆଧାରିତ । କ୍ଷୁଦ୍ର କ୍ଷୁଦ୍ର ବାଇଶିଟି ଗୀତର ସମାହାରରେ କାବ୍ୟଟି ରଚନା କରାଯାଇଛି । ନାୟକ-ନାୟିକାଙ୍କ ଶୈଶବ, ଯୌବନ, ପ୍ରେମ, ବିବାହ, ବିରହ ଓ ପୁନର୍ମିଳନକୁ ନେଇ କାବ୍ୟଟି ପୂର୍ଣ୍ଣତା ଲାଭ କରିଛି । କଳ୍ପନା ପ୍ରସୂତ ହେଲେ ହେଁ ଚରିତ୍ରାବଳୀ ବିଶେଷତଃ ନାୟକ-ନାୟିକାଙ୍କ ମିଳନ, ବିରହାଦି ବିଭିନ୍ନ ଛାନ୍ଦ-ଗୁଡ଼ିକରେ କାବ୍ୟଟି ସଜୀବ ହୋଇ ଉଠିଛି । ପୁନଶ୍ଚ କାବ୍ୟଟି ଶୃଙ୍ଗାର ରସାଶ୍ରିତ ହୋଇଥିବାରୁ ଏଥିରେ ବ୍ୟବହୃତ ଭାଷା ମାତ୍ରାଧିକ ଅଳଙ୍କାରର ଆଶ୍ରୟ ନେଇଛି । ଉପେନ୍ଦ୍ର ଭଂଜଙ୍କ ସମସ୍ତ କାବ୍ୟରେ ଅଳ୍ପାଧିକେ ପ୍ରଣୟ ଓ ଶୃଙ୍ଗାରର ପ୍ରାଧାନ୍ୟ ପରିଲକ୍ଷିତ ହୋଇଥାଏ । ଏଣୁ ତାଙ୍କ ରଚିତ କାବ୍ୟଗୁଡ଼ିକୁ 'ଅଶ୍ଳୀଳତା ଦୋଷ ଯୁକ୍ତ' କାବ୍ୟ ବୋଲି କେତେକ ସମାଲୋଚକ ତୀବ୍ର ମନ୍ତବ୍ୟ ପ୍ରକାଶ କରିଥାନ୍ତି । ବର୍ତ୍ତମାନ ଆଲୋଚନା କରାଯାଉ ଯେ ଓଡ଼ିଆ ସାହିତ୍ୟରେ ରୀତିଯୁଗ ପୂର୍ବରୁ ଥିବା ପଞ୍ଚସଖା ଯୁଗ ବା ପୁରାଣ ଯୁଗର ପରଂପରାକୁ ଅବଜ୍ଞା କରି କବିସମ୍ରାଟ କାହିଁକି ଏପରି ପ୍ରେମ, ଶୃଙ୍ଗାର ଭିତ୍ତିକ କାବ୍ୟର ରଚୟିତା ହେବାକୁ ପସନ୍ଦ କଲେ ।

ଏହି ସମସ୍ୟା ଉପରେ ପଣ୍ଡିତ ନୀଳକଣ୍ଠଙ୍କ ମତ ଅଧିକ ଗ୍ରହଣ ଯୋଗ୍ୟ ମନେ ହୁଏ । ଓଡ଼ିଶାରେ ରାଧାକୃଷ୍ଣ ଭକ୍ତିତତ୍ତ୍ୱ ପ୍ରଚଳିତ ହେବା ପରେ କେବଳ ପଣ୍ଡିତ, ବିଦ୍ୱାନ ବ୍ୟକ୍ତିଗଣ ଏହି ଦେହାତୀତ ପ୍ରେମର ନିଗୂଢ଼ ରହସ୍ୟ ବୁଝିବାକୁ ସମର୍ଥ ହୋଇ ପାରିଥିଲେ । କିନ୍ତୁ ଜନସାଧାରଣ ଏହାକୁ ସାଧାରଣ 'ରମଣ' ବା ଦୈହିକ ପ୍ରେମ ଭାବରେ ଗ୍ରହଣ କଲେ । ରାଧାକୃଷ୍ଣ ଭକ୍ତି ମୂଳକ ଧର୍ମ ପ୍ରଚ୍ଚରର

ଅଭିମୃଶ୍ୟ ଯାହା ହେଉନା କାହିଁକି ଏହି ସାଧାରଣ ଜନତାଙ୍କ ଉପରେ କୁ ପ୍ରଭାବ ପକାଇଥିଲ ଓ ପରିଣାମ ସ୍ୱରୂପ ରାଧାକୃଷ୍ଣ-ଭକ୍ତିକ ଅବୈଧ ପ୍ରେମଲୀଳାର ଦ୍ୱାର ଖୋଲି ଯିବାକୁ ଲାଗିଲା । କେତେକ କୃଷ୍ଣ ଭକ୍ତ ସ୍ୱକୀୟା ପ୍ରୀତି ବଦଳରେ ପରକୀୟା ପ୍ରୀତିକୁ ଶ୍ରେଷ୍ଠ ବିବେଚନା କଲେ । ଫଳରେ ଲୋକଙ୍କ ମଧ୍ୟରେ ପରକୀୟା ଗାନ ପ୍ରଚଳିତ ହେଲା, ଯାହା ନୈତିକତାର ଭିତ୍ତିକୁ ଦୋହଲାଇଦେଲା । ଜନସାଧାରଣଙ୍କ ମନରୁ ଏ ପ୍ରକାର ମନ୍ଦ, ଘୃଣ୍ୟ ଧାରଣା ଦୂର କରି ପରକୀୟା ବିଭିଷିକାରୁ ସମାଜକୁ ରକ୍ଷା କରିବାପାଇଁ ଭଂଜଙ୍କ ସାଧନା ଅପରିସୀମ ଥିଲା । ସେ ନିଜ ପ୍ରେମ କାବ୍ୟଗୁଡ଼ିକୁ ମାଧ୍ୟମ କରି ସ୍ୱକୀୟା ପ୍ରୀତିର ମହତ୍ତ୍ୱ ପ୍ରତିଷ୍ଠା ଓ ପ୍ରଚାର କରିବାକୁ ଚେଷ୍ଟା କଲେ । ଦୁର୍ବଳ ସାମାଜିକ ଓ ନୈତିକ ପରଂପରା ସଂହତିକୁ ସୁଦୃଢ଼ କରିବାପାଇଁ ସେ ଲେଖନୀ ଚାଳନା କଲେ । ସ୍ୱକୀୟା ପ୍ରୀତିର ଆଦର୍ଶ ଭଂଜଙ୍କର ପରିକଳ୍ପିତ ଏକ ନୈତିକ ଆଦର୍ଶ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଭଂଜ, ସ୍ୱକୃତ ଯେଉଁ ଯେଉଁ କାବ୍ୟରେ ଶୃଂଗାର ରସର ପ୍ରୟୋଗ ଘଟାଇଛନ୍ତି, ତାହା ମୁଖ୍ୟତଃ ଦାଂପତ୍ୟ ମିଳନ ମାଧ୍ୟମରେ ପ୍ରକାଶିତ । ବୈଦେହୀଶ ବିଳାସରେ ରାମ-ସୀତାଙ୍କ ମିଳନ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଓ ପୁଷ୍ପକେତୁ ରାଜାଙ୍କ ମିଳନ, ଲାବଣ୍ୟବତୀରେ ଲାବଣ୍ୟବତୀ ଓ ଚନ୍ଦ୍ରଭାନୁର ମିଳନ, ଏବଂ ଆଲୋଚ୍ୟ କାବ୍ୟ ରସଲେଖାରେ ରସଲେଖା ଓ ବିଶ୍ୱଭୂତିର ଦାମ୍ପତ୍ୟ ମିଳନରେ ଏହା ସୁସ୍ପଷ୍ଟ ।

କାବ୍ୟରେ ରସୋତ୍ତୀର୍ଣ୍ଣତା ସଂପର୍କରେ ଭରତ ମୁନି ଏକ ମହତ୍ତ୍ୱପୂର୍ଣ୍ଣ ସୂତ୍ରରେ କହିଥିଲେ "ତତ୍ର ବିଭାବାନୁଭାବ ବ୍ୟଭିଚାରୀ ଭାବ ସଂଯୋଗାଦ୍ରସ ନିଷ୍ପତ୍ତିଃ" ଅର୍ଥାତ୍ ବିଭାବ, ଅନୁଭାବ ଓ ବ୍ୟଭିଚାରୀ ଭାବର ସଂଯୋଗରୁ ରସର ନିଷ୍ପନ୍ନ ହୁଏ । ଏହି ରସ ସର୍ବଥା ଅଲୌକିକ, ବ୍ରହ୍ମାନନ୍ଦ ଆସ୍ୱାଦନ ସ୍ୱରୂପ ପରମ ଆହ୍ଲାଦଦାୟକ । ଏହି ରସ ନବବିଧ ଓ କେତେକଙ୍କ ମଧ୍ୟରେ ଦଶବିଧ ମଧ୍ୟ । ଏହି ରସମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ଆଦ୍ୟରସ ହିଁ ଶୃଂଗାର । ମନୁ ଓ ଶ୍ରଦ୍ଧାର ସଂଯୋଗରୁ ସୃଷ୍ଟିର ପ୍ରାରମ୍ଭ ଘଟିଥିଲା । ଭାରତୀୟ ବେଦ, ଉପନିଷଦ ପୁରାଣ ସାହିତ୍ୟ ମାନଙ୍କରେ ଶୃଙ୍ଗାରୀ ଭାବନାକୁ ଶାସ୍ତ୍ରୀୟ ସ୍ୱୀକୃତି ଦିଆଯାଇ ଶୃଙ୍ଗାର ରସକୁ ଆଦ୍ୟରସ ଭାବରେ ଗ୍ରହଣ କରାଯାଇଛି । ଶୃଙ୍ଗାର ରସ ମୁଖ୍ୟତଃ ୨ ଭାଗରେ ବିଭକ୍ତ । ସମ୍ଭୋଗ ଶୃଙ୍ଗାର ଓ ବିପ୍ରଲମ୍ଭ ଶୃଙ୍ଗାର ।

ସମ୍ଭୋଗ ଶୃଙ୍ଗାର :—ନାରୀ ପୁରୁଷର ମିଳନ ଫଳରେ ହୁଏ ସମ୍ଭୋଗ ଶୃଙ୍ଗାର । ଶୃଙ୍ଗାର ରସର ସ୍ଥାୟୀଭାବ ହେଲ ରତି, ରତିର ବର୍ଦ୍ଧିତ, ବିଶେଷିତ ରୂପକୁ ରମଣ, ମୈଥୁନ ବା ସଂଭୋଗ କୁହାଯାଏ । ଏହି ସମ୍ଭୋଗ ଶୃଙ୍ଗାର ମୁଖ୍ୟତଃ ତିନି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ପ୍ରଥମେ ରତିରାଗ, ଦ୍ୱିତୀୟରେ ରତି କ୍ରୀଡ଼ା ଓ ସର୍ବଶେଷରେ ରତ୍ୟାନ୍ତେ.... । ସାଧାରଣ ରମଣ ସମ୍ବନ୍ଧୀୟ ପୂର୍ବକର୍ମ ଯଥା ପ୍ରିୟବଚନ, ଆଲିଙ୍ଗନ, ଚୁମ୍ବନ, କୁଚମର୍ଦ୍ଦନ, ନଖକ୍ଷତ, ଦନ୍ତକ୍ଷତ ଇତ୍ୟାଦି ରତି ରାଗର ଅନ୍ତର୍ଭୁକ୍ତ ଏ ସମୟରେ ନାୟିକାଠାରେ ଶିହରଣ, କମ୍ପନ, ସୀତ୍କାର ଆଦି ଦେଖାଯାଇଥାଏ । ଏସବୁ ଆନୁପୂର୍ବିକ କର୍ମ ପରେ ରତିକ୍ରୀଡା ବା ସଂଗମ ହୋଇଥାଏ ଏବଂ ସର୍ବଶେଷରେ ରତାନ୍ତେରେ ଯେଉଁ ଲକ୍ଷଣ ପ୍ରକାଶ ପାଏ ତାହି ହେଲ ଅନିଦ୍ରା, ଅବସ, ବସନପିନ୍ଧା ଇତ୍ୟାଦି ।

ବିପ୍ରଲମ୍ଭ ଶୃଙ୍ଗାର :—ନାରୀ ପୁରୁଷର ବିଚ୍ଛେଦରେ ଜାତ ହୁଏ ବିପ୍ରଲମ୍ଭ ଶୃଙ୍ଗାର । ଯେତେବେଳେ ନାୟକ ନାୟିକା ମିଳନ ନିମିତ୍ତ ଚିତ୍ତ ଆକୃଷ୍ଟ ହୋଇଥାଏ । କିନ୍ତୁ ଅଭିଷ୍ଟ ସାଧନ ହୋଇପାରେ ନାହିଁ ସେତେବେଳେ ତାହା ବିପ୍ରଲମ୍ଭ ନାମରେ ଅଭିହିତ ହୋଇଥାଏ । ଏହା ଶ୍ରେଷ୍ଠ ଶୃଙ୍ଗାର ରସ ରୂପେ ଖ୍ୟାତ । ଏଥିରେ ଯେଉଁ ଲକ୍ଷଣ ପ୍ରକାଶ ପାଏ ତାହା ହେଲ ଅସୂୟା, ଗ୍ଲାନି, ନିର୍ବେଦ, ଚିନ୍ତା. ସ୍ୱପ୍ନ, ଉନ୍ମାଦ ଇତ୍ୟାଦି ବିପ୍ରଲମ୍ଭ ଶୃଙ୍ଗାର ଚାରି ଭାଗରେ ବିଭକ୍ତ ୧- ପୂର୍ବରାଗ, ମାନ, ପ୍ରବାସ ଓ କରୁଣା । ନାୟକ ନାୟିକାଙ୍କ ପ୍ରଥମ ମିଳନ ପରେ ବିଚ୍ଛେଦ ଘଟିଲେ ଦେଖାଦିଏ ପୂର୍ବରାଗ ବିପ୍ରଲମ୍ଭ । ନାୟକ ଅନ୍ୟ ସ୍ତ୍ରୀ ସହିତ ସଂପୃକ୍ତ ହୋଇଯିବା ସଂକେତ ପାଇଲେ ନାୟିକାଠାରେ ଦେଖାଦିଏ ଅଭିମାନ ଓ ଇର୍ଷା । ଏବଂ ଏହି କାରଣରୁ ସୃଷ୍ଟି ହୁଏ ମାନ-ବିପ୍ରଲମ୍ଭ । ନାୟକ କାର୍ଯ୍ୟ, ଅଭିଶାପ ବା ଭୟରୁ ପ୍ରବାସରେ ବାସ କଲେ ସୃଷ୍ଟି ହୁଏ ପ୍ରବାସ-ବିପ୍ରଲମ୍ଭ । ନାୟକ ନାୟିକାଙ୍କ ବିଚ୍ଛେଦ ପରେ ଆଉ ମିଳନର ଆଶା ନ ରହିଲେ ତାହା ହୁଏ କରୁଣ ବିପ୍ରଲମ୍ଭ । କାବ୍ୟରେ ଏହି ବିପ୍ରଲମ୍ଭ ଶୃଙ୍ଗାର ମଧୁର ଭାବ ସୃଷ୍ଟି କରିଥାଏ ତେଣୁ ଧ୍ୱନ୍ୟା-ଲୋକରେ ଅଭିନବ ଗୁପ୍ତ ଏ ପ୍ରସଙ୍ଗରେ ବୈଶିଷ୍ଟ୍ୟ ପ୍ରଦର୍ଶନ କରି ସ୍ପଷ୍ଟ ଲେଖିଛନ୍ତି !

ସମ୍ଭୋଗ ଶୃଙ୍ଗାରାତ୍ ମଧୁରତରେ ବିପ୍ରଲମ୍ଭଃ
ତତୋଽପି ମଧୁରତମଃ କରୁଣଇତିଃ ।

ବର୍ତ୍ତମାନ ଉଭୟ ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର ସୂତ୍ରରେ ରସଲେଖାକୁ ଆଲୋଚନା କରାଯାଉ ।

ରସଲେଖା କାବ୍ୟର ସମଗ୍ର ଛାନ୍ଦ ସଂଖ୍ୟା ବାଇଶି, ଏହାର ଚତୁର୍ଦ୍ଦଶ ଛାନ୍ଦରୁ ହିଁ ଶୃଙ୍ଗାର ରସର ଆସ୍ୱାଦନ କରାଯାଇପାରେ । ଚତୁର୍ଦ୍ଦଶ ଛାନ୍ଦଟିରେ ସମୁଦାୟ ୬୩ ପଦରେ ରଚିତ । ପୂର୍ବବର୍ଣ୍ଣିତ ଅନୁସାରେ ଏହା ରତିରାଗ, ରତିକ୍ରୀଡ଼ା ଓ ରତ୍ୟାନ୍ତେ....ଇତ୍ୟାଦିରେ ପୂର୍ଣ୍ଣତା ଲଭ କରିଛି । ୧ ଠାରୁ ୧୭ ପଦ ପର୍ଯ୍ୟନ୍ତ ରସଲେଖାର ସଖୀ ମାନଙ୍କ ଛଳୋକ୍ତି, ପରିହାସୋକ୍ତି, ୧୭ ରୁ ୨୨ ପର୍ଯ୍ୟନ୍ତ ବିଶ୍ୱଭୂତିର ରସଲେଖା ଉଦ୍ଦେଶ୍ୟରେ ଚାଟୁବଚନ ଭଣିବା ପ୍ରସଙ୍ଗ, ୨୪ ଠାରୁ ୩୪ ପର୍ଯ୍ୟନ୍ତ ପଦରେ ଆଲିଙ୍ଗନ, ଚୁମ୍ବନ, ରସନାଗ୍ରହନ, କୁଚ ମର୍ଦ୍ଦନ, ନଖଦନ୍ତ କ୍ଷତ ଇତ୍ୟାଦି ରତିରାଗର ବର୍ଣ୍ଣନା, ୩୪ ଠାରୁ ୫୪ ପର୍ଯ୍ୟନ୍ତ ସର୍ବୋପରି ରମଣ କାଳର ବର୍ଣ୍ଣନା, ଏବଂ ପରିଶେଷରେ ରତ୍ୟାନ୍ତେ....ର ଚିତ୍ର ଜୀବନ୍ତ ଭାବେ ଫୁଟି ଉଠିଛି ।

ଚତୁର୍ଦ୍ଦଶ ଛାନ୍ଦର ଆଦ୍ୟ ପଦଗୁଡ଼ିକରେ କବି ପରଂପରା ନୀତି କେତେକ ନିୟମର ଉଲ୍ଲେଖ କରିଛନ୍ତି । ଶୁଭ ପରିଣୟ ସମାପନ ହେବାପରେ ରସଲେଖା ଓ ବିଶ୍ୱଭୂତି ଉଭୟଙ୍କର ବହୁ ଆକାଂକ୍ଷିତ ସ୍ୱପ୍ନ ସାକାର ହେବାକୁ ଯାଉଛି ଦାମ୍ପତ୍ୟ ଜୀବନର ଶୁଭାରମ୍ଭ କରିବାକୁ ଯାଉଥିବାରୁ ନବଦମ୍ପତିଙ୍କ ମନରେ ମଧୁଶଯ୍ୟା ରାତ୍ରିପାଇଁ ସ୍ୱତଃ ଇଚ୍ଛା ସୃଷ୍ଟି ହୋଇଛି, ମଧୁଶଯ୍ୟା ଗୃହରେ କୁମର ବିଶ୍ୱଭୂତି ରସଲେଖାର ଆଗମନକୁ ପ୍ରତୀକ୍ଷା କରିବସିଛି.... ଅପରପକ୍ଷରେ ରସଲେଖା ସଖୀ ମଣ୍ଡଳୀ ପରିବେଷ୍ଟିତା ହୋଇ କେଳି ସଦନ ଅଭିମୁଖେ ଗମନ କରୁଛି । ଏହି ସମୟରେ ସହଚରୀଗଣ ସେମାନଙ୍କ ପ୍ରିୟସଖୀ ରସଲେଖାକୁ ପରିହାସ ଛଳରେ କେତେକ ଉପଦେଶ ଦେଇଛନ୍ତି, ସେମାନଙ୍କ ମତରେ ରତିଗୃହରେ ପ୍ରବେଶ କରିବାପରେ ଯେତେବେଳେ କୁମର ବିଶ୍ୱଭୂତି ରସଲେଖାର ହାତଧରି ପଲଙ୍କ ନିକଟକୁ ନେଇଯିବେ, ସେତେବେଳେ ତାଙ୍କର ଚାଟୁବଚନରେ ହଠାତ୍ ପ୍ରଗଲ୍ଭ ହୋଇ ନପଡ଼ି ସେ କିଛି ସମୟ ନୀରବତା ଅବଲମ୍ବନ କରିରହିବ । ଏହିପରି ଭିନ୍ନଭିନ୍ନ ଉପମା ମାଧ୍ୟମରେ ଛଳୋକ୍ତି କରିବା ଅବସରରେ ରସଲେଖା ରତିମନ୍ଦିର ନିକଟରେ ପହଞ୍ଚିଛି ସହଚରୀଗଣ ନାୟକ ବିଶ୍ୱଭୂତିଙ୍କୁ ପରିହାସ କରି ରସଲେଖାକୁ କେଳି ସଦନରେ ଛାଡ଼ି ଦ୍ୱାରରୁଦ୍ଧ କରି ଫେରି ଯାଇଛନ୍ତି । ଏ ସମସ୍ତ ବର୍ଣ୍ଣନା କାମଶାସ୍ତ୍ରାନୁମୋଦିତ । ବୈବାହିକରଣ ବିଧି, ନାୟିକାମଣ୍ଡନ, ମଧୁଶଯ୍ୟା ଗୃହ ସଜ୍ଜୀକରଣ, ସୁସଜ୍ଜିତ ନାୟିକାକୁ ସଖୀମାନଙ୍କ ମେଳରେ ମଧୁଶଯ୍ୟା ଗୃହକୁ ପ୍ରେରଣ ....ଆଦି ।

ବର୍ତ୍ତମାନ ରସଲେଖା ସୁସଜ୍ଜିତ ରତିଗୃହରେ ଉପସ୍ଥିତା । ସମ୍ମୁଖରେ ତା'ର ଚିର ଇପ୍ସିତ ପୁରୁଷ—ସ୍ୱାମୀ ବିଶ୍ୱଭୂଷ । ସମ୍ଭୋଗପ୍ରିୟା ହେଲେ ମଧ୍ୟ ଅଜ୍ଞାତରେ ସେ କେବେ ଅଙ୍କୁରନ୍ତ ଯୌବନର ମାଦକତାରେ ପଥଭ୍ରଷ୍ଟ ହୋଇନାହିଁ ଏଣୁ ଆଜି ଏତେ ନିକଟରେ, ନିର୍ଜନରେ ବିଶ୍ୱଭୂଷଙ୍କୁ ସମ୍ମୁଖରେ ପାଇ ସେ ଲଜ୍ୟାରେ ଝାଉଁଳି ପଡ଼ିଛି । ବିଶ୍ୱଭୂଷଙ୍କ ସମ୍ମୁଖରେ, ଅବଗୁଣ୍ଠନବତୀ ରସଲେଖାଠାରେ ଶିହରଣ ଓ ମଧୁର କମ୍ପନ ଜାତ ହୋଇଛି । ବର୍ତ୍ତମାନ ନାୟକ-ନାୟିକାଙ୍କ ଅନ୍ତର୍ନିହିତ ଭାବଭଙ୍ଗୀ ପ୍ରକାଶରେ କବିଙ୍କ କବିତ୍ୱର ଯଥାର୍ଥତା ପ୍ରତିପାଦିତ । ଲଜ୍ଜ୍ୟାଶୀଳା ରସଲେଖା ଅତ୍ୟଧିକ ଲଜ୍ଜ୍ୟ ବଶତଃ ସ୍ୱାମୀଙ୍କ ସମ୍ମୁଖରେ ନୀରବରେ ଦଣ୍ଡାୟମାନ ହେବା ମନୋହର ଦୃଶ୍ୟକୁ ଜୀବନ୍ତ କରି ତୋଳିଛି କବିଙ୍କ ନିମ୍ନୋକ୍ତି

କାତର ଅଙ୍ଗକୁ ବନ୍ଧିଅଛି ବିମ୍ବାଧରୀ
ହରି ଆଗେ ହରିଣୀ, କମ୍ପନ ହେଲାପରି ।

ନାୟକ ବିଶ୍ୱଭୂଷ, ରସଲେଖାକୁ [illegible] କରିବାକୁ ଯାଇ ତାର ଚିବୁକରେ କର ଦେଇ ଚାଟୁବଚନ ଭାଷିବା ଆରମ୍ଭ କରନ୍ତି, ଯେ ନିଜକୁ ନାୟିକାର ଭୃତ୍ୟ ବା ଦାସ ବୋଲି ସ୍ୱୀକାର କରନ୍ତି । ଏବଂ ନାୟିକା ନିକଟରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ସମର୍ପଣ କରିଦେଇ କହନ୍ତି ଯଦି ସେ ରତିଦାନଦେଇ ତା'ର ଜୀବନରକ୍ଷା ନକରେ ତେବେ ସେ ମୃତବତ୍ ହୋଇଯିବ ; ପୁନଶ୍ଚ ସଙ୍କୋଚିତା ରସଲେଖାକୁ ନିର୍ଭୟ ପ୍ରତିଶ୍ରୁତି ଦେଇ କହନ୍ତି ଯେ ସେମାନେ ବର୍ତ୍ତମାନ ବିବାହିତ ହେତୁ ରତିକ୍ରୀଡ଼ାରେ ଲଜ୍ଜ୍ୟା ବା ଭୟ କରିବାର କୌଣସି କାରଣ ନାହିଁ । ନାୟକର ବିନୟ ବାଣୀରେ ରମ୍ୟାଶ୍ରିତ ଏଇ ପଦଗୁଡ଼ିକ ହେଲା-

"ଚିବୁକେ କର ଲଗାଇ କହିଲି ରସିକ
ପ୍ରାଣବନ୍ଧୁ ରସସିନ୍ଧୁ ଶ୍ରୀ ମୁଖକୁ ଟେକ
ଲାଜ ତୋର କାହାକୁ ମୁଁ କିଣା ଜନ ସିନା
ଏଣିକି ଏଣିନୟନା ତୋଳିଦେଉ କିନା ଯେ
ମନ୍ଦେ ହସି ପଦେ ଭାଷ ରସ ବଚନାକୁ
ରଖ ରଖ ମୁଁ ନିରେଜ ଗଲା ଜୀବନକୁ "

ନାୟକର ଗୃଢ଼ ବଚନରେ ନାୟିକା ସନ୍ତୁଷ୍ଟ ହୋଇଛନ୍ତି । ନାରୀ ସର୍ବଦା ପ୍ରଶଂସାପ୍ରିୟା ଓ ପ୍ରେମ ସର୍ବସ୍ୱା । ସ୍ୱାମୀଙ୍କର ଗୃଢ଼ ବଚନ ଓ ଆଦରରେ ନାୟିକାର ଲଜ୍ଜ୍ୟା କ୍ରମେ ଅପସରି ଯିବାକୁ ଲାଗିଛି । ଏହାର ସୁଯୋଗ ନେଇ ବଶୀଭୂତ ନାୟିକାର ଚନ୍ଦ୍ରମୁଖକୁ ଚୁମ୍ବନ ଦେଇଛନ୍ତି । ସମ୍ଭୋଗର ପୂର୍ବରାଗ ଆଲିଙ୍ଗନ, ଯାହା ଅନୁରାଗର ସୂଚକ, କାମଶାସ୍ତ୍ରବର୍ଣ୍ଣିତ ଏହି ନିୟମ ରକ୍ଷାକରି ମଧୁଶଯ୍ୟା ମନ୍ଦିରରେ ନାୟକ ନାୟିକାକୁ ଆଲିଙ୍ଗନ ପୂର୍ବକ କୁଚମର୍ଦ୍ଦନ କରିବା ଭକ୍ତ କବି ଉଲ୍ଲେଖ କରିଛନ୍ତି । ନାୟକର ସାନ୍ନିଧ ଓ ନିବିଡ଼ ସ୍ପର୍ଶ ପାଇ ନବଯୌବନା ରସଲେଖାର ରୋମ ରାଜି ଶିହରିତ ହୋଇ ଉଠିଛି । ନାୟକ ବଶୀଭୂତ ରତିପ୍ରିୟ ହୋଇ ଥିବାରୁ ରତିଶାସ୍ତ୍ର ଅନୁଯାୟୀ ଚୁମ୍ବନ ଦାନରେ ସକ୍ଷମ ହୋଇପାରିଛି । ଅଧର ଚୁମ୍ବନ କରିବା ଫଳରେ ବଧୂଙ୍କ ଅଧରର ପୀୟୂଷ ପାନକରି ନାୟକ ଅମୃତ ଠାରୁ ମୂଲ୍ୟବାନ ରସର ସନ୍ଧାନ ପାଇବା ଭଳି ଅନୁଭବ କଲେ । ଏ ପ୍ରକାର ଚର୍ଯ୍ୟା ନାୟକ ପକ୍ଷେ ସମୟୋପଯୋଗୀ ବୋଲି ବର୍ଣ୍ଣନା ଯୋଗ୍ୟ । କବିସମ୍ରାଟ ୪୦ ରେ କାମଶାସ୍ତ୍ରାନୁଯାୟୀ ରତିରାଗର ବର୍ଣ୍ଣନା କରିବାଭଳି ମନେହୁଏ । ଏଣୁ ଚୁମ୍ବନ ପରେ ନାୟକ ନାୟିକାର କୁଚମର୍ଦ୍ଦନ, ନଖକ୍ଷତ, ଦନ୍ତକ୍ଷତ ଆଦି କରିବା ଦେଖାଯାଇଛି । ନାୟକର ସ୍ପର୍ଶ ପାଇଁ ପ୍ରଣୟାନୁରାଗୀ ରସଲେଖାଠାରେ ମଧୁର କମ୍ପନ ଜାତ ହୋଇଛି ଓ ସେ ସୀତ୍କାର କରିଛି । ୪୦.ରେ ନଖଦନ୍ତକ୍ଷତ ପ୍ରଭୃତି • ରତି ପର୍ବର କେତେକ ବିଧାନ ଶାସ୍ତ୍ରୀୟ ବିଧି ଅନୁସରଣରେ ଲିଖିତ । କାମସୂତ୍ରରେ ଲିଖିତ ଯେ-

"ରାଗବୃଦ୍ଧୌ ସଂଘର୍ଷାତ୍ମକଂ ନଖ ବିଲେଖନଂ"

(୪ର୍ଥ ଅଧ୍ୟାୟ ୧ ମ ଶ୍ଳୋକ)

ଅର୍ଥାତ୍ ଚୁମ୍ବନ ଫଳରେ ଅନୁରାଗ ବୃଦ୍ଧି ପାଏ । ଅନୁରାଗ ବୃଦ୍ଧି ପାଇଲେ ନଖବିଲେଖନ ବା ନଖକ୍ଷତ କରାଯାଏ ।

ପୁନଶ୍ଚ କାମସୂତ୍ରମ୍‌ରେ ଯେଉଁ ସ୍ଥାନରେ ମହର୍ଷି ବାତ୍ସାୟନଙ୍କ ଦ୍ୱାରା ନଖକ୍ଷତର ବିଧାନ ଲିଖିତ, କବି ସମ୍ରାଟ ଉପେନ୍ଦ୍ର ମଧ୍ୟ ଅନୁରୂପ ସ୍ଥାନରେ ନଖକ୍ଷତର ବର୍ଣ୍ଣନା ଦେଇଛନ୍ତି । କାମସୂତ୍ରରେ ଅଛି

କକ୍ଷୌ ସ୍ତନୌ ଗଳଃ ପୃଷ୍ଠଂ ଜଘନମୂରୁଚ ସ୍ଥାନାନ୍
(୪ ର୍ଥ ଅଧ୍ୟାୟ—୫ମ ଶ୍ଳୋକ)

ଅର୍ଥାତ୍ କାଖ, ସ୍ତନ, ଗ୍ରୀବା, ପୃଷ୍ଠଦେଶ, ଜଘନ, ଓ ଉରୁ ଏ ସମସ୍ତ ନଖକ୍ଷତର ସ୍ଥାନ । ଏହି ବାକ୍ୟକୁ ଅନୁଶୀଳନ କରି କବି ଲେଖିଛନ୍ତି-

କଠିନ ସ୍ତନ ମର୍ଦ୍ଦନ କରି ପୁନଃପୁନଃ
କେତେଥର ଚିପିଦେଲା ତୀକ୍ଷଣ ନଖମୁନ ଯେ

ଚମକିଲା ଚମକିଲା ପରି ହେଲା ବାଳୀ
ଦେହଯାକ ଉଙ୍କିଁ ଉଠିଲା ରୋମାବଳୀ ଯେ

ଜାନୁକକ୍ଷ ମୂଳେ ଚଳାଇଲା କର ରୁହି
ସନ୍ନିପାତ ପରାୟେ ହୋଇଲା ରାମା ଦେହ ଯେ"

ବାସ୍ତବିକ ରତିରାଗର ଏପରି ସମୀକ ଓ ବାସ୍ତବ ବର୍ଣ୍ଣନା କବି ସମ୍ରାଟ ଉପେନ୍ଦ୍ରଙ୍କ ଶାସ୍ତ୍ର ସଚେତନତାର ପ୍ରମାଣ ଦିଏ ।

ରତିରାଗର ପର୍ଯ୍ୟାୟ ସରି ଆସିବା ବେଳକୁ ଉଭୟେ ମଦନର ଆତିଶଯ୍ୟରେ ଅଧୀର ହୋଇ ପଡ଼ିଛନ୍ତି, ଯେହେତୁ ପ୍ରଥମ ଦୈହିକ ମିଳନର ଭାବନା କାମଜନକ ଏଣୁ ମୃଦୁରୁ ଅନୁଭବ କରୁଥିବା ଲଜ୍ଜ୍ୟା ମୈଥୁନ ଅନିବାର୍ଯ୍ୟ ହେତୁ କ୍ରମେକ୍ରମେ ଅପସରି ଯାଇଛି ଏବଂ ନାୟିକାଠାରେ ମଧ୍ୟ ଚଞ୍ଚଳତା ପ୍ରକାଶ ପାଇଛି । ଉଭୟେ ଏକାତ୍ମା ହେବାକୁ ଯାଉଥିବା ବେଳେ ସମ୍ଭୋଗର ପୂର୍ବାବସ୍ଥାରେ ନାୟକ, ନାୟିକାକୁ ସମ୍ପୂର୍ଣ୍ଣ ବିବସନା କରିବା ପାଇଁ ପ୍ରୟାସ କରିଛି । କିନ୍ତୁ ନାରୀ ସ୍ୱଭାବତଃ ଲଜ୍ଜ୍ୟାଶୀଳା, ଏଣୁ ସାମାନ୍ୟ ଲଜ୍ଜ୍ୟାବଶତଃ ନାୟିକା ରସଲେଖା ନାୟକର ହସ୍ତଧରି ନୀବିବନ୍ଧ ଉନ୍ମୋଚନ କରିବାବେଳେ ବାରଣ କରିଛି । କିନ୍ତୁ ମୃଣାଳ ସୂତ୍ରରେ କି ହସ୍ତୀକୁ ବନ୍ଧନ କରାଯାଇପାରେ । ନାୟିକାକୁ ପ୍ରଣୟ ରସରେ ତନ୍ମୟ କରିବାକୁ ଯାଇ ନାୟକ ପୁନର୍ବାର ଚୁମ୍ବନାଦି ଦେଇଛି । ମଦନର ଆତିଶଯ୍ୟରେ ନାୟିକାର ଅଜ୍ଞାନବସ୍ଥା ପ୍ରାପ୍ତ ହୋଇ ଆସୁଥିବାବେଳେ ନାୟକ ବାରଣ ପ୍ରତ୍ୟାଖ୍ୟାନ କରି ନୀବିମୋଚନ କରିଛି । ସାଧାରଣତଃ ଦୈହିକ ମିଳନର ପ୍ରଥମ ରାତ୍ରି ଯୋଗୁଁ ରସଲେଖା ଶାରୀରିକ ଯନ୍ତ୍ରଣା ଅନୁଭବ କରିଛି ଏବଂ ସୀତ୍କାର କରିଛି । ରମଣକାଳର ଏହି

ପର୍ଯାପ୍ତ ଗୁଡ଼ିକ ଅତି ସୁନ୍ଦର ଓ ଜୀବନ୍ତ ହୋଇ ଉଠିଛି କବିତାର ଛନ୍ଦେଛନ୍ଦେ । ପ୍ରକାଶ ଭଙ୍ଗୀରେ ଅଦ୍ଭୁତ ଚମତ୍କାରିତା ଓ ଉପବିନ୍ୟାସ କବିଙ୍କ ଅପ୍ରତିଦ୍ୱନ୍ଦୀ ଦକ୍ଷତା ପ୍ରକାଶକରେ ।

"ନୀବି ଫିଟାଇବା ବେଳେ ଧରେ କର କରେ
ବାରଣ ରହଇ ନିକ ମୃଣାଳ ସୂତ୍ରରେ
ଫିଟିଗଲା ମଦନ ସଦନର କପାଟ
ତୁଟିଗଲା ସେ ସନ୍ଧି ବିରହି ଘୋରକଷ୍ଟ ଯେ"

ରତିଜନିତ ଶ୍ରମ ଓ ଘନଘନ ଶ୍ୱାସ ହେବା ଫଳରେ ନାୟିକଠାରେ ସ୍ୱେଦବାରି ଦେଖା ଦେଇଛି କବିଙ୍କ ଭାଷାରେ-

ଝାଳେ ଜର ଜର ହେଉଛି ଅଙ୍ଗ ଦେଶଯେ
ଝର ଝର ହେଉଛି ନିଶ୍ୱାସ ପବନ
ତର ତର ହେଉଛି ଜଘନେ ବସନ ଯେ ..

ବାସ୍ତବରେ ଏ ପ୍ରକାର ସମ୍ଭୋଗ କ୍ରୀଡ଼ା ବର୍ଣ୍ଣନାରେ କବି ସମ୍ରାଟ ଉପେନ୍ଦ୍ରଙ୍କ କବିତ୍ୱ ପ୍ରଶଂସନୀୟ । ଯଦି ଅଶ୍ଳୀଳତାଠାରୁ ଦୂରେଇ ଯାଇ ଶାସ୍ତ୍ରୋଚିତ ନିୟମରେ କବିଙ୍କ କାବ୍ୟଟି ବିବେଚନା କରାଯାଏ ତେବେ ଭଂଜକବି ପ୍ରକୃତ ରସିକକବି ରୂପେ ବିବେଚିତ ହେବେ । ଏଥିରେ ସନ୍ଦେହର ଅବକାଶ ନାହିଁ ।

ଏ ଗ୍ରନ୍ଥରେ ବର୍ଣ୍ଣିତ ଅନ୍ୟତମ ଆକର୍ଷଣ ହେଲା ଉପେନ୍ଦ୍ରଙ୍କ ବର୍ଣ୍ଣିତ ବିପରୀତ ବନ୍ଧ ଭିତ୍ତିକ ରତିକ୍ରୀଡ଼ା, ଯାହା ରସଲେଖା ଦ୍ୱାରା ସମ୍ପାଦିତ ହୋଇଛି । ଅବଶ୍ୟ ଏହି ବିପରୀତ ବନ୍ଧଯୁକ୍ତ ସମ୍ଭୋଗକୁ କେତେକେ ନିନ୍ଦା କରନ୍ତି । କିନ୍ତୁ ବାତ୍ସ୍ୟାୟନ ପ୍ରଣୀତ କାମଶାସ୍ତ୍ରରେ ଏହା ଶାସ୍ତ୍ର ସମ୍ମତ ବୋଲି ଲିଖିତ ଅଛି । କାମସୂତ୍ରାନୁସାରେ-

ନାୟକସ୍ୟସନ୍ତତାଭ୍ୟାସାତ୍ ପରିଶ୍ରମମୁପଲଭ୍ୟ ରାଗସ୍ୟ
ଚୋପଶମଂ ସାଭିପ୍ରାୟାଦ୍ୟା ବିକଲ୍ପ ଯୋଜନାର୍ଥମ୍

(କାମସୂତ୍ର ୮, ୧ ଶ୍ଳୋକ)

ଅର୍ଥାତ୍ ନାୟକ ବାରମ୍ବାର ରତି କରିବା ଫଳରେ ସମସ୍ତ ଅଙ୍ଗରେ ଶ୍ରମ ଅନୁଭବ କଲେ ଓ ଅନୁରାଗ ଚରିତାର୍ଥ ନ ହୋଇଥିବା ସ୍ଥଳେ ନାୟିକା ନାୟକର ଅନୁରୋଧ କ୍ରମେ ବା ବିନା ଅନୁରୋଧରେ ବିପରୀତ ରତି କରିପାରେ ।

ଆଲୋଚ୍ୟ କାବ୍ୟରେ ରମ୍ଭାଲେଖାଠାରେ ବିପରୀତ ରତି ପାଇଁ ଆଗ୍ରହ ପ୍ରକାଶ ପାଇବା ବ୍ୟକ୍ତିକର କାବ୍ୟଟିକୁ ଶ୍ଳୋଚିତ କରାଇବାରେ ସକ୍ଷମ ହୋଇ ପାରିଛନ୍ତି । ଯଦିଓ ନାୟକ ସମ୍ଭୋଗପରେ କ୍ଳାନ୍ତ ଅନୁଭବ କରିନାହିଁ ବା ରମ୍ଭାଲେଖାକୁ ବିପରୀତ ରତି ପାଇଁ ହିଁ ବିନୟ ନ କରି ତଥାପି କାବ୍ୟଟିକୁ ଶାଧୋଚିତ କରାଇବା ପାଇଁ କବି ରମ୍ଭାଲେଖାଠରେ ସ୍ୱତଃପ୍ରବୃତ୍ତ ହୋଇ ବିପରୀତ ରତି ପାଇଁ ଆଗ୍ରହ ପ୍ରକାଶ କରାଇଛନ୍ତି ।

ରମଣ ଶେଷ କାଳରେ ରମ୍ଭାଲେଖାଠାରେ ବିପରୀତ ରତି ପାଇଁ ଆଗ୍ରହ ପ୍ରକାଶ ପାଇଛି । ଏହା ଜାଣି ନାୟକ ତାଙ୍କୁ ନିଜବକ୍ଷ ପ୍ରଦେଶରେ ଧାରଣ କରିଛି । କିନ୍ତୁ ନବବଧୂବାହୁଡା ହେତୁ ରମ୍ଭାଲେଖା ଲଜ୍ଜାବଶତଃ ତଳକୁ ଖସି ଆସିବାକୁ ପ୍ରୟାସ କରିଛି । ଏହିକ ବେଳେ ନାୟକ ଦୃଢ଼ ପରାଗ ତାକୁ ବାରଣ କରିଛି ଓ ନାୟିକା ତା'ର ଅନୁରାଗ ଚରିତାର୍ଥ କରିଛି । ରସିକ କବି ଉପେନ୍ଦ୍ର ଭଂଜ ଉଭୟ ନାୟକ ନାୟିକାଙ୍କ ମନସ୍ତତ୍ତ୍ୱକୁ ବିଶ୍ଳେଷଣ କରିବାକୁ ଯାଇ ଲେଖିଛନ୍ତି-

"ଶ୍ରମେ ମଲ୍ଲୀଫୁଲ କାନ୍ତକରେ ଦେଲ,
କହିଲ ଯେ ବେନି ବର୍ତ୍ତି ଫେଡ଼ି ନ କହିଲ ଯେ

ଯେଣୁ ଯେ ନବୋଢ଼ା ଏଣୁ ଲଜ ବଳସ୍ତାର
ମନଜାଣି ଦଣ୍ଡେ ଯେ ଶୋଇଲ ପୁଂସବର ଯେ

ଯେହୁ ବନ୍ଧେ ଆପେ ଶୋଇ ହୃଦେ ଶୁଆଇଲ
ଖସି ପଡ଼ିବା ବେଳକୁ ମୋ ଆନ ବୋଇଲ ଯେ

କରଉରେ ଦେଇ ତରୁଣୀ ଶିରୋମଣୀ
ନଦେଖି ରଚିଲେ ଯେହୁ ବିପରୀତ ଠାଣି ଯେ

ମଦନ ମଦିରା ଆକଣ୍ଠ ପାନକରି ଉଭୟେ ଜ୍ଞାନଶୂନ୍ୟ ହୋଇ ପଡ଼ିଛନ୍ତି ମଦନର ତାଡ଼ନାରେ ଜର୍ଜରିତ ଦମ୍ପତି ହିତାହିତ ଜ୍ଞାନ ଭୁଲି କିଏ କେତେବେଳେ କ'ଣ କରୁଛି ତାହାର ଇୟତ୍ତା ରହୁନାହିଁ । ବିପରୀତ ରତିରେ

ନିମଗ୍ନ ହେବା ବେଳେ ଆଭୂଷଣ ପରିହିତା ରସଲେଖାର ଅଙ୍ଗଚାଳନା ହେତୁ କଟି ସ୍ଥଳର କିଙ୍କିଣୀ ଓ ଅଳକ୍ତ ପାଦର ନୂପୁର ଧ୍ୱନିରେ ଝଂକୃତ ହୋଇ ଉଠିଛି ବାସର କେଠରୀର କୋଣ ଅନୁକୋଣ....। ଏହାର ଏକ ନିଖୁଣ ଚିତ୍ର କବିଙ୍କ କାବ୍ୟରେ ଦେଖିବାକୁ ମିଳେ

ମଦନ ମଦର ଖେଳ ହୋଇ
କେତେବେଳେ କାହାପରି କେ ହୋଇଲେ ତହିଁ ଯେ
ଦ୍ୱାରହିଁ ନାଚଲା କ୍ଷୁଦ୍ର କିଙ୍କିଣୀ ଶୃଙ୍ଖଳ
କଙ୍କଣ ନୂପୁର ଧ୍ୱନି କେତେ ପ୍ରବର୍ତ୍ତିଲା ଯେ

ଚନ୍ଦ୍ର ରଜନୀ ପାହି ଆସୁଛି ଗଭୀର ରତିକ୍ରୀଡ଼ା ମଧ୍ୟରେ . । ନିଶି ଅବସାନର ସମ୍ବାଦ ଦେଇ ଦେବାଳୟରେ ଶୁଭଶଂଖ ବାଜିଉଠିଛି । ଏତେବେଳେ ନବୀନା ରସଲେଖା ପ୍ରତ୍ୟେକ ନବବିବାହିତା ରମଣୀ ଭଳି ସ୍ୱାମୀଙ୍କ ଛୁଡ଼ି କେଳିଗୃହରୁ ବାହାରକୁ ଆସିଛି । କବିଙ୍କ କଳ୍ପନା ବିଳାସର ଚମତ୍କାରିତାରେ ସମୁଦାୟ ଛାନ୍ଦଟି ଭାବରସ ସମୃଦ୍ଧ ହୋଇପାରିଛି । ସ୍ୱରଚନା ଚାତୁର୍ଯ୍ୟରେ ମନୋଜ୍ଞ ଓ ଚିତ୍ତାକର୍ଷକ ଭାବେ ସମ୍ଭୋଗ ଶୃଂଗାର ବର୍ଣ୍ଣନାର ପରିସମାପ୍ତି ଘଟାଇଛନ୍ତି ।

ବିପ୍ରଲମ୍ଭ ଶୃଂଗାର : ବିପ୍ରଲମ୍ଭ ଶୃଙ୍ଗାର ହିଁ ସମ୍ଭୋଗର ପ୍ରକୃତ ସ୍ୱାଦ ଆସ୍ୱାଦନ କରିହୁଏ । ଏହି ବିଚ୍ଛେଦହିଁ ବଢ଼ାଇଥାଏ ମିଳନର ମାଧୁର୍ଯ୍ୟକୁ....। ରାତ୍ରୀବିନା ଦିବସର, ଅନ୍ଧାରବିନା ଆଲୋକର, ବିପଦବିନା ସଂପଦର, ତିକ୍ତବିନା ମଧୁରର ମହତ୍ତ୍ୱ ଯେପରି ପ୍ରତିପାଦିତ ହୋଇପାରେନି, ସେହିପରି ବିଚ୍ଛେଦ ବ୍ୟତୀତ ମିଳନର ମଧୁରତାକୁ ଆକଣ୍ଠ ଉପଭୋଗ କରିହୁଏ ନାହିଁ । ସୁତରାଂ ମିଳନ ଓ ବିଚ୍ଛେଦ ସୃଷ୍ଟିର ଅପରିହାର୍ଯ୍ୟ ଅଙ୍ଗ ସ୍ୱରୂପ ଭଞ୍ଜ ତାଙ୍କର କାଳ୍ପନିକ କାବ୍ୟରେ ଏହି ନିୟମ ରକ୍ଷାକରି ମିଳନ, ବିରହ ଓ ପୁନର୍ମିଳନକୁ କ୍ରମାନ୍ୱୟରେ ବର୍ଣ୍ଣନାକରିଥିବାରୁ କାବ୍ୟର ମର୍ଯ୍ୟାଦା, ମନୋହାରିତା, ସରସତା ଉପଭୋଗ କରିହୁଏ ।

ଆଲୋଚ୍ୟ କାବ୍ୟରେ ଏହି ବିପ୍ରଲମ୍ଭ ଶୃଂଗାରର ଆଭାସ ମିଳେ ସପ୍ତଦଶ ଛାନ୍ଦର ମଧ୍ୟ ଭାଗରୁ....। ଚତୁର୍ଦ୍ଦଶ ଛାନ୍ଦରେ ବିବାହ ସମ୍ପାଦିତ ହେବାପରେ ନବଦମ୍ପତିଙ୍କ ମଧୁର ମିଳନ ଘଟିଛି । ଯୌବନର ମଦମତ୍ତରେ ନିମଜ୍ଜିତ ଦମ୍ପତି କିଛି କାଳ ଅତିବାହିତ କରିବା ପରେ ବିଚ୍ଛେଦର ଘନ କାଳିମା ଦେଖାଦେଇଛି ।

ପ୍ରେମପଥ ସର୍ବଦା ପୁଷ୍ପିତ ନୁହେଁ । ପ୍ରକୃତ ପ୍ରେମ ଆସ୍ୱାଦନ କରିବାକୁ ହେଲେ ଅସୀମ ତ୍ୟାଗ ଓ ବଳିଦାନ ସ୍ୱୀକାର କରିବାକୁ ପଡ଼େ । କବିସମ୍ରାଟ ଉପେନ୍ଦ୍ର ଭଂଜଙ୍କ କାବ୍ୟରେ ନାୟକ ନାୟିକାଙ୍କ ବିରହାନୁଚିନ୍ତା ହୋଇଛି ସେମାନଙ୍କ ଏକନିଷ୍ଠ ପ୍ରେମର କଷଟି ପଥର ।

ପ୍ରସଙ୍ଗ: ନାୟକ ବଶ୍ୟଭୂତ ପିତା ସୁଧାନିଧି ନୃପତି ପୁତ୍ର ବିଚ୍ଛେଦରେ ବ୍ୟତିବ୍ୟସ୍ତ ହୋଇପଡ଼ିଛନ୍ତି । ପୁତ୍ର ସନ୍ଧାନାର୍ଥେ ଚତୁର୍ଦ୍ଦିଗକୁ ଦୂତ ପ୍ରେରଣ କରି ନିରାଶ ହୋଇ ଶେଷରେ ଋଷିଙ୍କ ସନ୍ନିଧାନରେ ଉପସ୍ଥିତ ହୋଇଛନ୍ତି । ଋଷି ଧ୍ୟାନ ବଳରେ ସମସ୍ତ ବିଷୟ ଅବଗତ ହୋଇ ରାଜାଙ୍କୁ କହୁଛନ୍ତି । ଏକଥା ଜାଣି ନୃପତି, ରାକ୍ଷସ ମାନଙ୍କ ସାହାଯ୍ୟରେ ଶୟନାବସ୍ଥାରେ ରସଲେଖା ପାଖରୁ କୁମର ବଶ୍ୟଭୂତକୁ ହରଣ କରି ନେଇଛନ୍ତି । ଯେତେବେଳେ ବଶ୍ୟଭୂତ ଅର୍ଦ୍ଧ ଚେତନା ଫେରିପାଇଛି ସେତେବେଳେ ରସଲେଖାଙ୍କୁ ପାଖରେ ନ ପାଇ ଭାବୁଛି ବିନା ଆଲିଙ୍ଗନରେ ରସଲେଖା ହୁଏତ ରତି ଜନିତ ଶ୍ରମ ଆଳସ୍ୟ ହେତୁ ଭିନ୍ନ ହୋଇ ଶୟନ କରିଛି । ପୁଣି ଭାବୁଛି ରଜବତୀ ହୋଇଥିବାରୁ ହୁଏତ ସେ ମୋତେ ପରିତ୍ୟାଗ କରି ଚାଲିଯାଇଛି ଏଠାରେ କବିଙ୍କ କଳ୍ପନା ପ୍ରଶଂସନୀୟ । କବିତା ମାଧ୍ୟମରେ ସେ ସାମାଜିକ ପରଂପରାର ଉଲ୍ଲେଖ କରିଛନ୍ତି । ଋତୁ କାଳରେ ଅଙ୍ଗସଙ୍ଗ ନିଷେଧ । ଏଣୁ ନାୟକର ଏପରି ଚିନ୍ତା ସମୟୋପଯୋଗୀ ହୋଇଛି । କବିଙ୍କ ଉକ୍ତିରେ

ନିଦ୍ରା, ଆଳସ୍ୟ ଭିନ୍ନ ହୋଇ କିବା ଶୋଇଛି
ଋତୁ ଲଭି ମୋତେ ମକର କେତୁକୁ ଦେଇ ଅବା ଭିନ୍ନ ହୋଇଛି ।

ହଠାତ୍ ସଂପୂର୍ଣ୍ଣ ଜ୍ଞାନ ଲାଭ କରି ସେ ନିଜ ଶଯ୍ୟା ପାର୍ଶ୍ୱରେ ହସ୍ତ ଚାଳନା କରିଛି । କିନ୍ତୁ ନାୟିକାର ଉନ୍ନତ ସୁକୋମଳ ବକ୍ଷୋଜ ପରିବର୍ତ୍ତେ କିଛି କଠିନ ବସ୍ତୁର ସ୍ପର୍ଶ ଅନୁଭବ କରି ଭାବିଛି କଦାପି ଏହା ମୋ ପ୍ରିୟାର ତନୁ ହୋଇ ନପାରେ । ଯେହେତୁ ରସଲେଖା କୋମଳାଙ୍ଗୀ ଓ ସୁଗନ୍ଧଯୁକ୍ତା ... । ଏ ଅବସରରେ ଭୃତ୍ୟ ଦୀପ ଧରି ପ୍ରବେଶ କରିଛି । ହଠାତ୍ ନିଜ ସ୍ଥିତିକୁ ସ୍ୱପୁରରେ ଥିବା ଆବିଷ୍କାର କରି ନାୟକ ସଜ୍ଞା ହରାଇ ବସିଛି । ଅପର ପକ୍ଷରେ ରସଲେଖା ମଧ୍ୟ ଅନୁରୂପ ଦଶା ଭୋଗିଛି । ଚେତନା ଫେରି ସେ ଯେତେବେଳେ କୁମରର ଅନୁପସ୍ଥିତିକୁ ଅନୁଭବ କରିଛି ହା ନାଥ ବୋଲି ଉଚ୍ଚାରଣ କରି ଚେତନା ହରାଇ ବସିଛି । ଏହି ଠାରୁ ଆରମ୍ଭ ହୋଇଛି ଦୁଇଟି ବିରହବିଧୁର ପ୍ରାଣର ବେଦନା ଜର୍ଜରିତ ଅଭିବ୍ୟକ୍ତି .. ।

ଅଷ୍ଟାଦଶ ଛାନ୍ଦରେ କବି ବର୍ଷାଋତୁର ଅବତାରଣା କରିଛନ୍ତି । ବର୍ଷା କାଳ ସାଧାରଣତଃ ମିଳନାକାଂକ୍ଷାର ଦ୍ୟୋତକ । ଫଳରେ ନାୟକ ଭାବ ବିହ୍ୱଳ ହୋଇ ମେଘମାଳାକୁ ଗୃହି ରହି ନିଜର ବିରହ ବେଦନା ପ୍ରକାଶ କରିଛି । ପତ୍ନୀ ସହିତ ଅତିବାହିତ କରିବା ମୁହୂର୍ତ୍ତର ଘଟଣା ସବୁ ରୋମନ୍ଥନ କରି ସେ ଦୁଃଖରେ ଭାଙ୍ଗି ପଡ଼ିଛି । ଏକଦା ଏହି ବର୍ଷା କାଳରେ ରସଲେଖା ନାୟକକୁ ଦ୍ୟୁତକ୍ରୀଡ଼ା ପାଇଁ ନିବେଦନ କରିଛି । ସେତେବେଳେ ନାୟକ, ନାୟିକାକୁ କିଛି ଦେବାପାଇଁ ନିୟମ କରିବାକୁ କହିଛି । ଏହା ଶୁଣି ରସଲେଖା କୌତୁହଳ ବଶତଃ କହିଛି ମୁଁ କ'ଣ ବା ଦେବି ? ମୋ ପାଖରେ କ'ଣ ରତନ ଅଛନ୍ତି ? ଏହାର ପ୍ରତ୍ୟୁତ୍ତର ଦେବାକୁ ଯାଇ ରସିକ ନାୟକ ବିଶ୍ୱଭୂଷ କହିଛି ଯାହା ଦେବୁ ବୋଲି ପଚାରିଲୁ ତାହାର ପ୍ରାନ୍ତ ଅକ୍ଷର ଗୁଡ଼ିକ ଅବଶିଷ୍ଟ ହେଉ, ଅର୍ଥାତ୍ ରତନର ପ୍ରାନ୍ତ ଅକ୍ଷର 'ନ'କୁ ବାଦ୍ ଦେଲେ ରତ ବା 'ରତି' ଦାନ କରିବା ଅର୍ଥକୁ ବୁଝାଇଛି । ନାୟିକା ରସଲେଖା ଏହା ଶୁଣି ଲଜ୍ଜ୍ୟାବଶତଃ ମୁଁ ପାରିବି ନାହିଁ ବୋଲି ଅସମ୍ମତି ପ୍ରକାଶ କରିଛି । ଏହିପରି ରସପୂର୍ଣ୍ଣ ସ୍ମୃତି ରୋମନ୍ଥନ କରି ନାୟକ ବିରହ ବେଦନାରେ ଅସ୍ଥିର ହୋଇପଡ଼ିଛି ।

ଭଂଜକବି ନାୟକର ଏହି ବିରହାନୁଚନ୍ତାକୁ ପ୍ରକାଶ କରିବାକୁ ଯାଇ କବି ଲେଖିଛନ୍ତି ହୋଇଥିଲା ଦିନେ ଏଇ ବରଷା

ଦିନେ ବୋଇଲୁ ଖେଳିବା କି ପଶା
ମୁଁ ଯେ ବୋଇଲି ଧରଣ ଶ୍ରୀକର
ଦେବାକୁ ଚଉଦିଗ ପଣ କର
କହିଲୁ ବାନ୍ଧବୀ, ବରାଟକ ଅଛୁ ରତନ ଦେବ ।
ମୁଁ ବୋଇଲି ଯାହା କଲୁ ଦେବାର
ସେହିଥିରୁ କାଟି ପ୍ରାନ୍ତ ଅକ୍ଷର
ପାରିବି ନାହିଁ ମୁଁ ବୋଇଲୁ ବାଣୀ
ମନରୁ ନ ଛାଡ଼େ ସେ ରସବାଣୀ

ବାସ୍ତବିକ୍ କବିତାର ଛନ୍ଦେଛନ୍ଦେ ନାୟକର ବିରହ ଚିତ୍ତର ବ୍ୟାପକ ବର୍ଣ୍ଣନା କରିବାରେ କବିଙ୍କ ଅସାଧାରଣ କବିତ୍ୱ ସୁସ୍ପଷ୍ଟ ।

ଉକ୍ତ ଛାନ୍ଦର ଶେଷ ଭାଗରେ ନାୟକ ନିକଟରେ ଯେଉଁ ବିରହ ଦେଖା-ଦେଇଛି ତାହା ରତାନ୍ତେ....ସମ୍ବନ୍ଧୀୟ । ଏକଦା ରତିକ୍ରୀଡ଼ା ଶେଷ ହେବା ପରେ ବିଶ୍ୱଭୂଷ ରସଲେଖାକୁ ବ୍ୟଜନଚାଳନା କରିଛି । ଏହା ଦେଖି ରସଲେଖା ସ୍ୱାମୀଙ୍କ କରବ୍ୟଥା ହେବା ଆଶଙ୍କା କରି ଆଦରରେ ବ୍ୟଜନ ଛଡ଼ାଇ ନେଇ କହିଛି ବରଂ

ବାତାୟନ ଖୋଲି ସମୀର ଆହରଣ କରିବା, କିନ୍ତୁ ବ୍ୟଜନ କରି ନାହିଁ । ରସଲେଖା ର ଏହି ସେହସିକ୍ତ ବାଣୀ ତା'ର ଅନୁପସ୍ଥିତିରେ ନାୟକଠାରେ ତୀବ୍ର ବିରହ ବେଦନା ଜାତ କରାଇଛି ।

କବିଙ୍କ ଉକ୍ତିରେ

ରତି ଅନ୍ତେ ମୁଁ ବିଞ୍ଚିଲି ବ୍ୟଜନେ
ଛଡ଼ାଇ ନେଇଥିଲା କେତେ ରଂଜନେ
ବୋଲଇ ବ୍ୟଥା କରିବ ଯେ କର
ଫେଇ ଗବାକ୍ଷ ଲଭିବା ସମୀର

ବିରହୀ ପ୍ରାଣର ଅତି ମନୋଜ୍ଞ ରୂପ ଅଙ୍କନ କରି କବି ରସିକ ପାଠକଙ୍କୁ ରସ ସାଗରରେ ବୁଡ଼ାଇ ଦେବାରେ ସକ୍ଷମ ହୋଇପାରିଛନ୍ତି ।

ବିରହର ପରବର୍ତ୍ତୀ ଅବସ୍ଥା ପତ୍ରଲେଖନ ବା ସନ୍ଦେଶ ପ୍ରେରଣ... । ବିରହ ଜନିତ ବେଦନା ଯେତେବେଳେ ହୃଦୟ ଭିତରେ ଆବଦ୍ଧ ହୋଇ ରହିବା ଅସମ୍ଭବ ହୋଇପଡ଼େ, ସେତେବେଳେ ନାୟକ ନାୟିକା ତାହାକୁ ପତ୍ର ବା ଚିଠାଉ ମାଧ୍ୟମରେ ବ୍ୟକ୍ତ କରିଥାନ୍ତି ! ଏହି ଚିଠାଉ ସାଧାରଣତଃ ଦୂତୀ, ଶୁକ ବା ପ୍ରକୃତିର ନିର୍ଜୀବ ବାହକ ମେଘ, ବସନ୍ତ ଆଦି ଦ୍ୱାରା ପ୍ରେରିତ ହୋଇଥାଏ । ଭଂଜଙ୍କ କବିତାରେ ମଧ୍ୟ ଏହାର ବ୍ୟତିକ୍ରମ ଘଟି ନାହିଁ । ଏଠାରେ ଲକ୍ଷ୍ୟ କରାଯାଇପାରେ ଯେ କାଳିଦାସଙ୍କ ଅନ୍ତଃପ୍ରକୃତିର ଚିତ୍ର ଭଞ୍ଜଙ୍କ ଉପରେ ପ୍ରଭାବ ବିସ୍ତାର କରିଛି । କାଳିଦାସଙ୍କ ରଚିତ 'ମେଘଦୂତ' କାବ୍ୟରେ ବିରହୀ ଯକ୍ଷର ମେଘକୁ ଦୂତ କରି ପ୍ରିୟା ପାଖକୁ ସଂଦେଶ ପ୍ରେରଣ କରିବା ଭଳି ଏଠାରେ ବିଶ୍ୱଭୂତିର ରସଲେଖା ନିକଟକୁ ଚିଠାଉ ଲେଖନ ପାଠକର ହୃଦୟକୁ ରସ ସିକ୍ତ କରିଦିଏ.... ।

ନବ ମେଘମାଳକୁ ଗୁହିଁ ଶୋକାଭିଭୂତ ବିଶ୍ୱଭୂତି ସବିନୟ ପ୍ରାର୍ଥନା ପୂର୍ବକ କହୁଛି ଯେ, "ମୋର ବାନ୍ଧବୀ ସମ୍ମୁଖରେ ଯାଇ ମୋର ବିରହଦଶା ବର୍ଣ୍ଣନା କରିବୁ । ତା'ଠାରୁ ବିଚ୍ଛେଦ ହେବା ପରେ ମୋତେ ନିମିଷେ ଦୀର୍ଘ ମନେ ହେଉଛି । ଆଖିରୁ ନିଦ୍ରା କଟି ଯାଉଛି, ଜୀବନ ଥାଉଁ ଥାଉଁ ଏପରି ବିଚ୍ଛେଦ ହେବ ଏହା ମୋର କଳ୍ପନାତୀତ ଥିଲା ।" ସ୍ପଷ୍ଟ ଯେ ରତି ଲାଳସୀ ରସଲେଖାର ବିରହ ବେଦନା ନିଜେ ଅନୁଭବ କରି ଅତ୍ୟଧିକ ଦୁଃଖରେ ମ୍ରିୟମାଣ ହୋଇପଡ଼ିଛି । ଯେଉଁ ରସଲେଖା ତା'ଠାରୁ ସାମାନ୍ୟ ବ୍ୟବଧାନ ସହ୍ୟ କରିନପାରି ରାତ୍ର କାଳରେ ହୃଦୟକୁ ହୃଦୟ ସହିତ ସାମିଲ କରି ବକ୍ଷ ସଂଲଗ୍ନ ହୋଇ ଶୁଏ, ପ୍ରଭାତ ହୋଇ ଆସିଲେ ସ୍ୱାମୀ ପାଖରୁ ଅନ୍ତର ହୋଇଯିବା କଥା ଭାବି ଯେ ନିବିଡ଼ ଆଶ୍ଳେଷରେ କିଛି କ୍ଷଣ ତା'କୁ ଭିଡ଼ି ଧରେ, ବର୍ତ୍ତମାନ ସ୍ୱାମୀ ସାନିଧ୍ୟରୁ ବଞ୍ଚିତ ହୋଇ ସେ କିପରି

କାଳାତିପାତ କରୁଥିବ ? ନାୟିକାର ଏହି ବିରହାନୁଚିନ୍ତାକୁ କବି କବିତା ମାଧ୍ୟମରେ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି ।

ଅଲଗା ହେଲେ ହୃଦୁଁ ହୃଦ, ତାକୁ ଯେ ନ ଆସଇ ନିଦ
ଏବେ ସେ କି କରିବ, ଛନ୍ଦି ନଶି ଯାରିବ

X X X

କେତେ ବେଗେ ରଜନୀ ପାହିଲା ଏହା ଗେନି
ଘଡ଼ିଏ ଭିଡ଼ାଭିଡ଼ି ହୋଇ

ବାସ୍ତବିକ କବି ସମ୍ରାଟ ଉପେନ୍ଦ୍ର ଙ୍କ ଏତାଦୃଶ ବିରହ ଦୃଶ୍ୟ ସମ୍ବଳିତ ଚିତ୍ରବିଳାପ ନିଖୁଣ ଚିତ୍ର, ପାଠକ ପ୍ରାଣକୁ ସମବେଦନାରେ ଦ୍ରବୀଭୂତ କରିଦିଏ । ଏହାହିଁ କବିଙ୍କ କବିତ୍ୱର ଶ୍ରେଷ୍ଠ ପରିଚାୟକ ।

ଅନ୍ୟ ଏକ ପଦରେ କବି ନାୟିକ ମାଧ୍ୟମରେ ଏକ ନିଷ୍ଠୁର ସତ୍ୟକୁ ପ୍ରକାଶ କରିଛନ୍ତି । ସାଧାରଣତଃ ମନୁଷ୍ୟ ବିପଦ ସମୟରେ ଧୈର୍ଯ୍ୟ ହରାଇ ଭଗବାନଙ୍କ ଶରଣାପନ୍ନ ହୁଏ । ନିଜ ଦୁର୍ବଳତାକୁ ନେଇ ଭଗବାନଙ୍କ ନିକଟରେ ଅଭିଯୋଗ ବାଢ଼ିଥାଏ । ଭଞ୍ଜେ ଏହି ନିୟମ ରକ୍ଷା କରିଛନ୍ତି । ନାୟିକ କାମ ବେଦନାରେ ଜର୍ଜରିତ ହୋଇ ମହାଦେବଙ୍କ ନିକଟରେ ଅଭିଯୋଗ ବାଢ଼ିଛି । କିମ୍ବଦନ୍ତୀ ଅନୁସାରେ :

ତାରକାସୁର ବଧ ନିମନ୍ତେ କାର୍ତ୍ତିକେୟଙ୍କ ଜନ୍ମ ଅପରିହାର୍ଯ୍ୟ ହୋଇ ପଡ଼ିବାରୁ କାମଦେବଙ୍କୁ ଈଶ୍ୱରଙ୍କ ନିକଟକୁ ପ୍ରେରଣ କରାଗଲା । କାମଦେବ ଈଶ୍ୱରଙ୍କ ତପସ୍ୟାଚରଣ ବେଳେ ପୁଷ୍ପଶର ପେଶି ଥିଲେ । ମହାଦେବଙ୍କ ହୃଦୟରେ କାମାଗ୍ନି ପ୍ରଜ୍ୱଳିତ କରି ପାର୍ବତୀଙ୍କ ପ୍ରତି ଆକୃଷ୍ଟ କରିବା ଏହାର ଉଦ୍ଦେଶ୍ୟ ଥିଲା ଯେତେବେଳେ ତପସ୍ୟାରେ ବିଘ୍ନ ଜାତହେବାରୁ କ୍ରୋଧାନ୍ୱିତ ହୋଇ ମହାଦେବଙ୍କ ତୃତୀୟ ନୟନ ଖୋଲି ଯାଇଥିଲା, ଓ ପରିଣାମ ସ୍ୱରୂପ ରତିପତି କନ୍ଦର୍ପ କ୍ରୋଧାଗ୍ନିରେ ଭସ୍ମ ହୋଇ ଯାଇଥିଲେ । କିନ୍ତୁ ପରି ମୁହୂର୍ତ୍ତରେ ଯେତେବେଳେ ମହାଦେବଙ୍କ ବିବାହ ପାର୍ବତୀଙ୍କ ସହ ଅନୁଷ୍ଠିତ ହୋଇଯାଇଛି, ସେତେବେଳେ ଶିବ, ପାର୍ବତୀଙ୍କୁ କ୍ଷଣେ ମାତ୍ର ନିଜପାର୍ଶ୍ୱରୁ ଦୂରେଇ ନାହାନ୍ତି । ଅଧିକନ୍ତୁ ସେ ଅର୍ଦ୍ଧାଙ୍ଗ ରୂପ ଧାରଣ କରି ପାର୍ବତୀଙ୍କୁ ନିଜ ସମୀପରେ ସ୍ଥାନ ଦେଇଛନ୍ତି । ଏହି ପ୍ରସଙ୍ଗକୁ ସ୍ମରଣ କରାଇ ନାୟିକ କହିଛିଯେ, "ମହାଦେବ ଯେତେବେଳେ ନାରୀକୁ ମୂର୍ଚ୍ଛିପାରି ନାହାନ୍ତି ସେତେବେଳେ ମୋ ଭଳି ସାଧାରଣ ଦେହଧାରୀ ମନୁଷ୍ୟ ବା କିପରି ସ୍ଥିର ହୋଇ ରହିପାରିବ । ଏପରି ଚିନ୍ତାକରି ତା' ନୟନରୁ ଲୋତକ ଧାର

ବହି ଦେଇ ଭଜି ଯାଉଛି । ଏତେବେଳେ ନାୟକର ଚିତ୍ତ ପୁନର୍ବାର ରସକଲେଖାର ବିପର୍ଯ୍ୟସ୍ତ ରତିକୁ ସ୍ମରଣ କରୁଛି । ରସଲେଖା ବିପର୍ଯ୍ୟସ୍ତ ରତିପ୍ରଦାନ କରିବା ସମୟରେ ନିତମ୍ବଭାରର ଶ୍ରମ ହେତୁ ତା ଶରୀରରୁ ନିର୍ଗତ ଘର୍ମରେ ନାୟକର ବକ୍ଷସ୍ଥଳ ସ୍ୱେଦସିକ୍ତ ହୋଇ ଯାଉଥିଲା କବିଙ୍କ ଉକ୍ତିରେ :

× × ×

ନେତ୍ରାନଳେ ଦହନ ଯଦି କଲେ ମଦନ
ନାଶିକି ମୂର୍ତ୍ତି ନପାରିଲେ ହେ ନବଘନ
କଲେ ସେ ଅର୍ଦ୍ଧାଙ୍ଗ ଭୂଷଣ, ଏମନ୍ତ ଭାବବତୀ ଜାଣି ସେ
ମୁଁ ସଂଯୋଗ ପାଶୋରି ପାରିବି କି କଠୋରି
ଅଛି ମୋ କେଉଁ ଦମ୍ଭପଣ

× ×

ଏମନ୍ତ ଭାବନା କରି ନୟନୁ ମୁଞ୍ଜି ବରି
ଉରି ଉନ୍ମାଇ ଦେଲା ତାର
ଭାବିଲା ବିପକ୍ଷତେ ଏ ଉର ଉଚ୍ଚେ ସତେ
ଭାମିନୀ ସ୍ୱେଦ ନୀର .... × ×

ଏପରି ଭାବନା କରିବା ବେଳେ ନାୟକ ଅଚେତନ ଅବସ୍ଥାକୁ ପ୍ରାପ୍ତ ହୋଇଛି । ଏଠାରେ ରାଜକୁମରର ବ୍ୟଥା ଓ ଆକୁଳତା ଅଧିକ ପରିପୁଷ୍ଟ ହୋଇ ଥିବାର ଅନୁମିତ । ପ୍ରାଣପ୍ରିୟା ରାଜକନ୍ୟାର ମନୋଜ୍ଞ ରୂପ, ଗୁଣାବଳୀର ସ୍ମରଣରେ ନାୟକର ବିରହ ସନ୍ତାପିତ ହୃଦୟ ଉପରି ଅଧିକ ବେଦନା ଜର୍ଜରିତ ହୋଇ ଯାଉଛି ତାହାର ଏକ ବାସ୍ତବ ରୂପରେଖ ଅଙ୍କିତ କରିବାରେ ଭଞ୍ଜ କବୀନ୍ଦ୍ର ସମର୍ଥ ହୋଇ ପାରିଛନ୍ତି ।

ପୁନଶ୍ଚ ନାୟକ ପାଇଁ ଉତ୍ସର୍ଗୀକୃତ ହୋଇଥିବା ରାଜକନ୍ୟାର ହୃଦୟ କନ୍ଦରରେ ଗୋପନୀୟ ବେଦନା ପ୍ରକାଶ କରିବାରେ କବି ସେ ଅବହେଳା କରି ନାହାନ୍ତି । ବିରହ ଜ୍ୱାଳାରେ ଦଗ୍ଧୀଭୂତା ନାୟିକା କାନ୍ତଗୁଣ ସୁମରି ହେଉଛନ୍ତି ଅତୀତର ସ୍ମୃତି ପେଟିକା ଉନ୍ମୋଚନ କରି ସେ କେତେକ ଘଟଣାବଳୀ ସାଉଁଟିଛି । ଏକଦା କୁମର ବଶୀଭୂତ ତାଙ୍କ ଶରୀରରେ ରସଲେଖାର ନଖକ୍ଷତ ଦେଖାଇ ଆକ୍ଷେପ କରିଥିଲେ ଯେ ମୁଁ କନ୍ଦର୍ପ ନିଶାରେ ତୋର ଭୃତ୍ୟ ହୋଇ ସାରିଲିଣି ଆଜି ଏହି ମଧୁର ସ୍ମୃତିର ରୋମନ୍ଥନ କରି ବାଳୀ ମଦନ ବାଣରେ ଆହତ

ହୋଇଛୁ । ଯେ ପତି ବିରହିଣୀ ଭାବେ ଏପରି ଜୀବିତ ରହିବାକୁ ନିଷ୍ପ୍ରୟୋଜନ ମନେ କରିଛୁ ।

କାନ୍ତ ବିରହିଣୀ କାନ୍ତାର ମାନସିକ ଉତ୍କଣ୍ଠା ପ୍ରତିଫଳିତ ହୋଇଛି । କବିଙ୍କ ନିମ୍ନୋକ୍ତିରେ :

ଅନାୟତେ ବାନ୍ଧିଥିଲେ କରିକି ମୋହର
ତାଙ୍କ ଦେହେ ଦେଖାଇ କହନ୍ତି ଏ ଗୀର
କି କରିବି ଏହି ମୋର, ତୋର ଯେ ଭୃତ୍ୟ ମୁଁ ହୋଇଲିଣି ସମାଦର

× × ×

କି ସୁଖ ଭୁଞ୍ଜିବି ଆଉ ରହି ଜୀବନ
ରହିଛି ଏ ପ୍ରୟୋଜନ । ଦାରୁଣ ମଦନ କରିବାକୁ ହନନ

ପରବର୍ତ୍ତୀ ପର୍ଯ୍ୟାୟରେ କବି ଏକ ବିବାହିତା ନାରୀର ସ୍ୱାମୀପ୍ରତି ଅନୁରକ୍ତି ଓ ତ୍ୟାଗ ପ୍ରକାଶ କରିଛନ୍ତି । ବିରହିଣୀ ନାୟିକା ରସଲେଖା ସ୍ୱାମୀ କଳିଭୂଷଣ ନିକଟକୁ ଚଉତିଶା ଲେଖିଛି । ଚଉତିଶାଟି ପତି ସୁହାଗିନୀ ନାୟିକାର ଭକ୍ତି, ନିଷ୍ଠା ତ୍ୟାଗ ଓ ଅନୁରକ୍ତି ଉପରେ ପର୍ଯ୍ୟବସିତ ।

ରସଲେଖା ସ୍ୱାମୀଙ୍କୁ ହଠାତ୍ ଏପରି ଅନ୍ତର୍ଦ୍ଧାନ ହୋଇଯିବା ଦେଖି ଭାବିଛି ହୁଏତ ତା ସ୍ୱାମୀ ଅନ୍ୟ କେଉଁ ରମଣୀର ପ୍ରେମରେ ଆସକ୍ତ ହୋଇ ରହିଛନ୍ତି । ତଥାପି ଏକଥା ପତି ସର୍ବସ୍ୱା ରସଲେଖା ଠାରେ ହିଂସା ଈର୍ଷା ଜାତ କରାଇ ନାହିଁ । ଯେହେତୁ ସେ ପତିପ୍ରାଣା । ଏଣୁ ପତିଙ୍କ ଖୁସିହିଁ ତାର ଏକମାତ୍ର କାମ୍ୟ । କିନ୍ତୁ ତା ସତ୍ତ୍ୱେ ବି ନାରୀ ଭାବରେ ସେ ପତି ମାନସ ଠାରୁ ନିଜ ମୋହ ତୁଟାଇ ପାରିନାହିଁ । ଏଣୁ ନାୟକକୁ ଅନୁରୋଧ ଛଳରେ କହିଛି, ସୁଧାଂଶୁ କୁମୁଦିନୀ ପ୍ରତି ଆସକ୍ତ ହେଲେ ବି ନିଜ ପତ୍ନୀ ରୋହିଣୀ ଠାରୁ ତ କେବେ ବିମୁଖ ହୋଇ ନାହାନ୍ତି । ସେହିପରି ଉମାପତି ମହାଦେବ ମନ୍ଦାକିନୀକୁ ଶିରରେ ଧାରଣ କରିବା ସତ୍ତ୍ୱେ ପାର୍ବତୀଙ୍କୁ ତ କେବେ ଉପେକ୍ଷା କରି ନାହାନ୍ତି । ଏଣୁ ତୁମେ ଅନ୍ୟ ନାରୀ ପ୍ରତି ଆସକ୍ତ ହେଲେ ସୁଦ୍ଧା ମୋ ପ୍ରତି ବିମୁଖ ହେବନାହିଁ ।

ନାୟିକାର ସ୍ୱାମୀ ଅନୁଗତା ପ୍ରାଣର ପରିସ୍ଫୁଟନ ହୋଇଛି କବିଙ୍କ ଏହି ଉକ୍ତିରେ :

ନ ଜାଣଇ କି ମୁଁ ତୁମ୍ଭେ ନୃପତି କୁମର
ଅନେକ ଯୁବତୀ ଆଶା ଅଛି ତୁମ୍ଭ ଠାରେ
ଉମାଶିବ ମନୋହାରୀ, ଗଙ୍ଗାକୁ ବରିଲେ ଶିରେ କ୍ଷୋଭ ନକରି

ଚନ୍ଦ୍ର ମନ ମୋହନୀ କୁମୁଦ ତାରାପତି
ତଥାପି କୁଟିଳକ ରୋହଣୀ ଠାରୁ ପ୍ରୀତି
ଅହେ ବିବେକୀ ଶେଖର, ଏ ଦୁଇ କଥା ମନରେ କରିବ ବିଚାର ।

ପୁନଶ୍ଚ ତାର ଏହି ଅଭିଯୋଗରେ ବଶୀଭୂତ ହୁଏତ ଅପରାଧୀ ମଣିବେ ନା ବ୍ୟଥିତ ହେବେ ଭାବି ସେ ବୁଝାଇ କହୁଛି—ବାସର ରାତିରେ ଏକ ପତ୍ନୀବ୍ରତ ଗ୍ରହଣ କରିବା କଥା ଭୁଲି ଯଦି ତୁମେ ଅନ୍ୟ ନାରୀ ଗ୍ରହଣ କରିଥାଅ, ତେବେ ବି ମୁଁ ଅଭିମାନ କରିବି ନାହିଁ । କାରଣ ମୁଁ ସବୁଦା ତୁମ ଚରଣ ଦାସୀ । ଏଣୁ ଭୃତ୍ୟ ହୋଇ ପ୍ରଭୁଙ୍କ ଠାରେ ରୋଷ କରିବା କ'ଣ ଶୋଭନୀୟ କି ? ବେଦନାତ୍ର ହୃଦୟର ଅଭିମାନ ଜନିତ ଅବ୍ୟକ୍ତ ରୁଦ୍ଧ ଭାବନା କବିଙ୍କ କମନୀୟ ଭାଷାରେ ଏପରି ପରିପ୍ରକାଶିତ—"ନିସ୍ଥୁର କରିଥିଲଁ ସେକଥା ନ ଯେନ

ତୁମ୍ଭେ ହେଲେ ବୋଲି ଭିନ୍ନ ମୁଁ କରିମନ
ପ୍ରାଣ ଥିଲେ ଏ ନୋହିବ, ପ୍ରଭୁ ସିନା ଭୃତ୍ୟ କୋପେ ଶୋଭା ହେବ"

କବିଙ୍କ ଉପର୍ଯ୍ୟୁକ୍ତ ଉକ୍ତିରେ ଶତି ଅନୁଗତା ପ୍ରାଣର ନିର୍ଖୁଣ ପରିସ୍ଫୁଟନ ହୋଇଛି ଭାରତୀୟ ସଂସ୍କୃତି ଓ ପରମ୍ପରାକୁ ବଜାୟ ରଖି କବି ନାୟିକାକୁ ପତି ପ୍ରାଣେତା କରାଇଛନ୍ତି । ଏଣୁ ସେ ସ୍ୱାମୀର ଖୁସି ପାଇଁ ସ୍ୱ ସ୍ୱାର୍ଥକୁ ବଳିଦେବା ପାଇଁ ଆଗଭର ହୋଇଛି । ଅବଶ୍ୟ ତା ହୃଦୟରେ ବିଚ୍ଛେଦର ଦୁରନ୍ତ ଜ୍ୱଳା ଥାଇପାରେ, ତଥାପି ତ୍ୟାଗର ମହିମାମୟ ପରିପ୍ରକାଶ ତା' ମଧ୍ୟରେ ଅନ୍ତଃସଲିଳା ଫଲ୍‌ଗୁ ଧାରାପରି ଅବ୍ୟାହତ ରହିଛି । ପତି ଅନୁରକ୍ତା ପ୍ରାଣର ଏକ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରିବାରେ ବାସ୍ତବିକ ଉପେନ୍ଦ୍ର ଭଞ୍ଜ ସିଦ୍ଧହସ୍ତ ।

ଏପରି ବିରହ ଦଶା ଭୋଗକରିବାର କିଛିକାଳ ଅତିବାହିତ ହେବାପରେ ପରିଶେଷରେ ନାୟକ-ନାୟିକାଙ୍କ ପୁନର୍ମିଳନ ଘଟିଛି ଓ ଉଭୟେ ସୁଖଶାନ୍ତି ସୁଖମୟ ଦାମ୍ପତ୍ୟ ଜୀବନ ବିତାଇଛନ୍ତି । ପୁନର୍ମିଳନ ଅବସରରେ ମାନ-ଅଭିମାନ, ରାଗ-ଅନୁରାଗର ଅବସରହିଁ ମିଳିନାହିଁ । ଉଭୟେ ବହୁ ଦିନର ସଞ୍ଚିତ ଭାବନା ଓ ରତୀଚ୍ଛାକୁ ଚରିତାର୍ଥ କରିବାରେ ହିଁ ସାରାରାତି କଟିଯାଇଛି । ଉଭୟଙ୍କ ଆନନ୍ଦର ଆବେଗକୁ ଦର୍ଶାଇବାକୁ ଯାଇ କବି ଖୁବ୍ ସୁନ୍ଦର ଉଦାହରଣଟିଏ ଦେଇଛନ୍ତି- ଯେପରି କ୍ଷୁଧାରେ ଆତୁର ବ୍ୟକ୍ତି କ୍ଷୁଧାର ଦାଉ ସହିନପାରି ଅମୃତ ଭୋଜନ ପାଇଁ କି ସୁନ୍ଦର ହେବ ପାଇଁ ଉଚିତ ମନେ କରେନା, ଠିକ୍ ସେହିପରି

ସମ୍ଭୋଗାଭିଳାଷୀ ଦମ୍ପତି ବହୁ ଦିନର ବ୍ୟବଧାନ ପରେ ପୁନର୍ମିଳନ ହୋଇ ଥିବାରୁ ମାନ-ଅଭିମାନ ବା ଗୂଢ଼ ବଚନ ଭାଷିବାର ଅବସର ପାଇନାହାନ୍ତି । କବିଙ୍କ ଉକ୍ତିରେ—

"ନାହିଁ କୋପ ଅବସର ନାହିଁ ଗୂଢ଼ କହିବାର
ମନ ଯେଣୁ ନୋହିଲା ଆୟତ୍ତ
ଅମୃତ ଭୋଜନ ପାଇଁ ଯଥା ଶୁଚିବନ୍ତ ନୋହି
ଭୁଞ୍ଜିବ ସେ ମହାକ୍ଷୁଧାବନ୍ତ ସେ
କାନ୍ତକଳା
ପରସ୍ପରେ ବଶ କଲେ ମତି
ରତି ଉତ୍ସବରେ ପୂରାଇଲେ ସତି ସେ"

ବାସ୍ତବିକ୍ ଉପେନ୍ଦ୍ର ଥିଲେ ଅସାଧାରଣ ଶୃଙ୍ଗାରୀ କବି । କିନ୍ତୁ ଶୃଙ୍ଗାରର ପରିସ୍ଫୁଟନରେ ମାତ୍ରାଧିକ ଭାବପ୍ରବଣତା ଯୋଗୁଁ ତାଙ୍କୁ ବେଳେବେଳେ ସମାଲୋଚନାର ଶିକାର ହେବାକୁ ପଡ଼ୁଥିଲା । ଶାଳୀନତାର ସୀମା ଉଲ୍ଲଙ୍ଘନ କରି ନାୟିକ ନାୟିକାର ଗୋପନାଙ୍ଗ ଓ ସମ୍ଭୋଗର ପୁଙ୍ଖାନୁପୁଙ୍ଖ ଚିତ୍ର ଆଙ୍କି ସେ ନିନ୍ଦାର ଶରବ୍ୟ ହୋଇଥିଲେ । କିନ୍ତୁ ତତ୍କାଳୀନ ସାମାଜିକ ଅବସ୍ଥାକୁ ଦୃଷ୍ଟି ଆଗରେ ରଖି ବିଚାର କରିବାକୁ ଗଲେ ଏହା ଅଶ୍ଳୀଳ ବିବେଚିତ ହୁଏନାହିଁ । କାରଣ ସେତେବେଳେ ପ୍ରଚଳିତ ପରକୀୟା ପ୍ରୀତି ଭଳି ଏକ ଅସାମାଜିକ ବ୍ୟାଧିର ସଂପୂର୍ଣ୍ଣ ନିରାକରଣ ପାଇଁ ସ୍ୱକୀୟା ପ୍ରୀତିର ଏପରି ପ୍ରାଞ୍ଜଳ ବର୍ଣ୍ଣନା ଏକାନ୍ତ ଅପରିହାର୍ଯ୍ୟ ମନେ ହୋଇଥିଲା । ବସ୍ତୁତଃ ଭଞ୍ଜ କବିଙ୍କୁ ଶୃଙ୍ଗାର କବି ଭାବେ ଧରି ନେଲେହେଁ ସମାଜ ପ୍ରତି ତାଙ୍କର କର୍ତ୍ତବ୍ୟ ଦିଗରେ ସେ ଗମ୍ଭୀର ସଚେତନ ଥିଲେ ଏହା ଅସ୍ୱୀକାର କରାଯାଇ ନପାରେ ।



ଅଧ୍ୟାପକ
ଓଡ଼ିଆ ବିଭାଗ
ଜୀବନ ଜ୍ୟୋତି ମହାବିଦ୍ୟାଳୟ
ରାଇକିଆ, ଫୁଲବାଣୀ

# ରସଲେଖାରେ ଉପେନ୍ଦ୍ରଙ୍କ ଭାବ ଓ ଶୈଳୀ

॥ ଡ଼କ୍ଟର ବିଦ୍ୟୁତ୍‌ଲତା ରାୟ ॥

ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର ଭଞ୍ଜ କବିସମ୍ରାଟ ରୂପେ ଖ୍ୟାତ । ୧୬୮୫ ରେ ସେ ଗଞ୍ଜାମ ଜିଲାର ନିଖିଳ-ନିସର୍ଗ-ଲାବଣ୍ୟ-ମଣ୍ଡିତ ଘୁମୁସର ରାଜ୍ୟର କୁଳାଗ୍ର କୀର୍ତ୍ତିରେ ଜନ୍ମ ଗ୍ରହଣ କରିଥିଲେ । ପିତା ନୀଳକଣ୍ଠ ଭଞ୍ଜ ଓ ପିତାମହ ଧନଞ୍ଜୟ ଭଞ୍ଜ ଥିଲେ । ତାଙ୍କର କବିକଳା ପାରିବାରିକ ପରିବେଷ୍ଟନୀରୁ ଉନ୍ନତ ହୋଇଥିଲା । ନୟାଗଡ଼ ରାଜଦରବାର ସେତେବେଳେ ସମଗ୍ର ଓଡ଼ିଶାର ସଂସ୍କୃତ ସାହିତ୍ୟ ଚର୍ଚ୍ଚାର ଏକ ପ୍ରଧାନ ପୀଠ ଥିଲା । ନୟାଗଡ଼ ରାଜା ପୁରୁଷୋତ୍ତମ ମାନଧାତା ଯୁବକ ଉପେନ୍ଦ୍ରଙ୍କ କାବ୍ୟ ପ୍ରତିଭାରେ ଓ ସାହିତ୍ୟ ସାଧନାରେ ମୁଗ୍ଧ ହୋଇ ତାଙ୍କୁ 'ବୀରବର' ଉପାଧିରେ ଭୂଷିତ କରିଥିଲେ । ପ୍ରେମସୁଧାନିଧି, ସୁବର୍ଣ୍ଣରେଖା, ରସଲେଖା, ଅବନାରସ ତରଙ୍ଗ, କଳାକୌତୁକ, ଲାବଣ୍ୟବତୀ, ଚିତ୍ରପଦ୍ମ ଭୂଷଣ, ରାମଲୀଳାମୃତ, ଗୋପୀହରା, ସୁଭଦ୍ରା ପରିଣୟ, ରସିକ ହାରାବଳୀ, ବଜାରବୋଲି, ରସପଞ୍ଚକ, ଯମକରାଜ ଚଉତିଶା, ଭାବବତୀ, ଚୌପଦୀ ଚନ୍ଦ୍ର, ଛାନ୍ଦଭୂଷଣ, ଗୀତାଭିଧାନ, ଦଶପୋଇ, ଛଅପୋଇ, ଚିତ୍ରକାବ୍ୟ ବନ୍ଧୋଦୟ, ପଞ୍ଚଶାୟକ ପ୍ରଭୃତି ବହୁ କାବ୍ୟକବିତାର ଜନକରୂପେ ଉପେନ୍ଦ୍ର ଖ୍ୟାତ ଅଛନ୍ତି । ତାଙ୍କର କାବ୍ୟାବଳୀକୁ ଲକ୍ଷ୍ୟ କଲେ କେତେକ କାବ୍ୟ ପୌରାଣିକ ବିଷୟରୁ ଆଧାରିତ ବୋଲି ଜଣାପଡ଼େ, ଉପେନ୍ଦ୍ରଙ୍କ ପୁରାଣଜ୍ଞାନ ଓ ଶାସ୍ତ୍ରୀୟ ପାଣ୍ଡିତ୍ୟ ଥିଲା ଅତି ଗଭୀର ଓ ବ୍ୟାପକ 'ରସଲେଖା' କାବ୍ୟ ତାଙ୍କର କାଳ୍ପନିକ କାବ୍ୟ ହେଲେ ମଧ୍ୟ ରସୋଦୟ ଜଙ୍ଗଲରେ କପିଳ ଋଷିଙ୍କର ୭୫୦ ଜଣ ଶିଷ୍ୟ ନୈମିଷାରଣ୍ୟରୁ ଆସି ପହଞ୍ଚିଥିଲେ ବୋଲି କହି କବି ପୌରାଣିକ ଛଟା ଦେଇଛନ୍ତି । ରସୋଦୟ ବଣରେ ଶିଷ୍ୟମାନେ କାମଭାବରେ ଉଚ୍ଚାଟ ହୋଇ ବିବାହ କରି ରହିଥିଲେ । ଋଷି କପିଳ ନିଜେ ଚୋଳରାଜାଙ୍କ କନ୍ୟାଙ୍କୁ ବିବାହ କଲେ, ତାଙ୍କର କନ୍ୟା ରୂପେ 'ରସଲେଖା' ଅବିର୍ଭୂତ ହେଲେ ।

ମଳୟଗିରିର ଉତ୍ତରରେ ସୁଧାନିଧି ପୁରର ରାଜକୁମାର ବିଧୂଭୂତ ସ୍ୱପ୍ନରେ ରସଲେଖାଙ୍କୁ ଦେଖି ତାଙ୍କୁ ପାଇବା ପାଇଁ ବ୍ୟସ୍ତ ହୋଇ ପଡ଼ିଛି । ଏଠାରେ ସଂସ୍କୃତ

ଗଦ୍ୟ କାବ୍ୟକାର ସୁବନ୍ଧୁ ଙ୍କ 'ବାସବଦତ୍ତା' ଓ ଭାସଙ୍କ 'ସ୍ୱପ୍ନବାସବଦତ୍ତା' ନାଟକର ଶୈଳୀରେ ହୁଏତ କବି ଆକର୍ଷିତ ହୋଇଛନ୍ତି । ଉଦୟନ ସ୍ୱପ୍ନରେ ବାସବ-ଦତ୍ତାଙ୍କ ସୌନ୍ଦର୍ଯ୍ୟରେ ଅଧୀର ହେଲା ପରି ଏଠାରେ ରାଜକୁମାର ରସଲେଖାର ଅପରୂପ ଲାବଣ୍ୟ କଳ୍ପନା ବିଳାସୀନେତ୍ରରେ ଦେଖିଛନ୍ତି ।

ଏଠାରେ ରସଲେଖାର ସୌନ୍ଦର୍ଯ୍ୟ ସରଳ, ସ୍ୱାଭାବିକ ଓ ସରସ ଶୈଳୀରେ କବି ବର୍ଣ୍ଣନା କରିଛନ୍ତି । ପାଦଠାରୁ ଶୀର୍ଷ ପର୍ଯ୍ୟନ୍ତ ନାୟିକାର ରୂପ ବର୍ଣ୍ଣନା କରାଯାଇଛି । କବି ଧର୍ମରେ ଗଭୀର ବିଶ୍ୱାସ କରୁଥିଲେ । ରାତିରେ ମାଆ ଜଗଜ୍ଜନନୀ ଅମ୍ବିକା ରାଜ କୁମାରଙ୍କୁ ରସୋଦୟ ଜଙ୍ଗଲକୁ ନେଇ ରସଲେଖାର ନିକଟବର୍ତ୍ତୀ କରାଇଛନ୍ତି । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଦେବୀଙ୍କୁ କବି ଗଭୀର ବିଶ୍ୱାସ କରୁଥିଲେ । ନିଜେ କୁଳଡ଼ ଦେବୀଙ୍କ କରୁଣା ଲାଭ କରିଥିଲେ । ଶୁଣାଯାଏ ନୟାଗଡ଼ ଯିବା ବାଟରେ ଘୋର ରାତିରେ ଜଣେ ତାନ୍ତ୍ରିକ ସାଧକ ଶ୍ମଶାନରେ ଶବ ପୃଷ୍ଠରେ ବସି କାଳୀଙ୍କୁ ଆବାହନ କରୁଥିବାର କବି ଉପେନ୍ଦ୍ର ଦେଖିଥିଲେ କାଳୀ ଦିବ୍ୟ-ପ୍ରଭାବରେ ଦିଗ୍ ବିଦିଗ ଉଦ୍ଭାସିତ କରି ଆବିର୍ଭୂତା ହେବାରୁ ସାଧକ ପୁଣ୍ୟ ଅଭାବରୁ ମୂର୍ଚ୍ଛା ହୋଇପଡ଼ିଥିଲା । ସେହି ବାଟରେ ଉପେନ୍ଦ୍ର ଅଶ୍ୱରେ ଚଢ଼ି ଯାଉଥିଲେ । ଏହି ଦୃଶ୍ୟ ଦେଖି ତତ୍‌କ୍ଷଣାତ୍ ଅଶ୍ୱ ପୃଷ୍ଠରୁ ଲମ୍ଫ ପ୍ରଦାନ କରି ସାଧକର ଉଦ୍ଦିଷ୍ଟ ଆସନ ଶବ ପିଠିରେ ସେ ବସି ପଡ଼ିଲେ ଓ ବଳୀ ପ୍ରଦାନ କରି ଶକ୍ତି ଆରାଧନା କଲେ । ପରମ ଭକ୍ତ ଓ ଲୋକୋତ୍ତର କବିତ୍ୱ ଶକ୍ତି କାଳୀଙ୍କୁ ଉପେନ୍ଦ୍ର ମାଗିଥିଲେ । ଦେବୀ ତଥାସ୍ତୁ କହିଥିଲେ । (ଭଞ୍ଜ ପ୍ରଭା,ପୃଷ୍ଠା)

ଏହି ରସଲେଖା କାବ୍ୟର ପ୍ରାରମ୍ଭରେ ରାଜକୁମାରଙ୍କୁ ଅମ୍ବିକା ସାହାଯ୍ୟ କଲେ ବୋଲି କବି କହିଛନ୍ତି—

ଏମନ୍ତ ନଡ ବଚନର ଅମ୍ବିକା କରୁଣା କରି
ରଜନୀ ତିନି ପ୍ରହର ଧରି ତା' କରଏ ।

ସେ ବନରେ ଛାଡ଼ିଦେଲେ ଯେଉଁପଥେ ଯେଜନ ଗଲେ
କିଛି ଜାଣି ନ ପାରିଲ ନିଶି ପାହିଲା ଏ ।

(ରସଲେଖା, ୩ । ୩୩, ୩୪)

ରସୋଦଧି ଜଙ୍ଗଲରେ ଋଷିକନ୍ୟା ରସଲେଖାଙ୍କୁ ରାଜକୁମାର ଲୁଚି ଲୁଚି ଦେଖିବାକୁ ଲାଗିଲେ । ଏଠାରେ 'ଅଭିଜ୍ଞାନ ଶକୁନ୍ତଲମ୍'ର ନାୟକ ଦୁଷ୍ମନ୍ତ କଣ୍ୱମୁନିଙ୍କ କନ୍ୟା ଶକୁନ୍ତଳାଙ୍କୁ ନିରୀକ୍ଷଣ କରିଥିବାର ପ୍ରଭାବ ପଡ଼ିଥିବାର ମନେହୁଏ । ସଂସ୍କୃତ ନାଟ୍ୟକାରମାନେ 'ବସନ୍ତ ଉତ୍ସବ' ମହାସମାରୋହରେ ପାଳନ କରିବା ବିଷୟ ବର୍ଣ୍ଣନା ଦେଇଛନ୍ତି । ଏଠାରେ ଭଞ୍ଜକବି ରସୋଦଧି ଜଙ୍ଗଲରେ ବସନ୍ତର ବର୍ଣ୍ଣନା ଅତୀବ ମଞ୍ଜୁଳ ଭାଷାରେ କରିଛନ୍ତି । ଜଙ୍ଗଲ ପୁଷ୍ପ ସୌରଭରେ ସୁରଭିତ । ପିକର କୁହୁ ବିରହୀ ବିରହିଣୀଙ୍କ ହୃଦୟରେ ଚମକ ଜଗାଏ । ଭ୍ରମରମାନେ ପୁଷ୍ପମାନଙ୍କରୁ ମଧୁପାନରେ ମତୁଆଲା ହୋଇ ଉଠନ୍ତି । କପୋତମାନଙ୍କର ମତୁଆଲା ହେବା ହୁଁ ହୁଁ ଶବ୍ଦ ଜଙ୍ଗଲର ନୀରବତାକୁ ଦୂର କରୁଛି । ନାୟକ ନାୟିକାର ଅଙ୍ଗ ସଂଗ ପାଇଁ ବ୍ୟାକୁଳ ହେବା ବେଳେ ପରିବେଶରେ ଲତାଟିଏ ବୃକ୍ଷର ସାହାଚର୍ଯ୍ୟ ଲାଭ ପାଇଁ ସତତ ଚେଷ୍ଟିତ । ବଣରେ ଶିବଙ୍କ ମନ୍ଦିର । ସେଠାରେ ଆରାଧନା ପାଇଁ ରସଲେଖା ସହଚରୀମାନଙ୍କ ଗହଣରେ ଯାଉଛି । ଯିବା ମଧ୍ୟରେ ପଥରେ ସଖୀମାନଙ୍କ ମେଳରେ ପୁଷ୍ପଚୟନ କରନ୍ତି । ସେଠାରେ ରାଜକୁମାର ଲୁଚି ଲୁଚି ଏମାନଙ୍କ କଥୋପକଥନ ଶୁଣିଛି । ଏହା ମଧ୍ୟ 'ଅଭିଜ୍ଞାନ ଶାକୁନ୍ତଲମ୍'ରେ ନାୟକ ଦୁଷ୍ମନ୍ତଙ୍କ ଚରିତ୍ର ମାଧ୍ୟମରେ କବି କାଳିଦାସ ଦର୍ଶାଇଛନ୍ତି, ଲତା ବୃକ୍ଷ ଗହଳରେ ମହାରାଜା ଦୁଷ୍ମନ୍ତ ଅନୁସୂୟା ପ୍ରିୟମ୍ବଦା ଓ ଶକୁନ୍ତଳାଙ୍କ କଥା ଶୁଣିଛନ୍ତି । ରସଲେଖାର ସୌନ୍ଦର୍ଯ୍ୟ ଭଞ୍ଜକବିଙ୍କ ବର୍ଣ୍ଣନାରେ ଅତିପ୍ରଖର ହୋଇଛି । ଯେପରି ଲତାର ଉହାଡ଼ରେ ରାଜକୁମାରଙ୍କୁ ମୁନିକନ୍ୟା ଅତୀବ ରସଲେଖା ଫୁଲ ତୋଳୁ ତୋଳୁ ଦେଖିଲା—

ଲୋହେ ଚୁମ୍ବକ ପରାୟେ କର୍ଷିଲା,
ଚାହିଁ ନ ଚାହିଁଲା ପ୍ରାୟେ ରହିଲା ।

ନେତ୍ର ପଥେ ମନକୁ ବୋଲି ତାର
ଡାର କରିବାକୁ ଗଲା ସୁନ୍ଦର ।

(ରସଲେଖା, ୫ | ୨୮)

ନାୟକ ନାୟିକା ପରସ୍ପର ସହ ଆକର୍ଷିତ ହେଲା ପରେ ସଖୀମାନଙ୍କ ଗହଣରେ ରସଲେଖା ଘରକୁ ଚାଲିଯାଇଛି । ଏହା ଫଳରେ ପ୍ରଣୟୀ ପ୍ରଣୟିନୀ ଉଭୟଙ୍କ ହୃଦୟରେ କାମଭାବର ଉଦ୍ରେକ ହୋଇ ଉଠିଛି । ନିଜ ନିଜର ମନୋ-

ବ୍ୟଞ୍ଜନା ପ୍ରକାଶ କରିବା ପାଇଁ ପରସ୍ପର ନିକଟକୁ ପତ୍ର ପ୍ରେରଣ କରିଛନ୍ତି । ସଂସ୍କୃତ ନାଟକରେ କାଳିଦାସ ପଦ୍ମପତ୍ରରେ ନାୟିକାକୁ ପ୍ରେମପତ୍ର ଲେଖାଇଲା ବେଳେ କବି ଉପେନ୍ଦ୍ର କେତକୀ ଦଳରେ ନାୟିକା ଚିଠାଉ ପ୍ରେରଣ କରିଛି । ସେତେବେଳେ ପକ୍ଷୀମାନେ ରାଜକୁମାରୀଙ୍କୁ ସମସ୍ତ କାର୍ଯ୍ୟରେ ସାହାଯ୍ୟ କରିଛନ୍ତି । ବଣରେ ରାଜକୁମାର ନିଦ୍ରାବସ୍ଥାରେ କେତକୀ ଦଳର ପତ୍ରଟି ନେଇ ପକ୍ଷୀ ଖଞ୍ଜି ଗୋଟାଳରେ- ସର୍ବଜନ ସତ୍ୟ କଥା ଲେଖି ଦେଇଗଲା ।

ଏହା ଲେଖି ଦେଇଗଲା ଖଡ଼ୁ ଅଙ୍କରେ
ଅତୁରେ ନ ପାଏ କାର୍ଯ୍ୟ କେଉଁ କାଳରେ ।

(ରସଲେଖା, ୬ । ୪୦)

ଅପର ପକ୍ଷରେ ରାଜକୁମାରର ପତ୍ରଟି ପଢ଼ି ପଢ଼ି ରସଲେଖା ଶରୀରରେ କାମର ଦଶଦଶା ପ୍ରକାଶ ପାଇବାରେ ଲାଗିଲା । ଆଲମ୍ବନ ଓ ଉଦ୍ଦୀପନ ବିଭାବ ରୂପେ ଜଙ୍ଗଲର ପରିବେଶ ଖୋରାକ ଯୋଗାଇଲା । ପିକର କୁହୁତାନ ବଜ୍ରପରି କର୍ଣ୍ଣ କୁହରରେ ଧ୍ୱନିତ ହେଲା । ମଳୟ ପବନ, ଅଳି ଗୁଞ୍ଜନ ପ୍ରଭୃତି ନାୟିକାର କାମ ଦୁଃଖକୁ ବଢ଼ାଇବାରେ ଲାଗିଲେ । ଅପର ପକ୍ଷରେ କୁମାରର ମାରଦଶା ଅତି ତୀବ୍ରତର । ନାୟକ ନାୟିକା ଉଭୟଙ୍କର ପୂର୍ବରାଗ ବର୍ଣ୍ଣନାରେ କବି ଉତ୍କୃଷ୍ଟତା ଦର୍ଶାଇଛନ୍ତି । ରାଜକୁମାର ଥରେ ମାତ୍ର ଜଙ୍ଗଲରେ ଗୋପନରେ ରସଲେଖାକୁ ଦେଖିଥିଲେହେଁ କିପରି ବିରହରେ ମ୍ରିୟମାଣ ତାହା ଉପେନ୍ଦ୍ରଙ୍କ ଲେଖନୀରେ ଝରିଛନ୍ତି । ଏହାହିଁ କବି ଜୟଦେବ 'ଗୀତ ଗୋବିନ୍ଦମ୍'ରେ ବର୍ଣ୍ଣନା କରନ୍ତି ଓ ସେହି ବର୍ଣ୍ଣନା ହିନ୍ଦୀ କାବ୍ୟକାର ବିଦ୍ୟାପତିଙ୍କ ଭାଷାରେ–

ସରସିଜ ବିନୁ ସର ସର ବିନୁ ସରସିଜ
କୀ ସରସିଜ ବିନୁ ସୂରେ
ଜୌବନ ବିନୁ ତନ, ତନ ବିନୁ ଜୌବନ
କୀ ଜୌବନ ପ୍ରିୟ ଦୂରେ
ସଖି ହେ,
ମୋର ବଡ଼ ଦୈବ ବିରୋଧୀ

(ବିଦ୍ୟାପତି ପଦ୍ୟାବଳୀ, ପୃ ୩୬୨)

ବିରହବେଳେ ନାୟିକା ଅତ୍ୟନ୍ତ ଅସୁସ୍ଥ ହୋଇ ପଡ଼େ, ଶରୀର କ୍ଷୀଣ ଦେଖାଯାଏ, ମହାକବି 'ଅଭିଜ୍ଞାନ ଶାକୁନ୍ତଲମ୍'ରେ ନାୟିକା ଶକୁନ୍ତଳାର ବିରହ ଦଶା ଅତୀବ ମର୍ମନ୍ତୁଦ ହେବାରୁ ଶୀତଳ ଉପଚାର ମୃଣାଳ, କେଶାଚେର ପ୍ରଭୃତି ରୂପେ ଗ୍ରହଣ କରିଛନ୍ତି । ତଥାପି ନାୟିକା କମନୀୟ ଦିଶେ ।

ସ୍ତନନ୍ୟସ୍ତୋଶୀରଂ ପ୍ରଶିଥିଲ ମୃଣାଳୈକ-ବଲୟମ୍
ପ୍ରିୟାୟାଃ ସାବାଧଂ କମପି କମନୀୟଂ ବପୁରିଦମ୍
ସମସ୍ତାପଃ କାମଂ ମନସିଜ-ନିଦାଘ ପ୍ରସରୟୋ
ନ ତୁ ଗ୍ରୀଷ୍ମସ୍ୟୈବଂ ସୁଭଗମପରାଦ୍ଧଂ ଯୁବତିଷୁ

(ଅଭିଜ୍ଞାନ ଶାକୁନ୍ତଲମ୍, ୩/୭)

ବିରହ ଅବସ୍ଥାରେ କବି ସମ୍ରାଟ ରସଲେଖା ରାଜକୁମାରଙ୍କୁ ଓ ରାଜକୁମାର ଚନ୍ଦ୍ରରେଖା ସମୀପକୁ ପତ୍ର ପ୍ରେରଣ ବ୍ୟାଜରେ ଉଭୟଙ୍କ ମନ ଭାବନା କାବ୍ୟ ମଧ୍ୟରେ ଫୁଟାଇଛନ୍ତି । କବି ବିଭିନ୍ନ କାବ୍ୟରେ ଶୃଙ୍ଗାର ରସର ଅତୁଟ ବର୍ଣ୍ଣନା କଲେ ମଧ୍ୟ ନିଜର ମୌଳିକତା ଭିନ୍ନ ଭିନ୍ନ ଅଳଙ୍କାରିକତା, ସଂଯୋଜନା ଶୈଳୀ ଓ ଲେଖନର ଚାତୁରୀ ପାଠକ ନିକଟରେ ଯାଦୁର ଝଲକ ଦିଏ । ତାହା ହିଁ ଏହି କାବ୍ୟରେ ଆମେ ଦେଖୁ । ପାଠକର ହୃଦୟ ଚମତ୍କାର ସ୍ପର୍ଶ ଲାଭ କରେ । ସଖୀ କହନ୍ତି ରାଜକୁମାର ସହ ରସଲେଖାର ମିଳନ ନାରଦ ମୁନିଙ୍କ କରୁଣାରୁ ଘଟିଯାଉ ବୋଲି ସଖୀ ମୁଖରେ ଅନୁପ୍ରାସ ଅଳଙ୍କାର ଶୈଳୀରେ—

ଖ୍ୟାତ ଉପୁଜାଇ ଭିତ୍ତିକି ଭଜାଇ
ପ୍ରକାଶ ହେବାକୁ ପ୍ରୀତି
ଯୋଗ ହେବା ଯୋଗ ହୋଇବ ଦୁହିଁଙ୍କ
ଅଇଲେ ନାରଦ ଯତି ।

(ରସଲେଖା, ୧୧/୧୦)

ଏହି କାବ୍ୟଟିରେ କବି ବହୁ ଅଲୌକିକତା ସଂଯୋଜନା କରିଛନ୍ତି । ମର୍ତ୍ତ୍ୟର ନରନାରୀଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ ପାଇଁ ସାହାଯ୍ୟ କରିବାକୁ ନାରଦ ମହର୍ଷି ଯୋଗିନୀକୁ ରସୋଦୟ ଅଟବୀକୁ ପଠାଇଛନ୍ତି । ରାଜର୍ଷି ସମ୍ମୁଖରେ ଯୋଗିନୀ ରାଜକୁମାରଙ୍କ ଚିତ୍ରପଟ ଦେଖାଇ କୁମାରୀର ବିବାହ ସମ୍ପନ୍ନ କରିବାପାଇଁ କହୁଛି ନ କଲେ ଅନିଷ୍ଟ ହେବ ବୋଲି କବି କହନ୍ତି—

ଏଥିରେ ମନ୍ଦ ଉପୁଜିବ କହେ ସେନ
ଦେଖା ଏଡ଼େପଟ ଯାହାରେ ଲମ୍ପଟ ତାହାରେ କର ପର ଦାନ ।
(ରସଲେଖା, ୧୬/୪)

ଯୋଗିନୀ ରାଜର୍ଷିଙ୍କୁ ପଟ ଦେଖାଇଲା ପରେ ଚୂଡ଼ା ଦାସୀ ସହ ରସଲେଖା ନିକଟରେ ରାଜକୁମାରଙ୍କ ଶୌର୍ଯ୍ୟ, ବୀର୍ଯ୍ୟ ଓ ପ୍ରତାପ ସମ୍ବନ୍ଧରେ ସୁନ୍ଦର ଦୃଶ୍ୟ ଉପସ୍ଥାପନ କରିଛନ୍ତି । ନାୟକର ରୂପ ବର୍ଣ୍ଣନାରେ ଯୋଗିନୀ ଶତମୁଖ, ଉପେନ୍ଦ୍ରଙ୍କ ସମସ୍ତ ନାୟକ ଓ ନାୟିକାମାନେ ରାଜବଂଶୀୟ ସାଧାରଣ ନରନାରୀ ନୁହନ୍ତି । ଏଠାରେ ନାୟିକାର ପିତା ଋଷି ଓ ମାଆ ରାଜନନ୍ଦିନୀ । ସେ ସମୟରେ ରାଜାମାନେ ସର୍ବଗୁଣାଲଙ୍କୃତ ରୂପେ ଗୃହୀତ ହେଉଥିଲେ । ବ୍ରାହ୍ମଣ, ବୈଶ୍ୟ ଜ୍ୟୋତିଷ ପ୍ରଭୃତି ସହଚର ବୃନ୍ଦ ଥିଲେ । ଏଠାରେ କବିଙ୍କ କାବ୍ୟକଳାର ପ୍ରଧାନ ଉପଜୀବ୍ୟ ବିଷୟ ଭାବ ପ୍ରବଣ ପ୍ରେମ ଓ ଚିଦାନନ୍ଦ ତନ୍ମୟଭକ୍ତି । ପ୍ରେମ ଓ ପ୍ରେମ ଭକ୍ତି ଉଭୟ ରସାଲତାକୁ ପ୍ରାଣ କରି ଭଞ୍ଜୀୟ କାବ୍ୟ ରତ୍ନ କୁଟିରେ ଶବ୍ଦାଲଙ୍କାର ଓ ସଙ୍ଗୀତ ମାଧୁର୍ଯ୍ୟର ବିଚିତ୍ର ବିକାଶ ହୋଇଛି । ପୃଥିବୀର ଯେ କୌଣସି ଦେଶର ଲୋକ ଜାତି-ବର୍ଣ୍ଣ ନିର୍ବିଶେଷରେ ଯେ ତା ଭକ୍ତି ପ୍ରୀତି-ପ୍ରବଣ ହୃଦୟର ରସାସ୍ୱାଦ ପ୍ରୟୋଜନ ସିଦ୍ଧି ଭଞ୍ଜୀୟ କାବ୍ୟ ମୂର୍ଚ୍ଛନାରେ ଲାଭ କରିପାରିବ । ଏହା ହିଁ ରସଲେଖା କାବ୍ୟର ବିଶେଷତ୍ୱ । 'ଗୀତଗୋବିନ୍ଦ' ବା 'ମେଘଦୂତ' ଠାରୁ ରସଲେଖା କାବ୍ୟଟି ଅଧିକ ମୂର୍ଚ୍ଛନାମୟ ରାଜକୁମାର କାଳିଦାସଙ୍କ ଯକ୍ଷଠାରୁ ଅଧିକ ଭାବମୟ ପୁରୁଷ । ଚିର ପ୍ରବହମାନ ସ୍ରୋତ ପ୍ରଚୁର ଭାବ ପ୍ରବଣତା ପ୍ରାକୃତ ପ୍ରେମ ଓ ଅପ୍ରାକୃତ ଭଗବତ୍ ପ୍ରେମ ରୂପରେ ବିକଶିତ ହୋଇଥାଏ । ଏହି ଭାବ ପ୍ରବଣତାକୁ ଲକ୍ଷ୍ୟ କରି କବି ସୃଙ୍ଖଳ ଅଥଚ ନିବିଡ଼ ଭାବ ଉଦ୍‌ବେଳନକୁ ରୂପ ଦେଇଛନ୍ତି । ଆନନ୍ଦାପ୍ଲୁତ ତନ୍ମୟତା ପ୍ରାକୃତ ପ୍ରେମ ମାଧ୍ୟମରେ ଶରୀରଭୂତ ଆତ୍ମାକୁ ପ୍ରଥମେ ସ୍ପର୍ଶ କରେ ବୋଲି ତାନ୍ତ୍ରିକ ସାହିତ୍ୟରେ ପ୍ରାକୃତ ପ୍ରେମର କୀର୍ତ୍ତନର ପ୍ରଚୁରତା ଲକ୍ଷ୍ୟ କରାଯାଏ । ଦୈହିକ ସମ୍ପଦ ବ୍ୟକ୍ତି କୈନ୍ଦ୍ରିକ କିନ୍ତୁ କାବ୍ୟ, ନୃତ୍ୟ, ଭାସ୍କର୍ଯ୍ୟ ମାଧ୍ୟମରେ ବିକଶିତ ରସାନୁଭୂତି ଏକ କାଳରେ ବହୁ ବ୍ୟକ୍ତି ଓ ବହୁକାଳରେ ଏକ ବ୍ୟକ୍ତିଙ୍କୁ ଅଖଣ୍ଡ ଆନନ୍ଦ ପରିବେଷଣ କରିଥାଏ । ରାଜକୁମାର ରସଲେଖା ପ୍ରତି ଅନୁରକ୍ତ ବୋଲି ଅତ୍ୟନ୍ତ ସାବଲୀଳ ଶୈଳୀରେ କବି କହନ୍ତି —

ଭଜିଅଛି ଯେବେ ସେ କେଉଁ ପ୍ରକାରେ
ଜାଣିଲି ସେ ସାନ ନୁହଁଇ
ବସନ୍ତ ଅନୁସର ସିନା କୋକିଳ
ସରସ ବଚନ କହଇ

କାଳାରେ, ଏବେ ସେ ନୃପତି ନନ୍ଦନ
ନୂକେ ହେଲ ଏବେ ମାଗିବା ସମ୍ପଦ ଲଭିବା ପଥରେ ସୁମନ ।

(ରସଲେଖା, ୧୦/୧୯)

କବିଙ୍କ ଲେଖନୀ ଉକ୍ତ କାବ୍ୟରେ ଚମତ୍କାର କୌଶଳରେ ଚରିତ୍ରାଙ୍କର୍ଷକ ସନ୍ଦର୍ଭ ମଧ୍ୟରେ ମଧ୍ୟରେ ଭାବରସାନୁମୋଦିତ ରୀତିରେ ବାସ୍ତବସ୍ତୁ ପରିବେଷଣ କରାଯାଇଛି । ରଚନାର ପ୍ରତି ପର୍ଯ୍ୟାୟରେ ମନସ୍ତାତ୍ତ୍ୱିକ ଚିତ୍ରଣ ଗୁରୁତ୍ୱ ଏହି କାବ୍ୟରେ ଲକ୍ଷ୍ୟ କରାଯାଇପାରେ । ଚରିତ୍ରଚିତ୍ରଣ କ୍ରମରେ ଏବଂ ଏହି ମନସ୍ତାତ୍ତ୍ୱିକ ଚିତ୍ରଣ ନିମିତ୍ତ ଭାବବ୍ୟଞ୍ଜନା ଓ ରସାବେଶମୟ କଳ୍ପନା-ବିଳାସ କବିଙ୍କୁ ଏଠାରେ ଉନ୍ନତ ସ୍ତର ଦେଇଛି । ତାଙ୍କ ଏହି କାବ୍ୟର ଅପରିମିତ ମାଧୁର୍ଯ୍ୟ ଉପଲବ୍ଧି କରିବାକୁ ହେଲେ ତାଙ୍କ ପ୍ରତ୍ୟେକ କଳ୍ପନା ବିଳାସ ସଙ୍ଗେ ଐକାନ୍ତିକ ଭାବରେ ପାଠକ ଗତି କରିବା ଆବଶ୍ୟକ ତାହା ନ ହେଲେ ରଚନାର ବହୁମୁଖୀ ଉପାଦେୟତା ଅନୁସରଣ କରିବା ସୁଦୂର ପରାହତ ହେବ । ଯୋଗମାୟା ବଳରେ (ଦେବୀଙ୍କ) ଦୁଇଟି ସ୍ୱପ୍ନାନୁରାଗ ସମ୍ପନ୍ନ ତରୁଣ ତରୁଣୀଙ୍କର ଅପୂର୍ବ, ଅଦ୍ଭୁତ ଓ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ମିଳନ ରସୋଦୟ କୌଶଳରେ କବି ଏହି କାବ୍ୟରେ ଦେଖାଇଛନ୍ତି । ଅନୁରୂପ ଆକର୍ଷଣର ଚମତ୍କାରିତାକୁ ବଢ଼ାଇ ଦେଇଛି ପତ୍ର ବିନିମୟ, ଦାସୀ ପତ୍ର ନେଇ ରସଲେଖାକୁ ଦେବା ଓ ଖଣ୍ଡରେ ଲେଖିଦେଇ ଯିବା ପ୍ରସଙ୍ଗ ନାୟକ ନାୟିକା ଉଭୟଙ୍କର ଉତ୍କଣ୍ଠାକୁ ବଢ଼ାଇ ଦେଇଛି, ପଦରେ ଅନୁପ୍ରାସ, ଗମ୍ଭୀର ଭାବବ୍ୟଞ୍ଜନା ଓ ଶବ୍ଦ ଯୋଜନାର ଚାତୁର୍ଯ୍ୟ ପରିଲକ୍ଷିତ ହୁଏ । ରାଜକୁମାର ଓ ରସଲେଖାଙ୍କର ଅନ୍ତଃସ୍ଥ ଦ୍ୱନ୍ଦ୍ୱିକ ଜନିତ ଅବସ୍ଥା ସୁନ୍ଦର ରୂପେ ଭଙ୍ଗୀୟୁକ୍ତ କୃତିତ୍ୱ ପରିଲକ୍ଷିତ ହୋଇଛି ବାସ୍ତବ ଘଟଣାକୁ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ବିଚାର କରି ଯଥୋଚିତ ସ୍ଥାନରେ ଯଥାର୍ଥ ବୋଧକ ରୀତିରେ ଥୋଇବା କୌଶଳ ଉପେନ୍ଦ୍ରଙ୍କର ଥିଲା ଅଦ୍ଭୁତ । ପ୍ରତି ଛନ୍ଦରେ ମନସ୍ତତ୍ତ୍ୱ ଓ ଗମ୍ଭୀର ଭାବବ୍ୟଞ୍ଜନା ଏବଂ ପ୍ରତି ପର୍ଯ୍ୟାୟ ଏକାନ୍ତ ହୃଦୟସ୍ପର୍ଶୀ ହୋଇ ଉଠିଛି କରୁଣ ରସର ଅପୂର୍ବ ଉତ୍କର୍ଷମୟୀ ରୀତି ଅନୁସରଣ କରି । ବଳିଷ୍ଠ କବି ପକ୍ଷେ ଏଭଳି ଚିତ୍ରଣ ହିଁ ସର୍ବଥା ସ୍ୱାଭାବିକ ।

ହେ  ନା  ଗର  କିଶୋର ସୁନ୍ଦର ସୃଷ୍ଟି ରୂପ
କ  ହି  ନୁହଇ ରୂପ ସମାନ ପୁଷ୍ପ ଚାପ ଯେ,
ଜ  ଗ  ତର  ପେଶଲ ଚନ୍ଦ୍ରମା ସରି କାନ୍ତି
ପ  ଡି  ବଲେ  କନରୁ ଲଭିଲ ରସବନ୍ତି ଯେ,

ହେ ରୁ ହର ଶ ପଶୁରେ ଦେବାକୁ ହୋଇଲା
କୂ ମ୍ଭ ସ୍ତନା ବଶକୁ କ ମନ୍ତ୍ର ଭଅଇଲା ଯେ ।
ଚ ବ ପ୍ରାପ୍ତେ କ୍ଷା ହୁଅଛୁ ଚନ୍ଦ୍ରମା ବଦନ
ଅ ନୁ ଭବ ହୁ ନା ସିନା ହେଉଛୁ ଏମନ ଯେ ।

ଥ ର ଥର ବେଲୁ ବେଲ ହୁଏ ଁଷ୍ଟ କାନ୍ତୁ
ନା ଶ ଗଲା ଗଜପତ ହୃଦୁ ଚର୍ମ ତନୁ ଯେ ।

ସ ଦା ପୂର ଲ ବାଲା ମନ ନୟନରେ
ପା ଇ କ ଏ ଖେଡ ନାହିଁ ଗ୍ରାମାରୁମ୍ଭ ଠାରେ ଯେ ।

ଏ କା ଦଶୀ କରୁଣା କରକ ନ ସ ଶବ
ହୃ ଦ ହର ରମଣି କେତେ ହେଁ ସୁମଶବ ଯେ ।

(ରସଲେଖା, ୧୦/୨୨-୨୮)

ଶୀତ୍‌ର ମନୋଜ୍ଞ ଭଙ୍ଗୀ, ଶବ୍ଦ ଯୋଜନାର ଅପୂର୍ବ ଚମତ୍କାରିତା, ଅବସ୍ଥାଗତ ପ୍ରସଙ୍ଗାବଳୀର ଚଞ୍ଚଳ ଚିତ୍ରଣ ପ୍ରଭୃତି ଏହି ପଦଗୁଡ଼ିକରେ ଅନୁଧେୟ । ପ୍ରଥମ (ଆଦ୍ୟ) ଅକ୍ଷର ଶ୍ରେଣୀ ପ୍ରତି ଧାଡ଼ିର ଦ୍ୱିତୀୟ ଅକ୍ଷରକୁ ତଳକୁ ତଳ ପଢ଼ିଲେ ରସ ମାଧୁର୍ଯ୍ୟ ଉପଲବ୍ଧି ଏଠାରେ କରାଯାଏ । ସ୍ୱଚ୍ଛନ୍ଦ ହସ୍ତ କବି ଏଠାରେ ଶବ୍ଦ ବୈଭବ ଓ ଶବ୍ଦାର୍ଥ ବିହିତ ଭାବ ବିନ୍ୟାସ ଯଥୋଚିତ ଅଲଙ୍କାର ପ୍ରୟୋଗ ବଳରେ ବିଷୟର ଯେଉଁ ଚିତ୍ରଣ ବିଶେଷତ୍ୱ ରସଲେଖା କାବ୍ୟରେ କରାଯାଇଛି ତାହାର ମୌଳିକ ମାଧୁର୍ଯ୍ୟ କେବଳ କବି ପ୍ରାଣ ରସାଳ ଦଗ୍ଧ ହୃଦୟ ହିଁ ଅବଧାରଣା କରିପାରେ ।

ନାରଦଙ୍କ ସାହଚର୍ଯ୍ୟରେ ହିଁ ରସଲେଖା ଓ ରାଜକୁମାରଙ୍କ ବିବାହ ସମ୍ପନ୍ନ ହେଲା । ବିବାହ ପରେ ମଧୁଶଯ୍ୟା ଗୃହକୁ ନେବାପାଇଁ ସଖୀମାନେ ରାଜକନ୍ୟାକୁ ଯେଉଁ ପ୍ରକାର ସାଜ ସଜା କଲେ, ତାହା ଉତ୍କଳୀୟ ପରମ୍ପରାକୁ ସୂଚାଏ । ଅନୁପ୍ରାସ ଓ ଯମକ ଅଲଙ୍କାରରେ କବି ଏ ଛନ୍ଦରେ ନିଜର ଉତ୍କର୍ଷତା ଦର୍ଶାଇଛନ୍ତି । କାବ୍ୟ ଯୋଜନାରେ ଭାବ, ରସ ଓ ପ୍ରସଙ୍ଗ ଗୁଡ଼ିକର କ୍ରମକୁ ଯଥାରୀତି ଅନୁସରଣ କରୁଥିଲାବେଳେ ସେଗୁଡ଼ିକ ବିଭିନ୍ନତା ଦୃଷ୍ଟିରୁ ଭାଷାର ରୂପ ବଦଳିବାକୁ ବାଧ୍ୟ । ସରସ କବିମାନେ ହିଁ ଏହି ମାର୍ଗ ଅନୁସରଣ କରିଥାନ୍ତି, ପ୍ରସାଦ, ଓଜ ଓ ମାଧୁର୍ଯ୍ୟ ପ୍ରଭୃତି ଗୁଣତ୍ରୟୀ ଭାଷାର କ୍ରମ ସେହିଭଳି ନ ହେଲେ ରଚନା ସର୍ବଥା ଦୋଷ ଦୁଷ୍ଟ ହୋଇପଡ଼େ । ବୀର ରସକୁ କରୁଣ ରସାଶ୍ରିତ ଭାଷାରେ ରୂପ ଦେବା ଯେପରି ଅସମୀଚୀନ, କରୁଣକୁ ବୀର, ଶୃଙ୍ଗାର, ଭୟାନକ ପ୍ରଭୃତିରେ ବର୍ଣ୍ଣନା କରିବା ତତୋଽଧିକ ହାସ୍ୟାସ୍ପଦ । ତେଣୁ ତତ୍‌ସମ ଓ ତଦ୍‌ଭବ ଶବ୍ଦାବଳୀର ପ୍ରୟୋଗ ଉନ୍ନତ ସାହିତ୍ୟର ଭାଷା ଲାଗି ଏକାନ୍ତ ପ୍ରୟୋଜନ ।

ସଦ୍ୟ ବିବାହିତା ନାରୀର ଉତ୍କଳୀୟ ପରମ୍ପରାରେ ଚୂଡ଼ି, ତାଡ଼, ମୁଦି ପ୍ରଭୃତି ହାତରେ ଓ ପାଦରେ ଝୁଣ୍ଟିଆ ଶୋଭାପାଏ । ପାଟଶାଢ଼ୀରେ ସରୁ ଧଡି ରହିଥାଏ । ତାହା ହିଁ ଉପେନ୍ଦ୍ରଙ୍କ ନାୟିକା ରସଲେଖା ଏଠାରେ ପିନ୍ଧିଛି । ସଖିମାନେ ତାମ୍ବୁଳ ଖୁଆଇ ନବୋଢ଼ାର ଅଧର ରକ୍ତିମ ଆଭା ଫୁଟାଇଛନ୍ତି । ଏହି ବର୍ଣ୍ଣନା ଅନୁପ୍ରାସ ଅଳଙ୍କାରରେ ରୁଚିମନ୍ତ ହୋଇଛି । ଏତଦ୍ ଭିନ୍ନ ମଧୁଶଯ୍ୟା ଘରେ ନାୟକ ନାୟିକାଙ୍କର ମିଳନ ବର୍ଣ୍ଣନ କରିଛନ୍ତି କବି ସମ୍ରାଟ । ସାଧାରଣତଃ ନାରୀ ଲଜ୍ଜାଶୀଳ ସଖୀମାନେ ବାସର ଘରେ ନାୟିକାକୁ ଛାଡ଼ି ଦେଇଗଲେ । ସମ୍ଭୋଗ ଶୃଙ୍ଗାରର ବର୍ଣ୍ଣନା ଅତ୍ୟନ୍ତ ଚମତ୍କାର ଏଠାରେ ହୋଇଛି । ପତି ଓ ପତ୍ନୀ ଶୟନରେ ଏକାକାର ପରିଦୃଷ୍ଟ ହୁଅନ୍ତି । ଭଙ୍ଗୀୟ ପରିକଳ୍ପନା ବିଳାସ ଏଥିରେ ସ୍ୱତନ୍ତ୍ର ହାନର ଆଭାସ ଦିଏ । କାମ ଶାସ୍ତ୍ରର ବିଭିନ୍ନ ପର୍ଯ୍ୟାୟ କ୍ରମେ ଯାହା ଅନୁମୋଦିତ, ଯାହା ବାତ୍ସ୍ୟାୟନ ମହର୍ଷିଙ୍କ ନିର୍ଦ୍ଦେଶ ଓ ନିର୍ଦ୍ଧାରଣ ବହନ କରେ, ତାହା ହିଁ ସ୍ୱଳ୍ପାଂଶରେ ଏହି ଠାରେ ନାୟକନାୟିକାଙ୍କର ମିଳନ ବର୍ଣ୍ଣନାରେ, କୁହି ଯାଇଛି । ଭଗବାନ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ପ୍ରଣୀତ 'ଆନନ୍ଦ ଲହରୀ' ରେ ଆତ୍ମାମ୍ବିକା, ରସର ଘନ ପ୍ଲାବନରେ ସରସ ବ୍ରହ୍ମବାଦୀର (ବ୍ରହ୍ମାନନ୍ଦ ରସାନୁଗତ) ପ୍ରାଣକୁ ନମିତ କଲାବେଳେ ଭଗବତୀଙ୍କ ବକ୍ଷ ଦେଶର ରୋମାବଳୀ ଓ ନାଭିର ମଧ୍ୟ ବର୍ଣ୍ଣନା ଚମତ୍କାର ଭାବରେ । ଏହି ବ୍ରହ୍ମାନନ୍ଦ ଲାଭ କରିଛି ଭଗବତୀ ପୂଜାରେ—

ହରକ୍ରୋଧ ଜ୍ୱାଳା ବଳଭିର ବଳୀଢେନ ବପୁଷା
ଗଭୀରେ ତ୍ୱନାଭୀ-ସରସି କୃତ ଝମ୍ପୋ ମନସିଜ
ସମୁତ୍ତସ୍ଥୌ ସ୍ମା । ନୟମ ଧୂବଳା ଧୂମଲତିକା
ଜନସ୍ତାଂ ଜାନୀତେ ଜନନୀ ! ତବ ରୋମାବଳି ରିତି ।

(ଆନନ୍ଦ ଲହରୀ)

ତେଣୁ ଉପେନ୍ଦ୍ରଙ୍କ ବର୍ଣ୍ଣନାର ମାଧୁରିମା ପରିପୂର୍ଣ୍ଣ ରାଜକୁମାର ନାୟିକାର ଅଧରପାନରେ ଚତୁର୍ବର୍ଗ ସୁଖ ଲାଭ କଲା ବୋଲି କବି କହିଛନ୍ତି ।

ରୁଦ୍ଧିଗୁଣ୍ଠେ ଚତୁର ଚୁମ୍ବିଲା ଚନ୍ଦ୍ରମୁଖ
ଲୁଟି କରି ପକାଇଲା ଚତୁର୍ବର୍ଗ ସୁଖ ଯେ ।

(ରସଲେଖା ୧୪/୭୪)

ରାଜକୁମାର ନିଜ ରାଜ୍ୟରୁ ଅଲୌକିକ ଭାବରେ ରସୋଦୟ ଅଟବୀରେ ସମୟ ଅତିକ୍ରାନ୍ତ ବେଳେ ତାଙ୍କ ପିତା ପୁତ୍ର ବିଚ୍ଛେଦରେ ବ୍ୟସ୍ତ । କବି ଏଠାରେ

ସ୍ୱ ଭୌଗଳିକ ଜ୍ଞାନର ପରିଚୟ ଦେଇଛନ୍ତି । ରାଜା ପୁତ୍ରୀଙ୍କୁ ବୈବାହିକ ପାଇଁ ଚେଦିଳ, ଗଉଡ଼, ଗୁର୍ଜର, ବଙ୍ଗ, ବାହ୍ଲିକ, ବିଦେହ, ବିଦର୍ଭ, ମରୁ, ମତ୍ସ୍ୟ, ମଗଧ, ମାଳବ, ମଲୟର, କେରଳ, କୁନ୍ତଳ, କର୍ଣ୍ଣାଟ, କାମ୍ବୋଜ, କାନ୍ୟକୁବ୍ଜ ନେପାଳ, ସିନ୍ଧୁ, ସୌରାଷ୍ଟ୍ର ପ୍ରଭୃତିରେ ରାଜକୁମାରଙ୍କ ଦୂତମାନେ ଅନ୍ୱେଷଣ କଲେ । ରାଜା ରାଣୀଙ୍କ ପାଖରେ ପୁନି ବିଷୟରେ ବ୍ୟସ୍ତ ହେବାରୁ ଯୋଗବଳରେ ରାଜକୁମାରଙ୍କ ମଞ୍ଜୁଷା ରାଜାଙ୍କ ସମୀପରେ ପହଞ୍ଚାଇ ଦେଲେ । ଏହାହିଁ ଉପେନ୍ଦ୍ରଙ୍କ ଲେଖାର ଅଲୌକିକତା, କବି ଏଠାରେ ନାୟକ ଚରିତରେ ନାୟିକା ଓ ନାୟିକା ଚରିତରେ ନାୟକ ମନସ୍ତତ୍ତ୍ୱ ବର୍ଣ୍ଣନା ଦାଅନ୍ତି କେବେଳେବେଳେ ପ୍ରାକୃତ କାଳରେ କେଉଁ ପ୍ରକାର ପରିସ୍ଥିତିରେ କ୍ରମାନୁସରଣ ପୂର୍ବକ ସର୍ବଜନପ୍ରିୟ କାବ୍ୟ କବି ସ୍ଥାପନ କରିଛନ୍ତି । ମୌଳିକ ପରିକଳ୍ପନ ଗୁଣକ ପୂର୍ଣ୍ଣ ଭାବରେ ଅନୁଭୂତଧର୍ମୀ ହୋଇ ଅପୂର୍ବ ଭାବରେ ପ୍ରାଣକୁ ସ୍ପର୍ଶ କରିପାରିଛି । ହୃତ ଶ ପ୍ରାଣରେ ତାଙ୍କର ଯେଉଁ ରଚନା କୌଶଳ ନିହିତ ଅପୂର୍ବ ଶୈଳୀ ଉପରି ରଚନା ରୀତିରେ ପ୍ରାଣକୁ ସ୍ୱତଃ ଆକର୍ଷଣ କରିବ ତାହା ପାଠକହିଁ ହୃଦୟଙ୍ଗମ କରିପାରେ । ସୁଖ ଦୁଃଖମୟ ଜୀବନ ଧାରାର ବିଭିନ୍ନ ପରିସ୍ଥିତିର ଅନୁକୂଳ ହୋଇପାରେ ଏବଂ କେଉଁ ପ୍ରକାର ରସର ବିନିଯୋଗ କେଉଁ ଅବସ୍ଥାରେ ହୃଦୟକୁ ଆପ୍ଳୁତ ଫଳରେ ଅନୁରୂପ ଆଶୃଷ୍ଟି ପ୍ରଦାନ କରିପାରେ ତାହାର ଯଥାଯଥ ବିନ୍ୟାସ ଆମେ ଏହି କାବ୍ୟରେ ଦେଖୁ, ସେଥିପାଇଁ ଉପେନ୍ଦ୍ର ଥିଲେ ଅନନ୍ୟ ଶିଳ୍ପୀ, ପ୍ରତି କାବ୍ୟ ଯୋଜନାରେ ତାଙ୍କର ଏହି ଯୋଜନା ପାରଗତା, ଶବ୍ଦ ବିନ୍ୟାସ, ସ୍ୱଚ୍ଛନ୍ଦ ଛନ୍ଦୋମୟୀ ଗୀତ, ଭାବାବେଗ ଓ ରସ ବୋଧର ମଧ୍ୟରେ ସମନ୍ୱୟ କରିବାରେ ତାଙ୍କ ରଚନାବଳୀର ମହତ୍ତ୍ୱ ପଦେପଦେ ପ୍ରତିପାଦନ କରିଛି ପ୍ରସଙ୍ଗାନୁସରଣ କ୍ରମରେ, ଅବସ୍ଥା ଓ ପରିସ୍ଥିତି ଭେଦରେ ତାଙ୍କ କଳ୍ପନା ବିଳାସ ଅନୁରୂପ ପ୍ରସଙ୍ଗାନୁଶୀଳନ ପୂର୍ବକ ଅଗ୍ରସର ହୋଇଛି ସ୍ୱଚ୍ଛନ୍ଦ ସାବଲୀଳ ବର୍ଣ୍ଣନାବଳୀରେ । ପ୍ରାବୃଟର ଚିତ୍ରଣରେ ରସଲେଖାର ନାୟକ ଅଭାବର ମାନସିକ ଅବସ୍ଥା କବି ଉପେନ୍ଦ୍ର ରସୋତ୍ତରଳ କରୁଣଭାବୋଦ୍ଦୀପକ ତଥା ସର୍ବଚିତ୍ତାକର୍ଷକ ଆଲେଖ୍ୟ ପ୍ରଦାନ କରନ୍ତି । ସେତେବେଳର ଅବସ୍ଥାକୁ ଅନୁରୂପ ଅନୁଭୂତି ସମ୍ପନ୍ନ ହୃଦୟ ନହେଲେ ହୃଦୟଙ୍ଗମ କରିବା ସମ୍ଭବ ନୁହେଁ ବା ଅବସ୍ଥାର ଗୁରୁତ୍ୱ ଅବଧାରଣ କରିବା ସହଜ ସାଧ୍ୟ ନୁହେଁ । ଏହି ହେତୁରୁ ସରସ ଭାବଗର୍ଭକ ସାହିତ୍ୟଧାରାରେ ଗଭୀର ଭାବରେ ନିମଜ୍ଜିତ ହେବାକୁ ହେଲେ ପ୍ରସଙ୍ଗାବଳୀର ଅନୁରୂପ ଅବସ୍ଥା, ପରିସ୍ଥିତି ଓ ପରିବେଶକୁ ଏକନିଷ୍ଠ ଚିତ୍ତରେ ଅନୁଧ୍ୟାନ କରିବା ସର୍ବଥା ବିଧେୟ । ବର୍ଷା ଋତୁରେ କାଳିଦାସ 'ମେଘଦୂତମ୍' କାବ୍ୟରେ ଯକ୍ଷ ମେଘକୁ ଦୂତକରି ପଠାଇଲା ପରି ଜଳଦକୁ ରସଲେଖା ନିକଟକୁ ଯିବା ପାଇଁ ରାଜକୁମାର କହୁଛି ।

ଶିବ ଅ.ରମ୍ଭି ଯୋଗ ସମ୍ପାଦ କଲେ ତ୍ୟ ଗ
ବସନ ଠାରୁ ନ ବହୁଲେ
ନେହ ନଲେ ଦାହନ ସଦ୍ଧ କଲେ ମଦନ
ନ ଘାଇ ମୂର୍ଚ୍ଛି ନ ପାରିଲେ ହେ
ନବଘନ ।
କଲେ ସେ ଅର୍ଦ୍ଧାଙ୍ଗ ଭୂଷଣ, ଏମନ୍ତ ଭାବବତୀ ଜଣ
ମୁଁ ସେହି ସୀ ପାସୋର ପାରିବ କି କଣୋଷି
ଅଛି ମୋ କେଉଁ ଦାମ୍ପଣ ହେ,
(ରସଲେଖା, ୧୯/୧୮)

ଦୈହିକ ଉପଭୋଗ କରିଆରେ ହୃଦୟର ଦ୍ୱୈରତମ ସେତୁ ପ୍ରକାଶିତ ହୋଇଥାଏ ବୋଲି Frederick Herris ଙ୍କ Essays on Marriage ରେ କହୁଛନ୍ତି ।

"The physical expressicns are gracicus and inspiring according to the degree in which they express a worthy and unselfish love. But they are more than a mere expression; they become an actual part of love. Born of love, they inturn create love The act of sexual inter course, at the root of which is physiological tension is taken up by the partners and transmitted into a perfect experience of love. All this is profoundly true of the whole sexual experience from the touch of the hand to the climax of sexual inter course."

ଅର୍ଥାତ୍ ଯୌନଲୀଳାର ଶାରୀରିକ ପ୍ରକ୍ରିୟା ମାନଙ୍କରୁ ଯେଉଁ ପରିମାଣରେ ଯଥାର୍ଥ ଓ ନିସ୍ୱାର୍ଥ ପ୍ରେମ ପ୍ରକଟିତ ହୁଏ । ସେ ସବୁ ସେହି ପରିମାଣରେ ଶୋଭନୀୟ ଓ ଉନ୍ନତ ଭାବ ଉଦ୍ଦୀପକ । ଏସବୁ ପ୍ରେମର କେବଳ ବହିଃପ୍ରକାଶ ନୁହେଁ ବରଂ ଅଙ୍ଗାଙ୍ଗୀ ଭାବରେ ପ୍ରେମର ଅଂଶ ବିଶେଷ । ପ୍ରେମରୁ ଉଦ୍ଭୂତ ହେଲେ ହେଁ ପଶ୍ଚାତ୍ରେ ଏସବୁ ପ୍ରକ୍ରିୟା ପ୍ରେମର ଜନକ । ମୈଥୁନରୁ ଅପୂର୍ବ ଶାରୀରିକ ଉଲ୍ଲାସ ସମ୍ଭୂତ ହୁଏ ଏବଂ ମୈଥୁନ ନିରତ ନରନାରୀ ଏ ଉଲ୍ଲାସକୁ ପ୍ରେମର ପରିପୂର୍ଣ୍ଣ

ଅନୁଭୂତି ରୂପେ ନିଜ ପ୍ରାଣରେ ଅଙ୍ଗୀଭୂତ କରନ୍ତି । କବି ସ୍ପର୍ଶ ଠାରୁ ଆରମ୍ଭ କରି ଦୈହିକ ଉପଭୋଗର ଚରମକ୍ରିୟା ପର୍ଯ୍ୟନ୍ତ ଯାବତୀୟ ପ୍ରକ୍ରିୟା ଏହି ପରିତୃପ୍ତି ଅନୁଭୂତିର ପର୍ଯ୍ୟାୟଭୁକ୍ତ, ଶେଷରେ ରସଲେଖା ଓ ରାଜକୁମାରଙ୍କ ମିଳନରେ ହିଁ କାବ୍ୟର ଯବନିକା ଟାଣିଛନ୍ତି । ବିବାହିତ ଜୀବନ ସ୍ୱାମୀ ସ୍ତ୍ରୀଙ୍କ ମନ ମିଳନର ଦୀପ୍ତିରେ ଉଦ୍ଭାସିତ ହୋଇ ଉଠିଛି । ମାନ ଅଭିମାନର ସ୍ଥାନ ନାହିଁ । ଆଦର୍ଶ ଦାମ୍ପତ୍ୟ ପ୍ରେମର ସରସ ସୁନ୍ଦର ଚିତ୍ର କରି କବି ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ଆସନ ମଣ୍ଡନ କରିଛନ୍ତି, ସୁସଂଯତ, ସୁଶୃଙ୍ଖଳିତ ଦାମ୍ପତ୍ୟ ପ୍ରେମରେ ରସଲେଖା କାବ୍ୟ ସମ୍ପୂର୍ଣ୍ଣ ହୋଇଛି ।

ସେ ଦିନୁ ଲେଖେ ଅନ୍ତର       ନୋହିଲେ କେହି ବାହାର
ପାଶରୁ ରଜନୀ ଦିବସରେ
ଉପୁଜିଲା ଯେତେ ଭାବ       କେ ପୁଣି କହିପାରିବ
ନ ସରିବ ବହୁତ ଗ୍ରନ୍ଥରେ ହେ
ସାଧୁ ଜନେ !
ନ ଦେଖିବ ଥିଲେ ଏଥି ଦୋଷ
ରହସ୍ୟ ଚରିତ ପୂର୍ଣ୍ଣ ପୁଣି ରସ ହେ ।

(ରସଲେଖା, ୨୨/୧୭)

●

ନୟାଗଡ଼ କଲେଜ
ନୟାଗଡ଼

# ରସଲେଖା ପରିଚୟ

### ॥ ପଣ୍ଡିତ ଶ୍ରୀ ଶ୍ରୀଧର ଶତପଥୀ ॥

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ପ୍ରକୃତି ସୁଷମା ଭଣ୍ଡାର ଗୁମୁସର ରାଜ୍ୟରେ ଜନ୍ମ ଗ୍ରହଣ କଲାବେଳକୁ ଦେଶ ହିତୈଷୀ ପ୍ରଜାବନ୍ଧୁ ରାଜ କବି ଧନଞ୍ଜୟ ଭଞ୍ଜ ରାଜତ୍ୱ କରୁଥିଲେ । ଜନ୍ମ ପରେ ରାଜଗୁରୁଙ୍କ ଠାରୁ ପୌତ୍ରଙ୍କର ଗୁଣ ବହୁଳ ଶ୍ରବଣ କରି ଆନନ୍ଦ ଲାଭ କଲେ । ଏବଂ ବୟସ ହେବାରୁ ୫ ବର୍ଷରେ ରାଜଗୁରୁଙ୍କ ଦ୍ୱାରା ବିଦ୍ୟାଧ୍ୟୟନ କରାଇଲେ । ରାଜଗୁରୁ ଗଳ୍ପ ଛଳରେ ପ୍ରାଚୀନ କବିମାନଙ୍କର କଥା ଶୁଣାଉଥନ୍ତି । କବିଗଣ କିପରି ମାତୃଭାଷାର ସେବା କରିବା ସକାଶେ ଦେବଦେବୀ-ମାନଙ୍କ ନିକଟରେ ଶରଣାପନ୍ନ ହୁଅନ୍ତି ଓ ସିଦ୍ଧି ଲାଭ କରି କାବ୍ୟ ଓ ମହାକାବ୍ୟ ଲେଖି ଅମର ହୋଇ ରହିଛନ୍ତି ତାହା କହନ୍ତି । ଯଥା ବାଲ୍ମୀକିଙ୍କର ରାମ ତାରକ ମନ୍ତ୍ରସିଦ୍ଧି କାଳିଦାସଙ୍କର ସରସ୍ୱତୀଙ୍କର ମନ୍ତ୍ରସିଦ୍ଧି କଥା ବିଶେଷ ଭାବେ ଶୁଣାନ୍ତି । ୧୨ ବର୍ଷରେ ବ୍ରତୋପନୟନ ପରେ ବଂଶର ଇଷ୍ଟ ଦେବୀଙ୍କର ମନ୍ତ୍ର ପୁରଶ୍ଚରଣ କରାଇଥିଲେ । ଯାହା ଫଳରେ ଉପେନ୍ଦ୍ର ଭଞ୍ଜ କାବ୍ୟ ଲେଖା ଆରମ୍ଭ କଲେ । ପ୍ରାଥମିକ ସମୟରେ ବହୁ କବିତା ଲେଖି ପିତାମହଙ୍କୁ ଦେଖାଉଥିଲେ । ଧନଞ୍ଜୟ ଭଞ୍ଜ ଶ୍ରଦ୍ଧା ପ୍ରକାଶ କଲେ ମଧ୍ୟ ପଣ୍ଡିତଗଣ ଅଶ୍ରଦ୍ଧା ପ୍ରକାଶ କରନ୍ତି ।

ଏହି ରସଲେଖା କାବ୍ୟଟି ୧୭୧୦ରେ ଲେଖିଛନ୍ତି ବୋଲି ସେ ନିଜେ କହିଅଛନ୍ତି ।

ଦିବ୍ୟସିଂହ ଗଜପତି ଅଙ୍କ ସପତ ବିଂଶତି
ଶେଷ ଦିନେ ଶେଷ ଏହି ଗୀତ
ଦେଶେ ଦେଶେ ହେଉ ଖ୍ୟାତ ମୋହ ଏ ରସିକ ଚିତ୍ତ
ହରିହର କରନ୍ତୁ ଏମନ୍ତ ହେ
ସାଧୁଜନେ
ଖଳ ଦୂଷଣକୁ ନାହିଁ ଡର
ପରହିଂସାରେ ସେ ମହା ତତ୍ପର ସେ

ଶେଷ ଛାନ୍ଦ ୧୭ ପଦ ।

ଦିବ୍ୟସିଂହ ଦେବଙ୍କର ୨୭ ଅଙ୍କ ଅର୍ଥାତ୍ ୧୭୧୦ ଖ୍ରୀଷ୍ଟାବ୍ଦରେ ଲେଖା ଶେଷ ହୋଇଅଛି । ଏହି ସମୟ ମଧ୍ୟ ଠିକ୍ ବୋଲି ଧରି ନେଲେ, ଏତେ ବେଳକୁ ଧନଞ୍ଜୟ ଭଞ୍ଜ ଅସ୍ତମିତ । କିମ୍ବଦନ୍ତୀ ଅଛି ୧୭୦୧ ଖ୍ରୀଷ୍ଟାବ୍ଦ ବେଳକୁ ଉପେନ୍ଦ୍ର ଭଞ୍ଜ ବୈଦେହୀଶ ବିଳାସ ରଚନା କରି ପିତାମହଙ୍କୁ ଦେଖାଇଥିଲେ । ଚୈଳ ଦେଶ ନିକଟରେ ମଳୟ ଗିରି ଅଛି, ସେହି ପର୍ବତ ନିକଟରେ ରସୋଦୟ ନାମରେ ଗୋଟିଏ ବନ ଅଛି । ସେହି ବନର ଗୁଣ ଏପରି ଯେ ମହାତପସ୍ୱୀ ମଧ୍ୟ ସେହି ବନକୁ ଗମନ କଲେ କାମ ବିକାର ଜାତ ହୁଏ ।

କାମଚେଷ୍ଟା ଜାତ ହୋଇ ଲେଉଡ଼ିଇ ଯୁବତ
ଆଉ କେଉଁ ଜନ ଅବା ନୋହିବ ଅଗତ ଯେ
୧/୧୨

ରସଲେଖାର ଜନ୍ମ । ନୈମିଷାରଣ୍ୟରେ କପିସାସ୍ତନ ମହର୍ଷିଙ୍କର ସାତଶ ପଞ୍ଚାଶ ଶିଷ୍ୟ ଥିଲେ । ଶିଷ୍ୟମାନେ ତୀର୍ଥାଟନ ଉଦ୍ଦେଶ୍ୟରେ ନାନା ତୀର୍ଥ ଭ୍ରମଣ କରି ଚୋଳ ଦେଶସ୍ଥିତ ରସୋଦୟ ବନରେ ପ୍ରବେଶ ହେଲେ । ସେହି ବନରେ ପ୍ରବେଶ ହେଲା ପରେ ସମସ୍ତଙ୍କର କାମ ବିକାର ଜାତ ହେଲା । ସମସ୍ତ ଋଷି ସେହି ବନରେ ରହି କ୍ରମେ କନ୍ୟା ସଂଗ୍ରହ କରି ଦାମ୍ପତ୍ୟ ଜୀବନ ପାଳନ କରି ସେହି ବନରେ ରହିଲେ । ବହୁଦିନ ଗତ ହେଲେ ମଧ୍ୟ ସେ ଶିଷ୍ୟମାନେ ନ ଫେରିବା ହେତୁ, ଶିଷ୍ୟମାନଙ୍କ ଅନ୍ୱେଷଣରେ କପିସାସ୍ତନ ମହର୍ଷି ନିଜେ ବାହାରିଲେ । ବହୁଦିନ ପରେ ମହର୍ଷି କପିସାସ୍ତନ ସେହି ରସୋଦୟ ବନରେ ପ୍ରବେଶ ହେଲେ ।

ଖୋଜିବା ବୋଲି ମେଦିନୀ କଲେ ପ୍ରଦକ୍ଷିଣ
ସେ ଅଟବୀ ପ୍ରବେଶେ ବିନ୍ଧିଲା ପଞ୍ଚବାଣ ଯେ
୧/୨୪

ମହର୍ଷିଙ୍କ ହାତରେ ଥିବା ମାଳ ରାମରାମ ପରିବର୍ତ୍ତେ ରାମା ରାମା...ହେଲା ।

କୃଷ୍ଣକେଶୀ ସୂଦନ ବୋଲନ୍ତି ଏକବେଳେ
ଲେମପ୍ରାନ୍ତ ଘନବର୍ଣ୍ଣ କରି କହେ ଖେଳେ ହେ ।
୧/୨୨

କପିସାଙ୍ଗ ମହର୍ଷିଙ୍କର କାମ ବିକାର ଜାତ ହେବାରୁ ଚୈଳ ଦେଶର ରାଜାଙ୍କ ନିକଟକୁ ଯାଇ କନ୍ୟା ଯାଚଜ୍ଞା କଲେ । ଏହାକୁ ରାଜା ଅତି ଆଦରରେ ଗ୍ରହଣ କରି ନିଜର କନ୍ୟା ଲୀଳାବତୀଙ୍କୁ ବିବାହ କରାଇ ଦେଇଥିଲେ । ଋଷି-ମାନଙ୍କର ଶାପ ପ୍ରଦାନ ଭୟରେ ତାତ୍କାଳିକ ସମାଜରେ ରାଜାମାନେ ଋଷିମାନଙ୍କୁ

କନ୍ୟା ପ୍ରଦାନ କରୁଥିବା ପୁରାଣ ପ୍ରସିଦ୍ଧ । କପି ସଞ୍ଜନ ମହର୍ଷିଙ୍କ ବିବାହ ପରେ ଗୋଟିଏ କନ୍ୟା ଜାତ ହୋଇଲା । ସେ କନ୍ୟାର ନାମ ରସଲେଖା ଅଟେ । କନ୍ୟାର ସେବା କରିବା ନିମନ୍ତେ ଦେଶାନ୍ତରରୁ ବିମଳା, କମଳା, ପରିମଳା, ବଧ୍ୱମାଳା, ଚ୍ଛରୁ ଶୀଳା, ମଞ୍ଜୁଳା, ସୁଶୀଳା, ପ୍ରେମଶୀଳ ଏହି ସଖୀମାନଙ୍କୁ କିଣିଆଣି ରସଲେଖାର ନିକଟରେ ରଖିଥିଲେ । ଚନ୍ଦନବଦନ ରସଲେଖା ବଢ଼ି ଅତି ସୁନ୍ଦର ଦିଶିଲା ।

ସୁନ୍ଦରୀର ରୂପ ବର୍ଣ୍ଣନା

ସୁନ୍ଦରୀ ସିନ୍ଧୁଜାତ ଲକ୍ଷ୍ମୀ ଅବଲା
ନବ ମଲ୍ଲିକା, ପିତ ଚମ୍ପକ ମାଳା ଯେ,
ଉପମା ଦେଖିବାକୁ ଦର୍ପଦୋଷିତ
ବଢ଼େ ଦର୍ପକ ଦର୍ପ ବଢ଼ାଇନିତ ଯେ,

( ୬ । ୧ )

ଏହିପଦରେ ଲକ୍ଷ୍ମୀ ଦର୍ପଣର ଉପମା ଦିଆଯାଇ ଅଛି । ଦର୍ପ ଶବ୍ଦ ଅନୁପ୍ରାସ ରହିଛି । ଏହି ଛନ୍ଦରେ ବହୁ ଉପମାଳଂକାର ଅଛି ।

ରାଜକୁମାର ବିଶ୍ୱଭୂତିଙ୍କ ଜନ୍ମ ମଳୟଗିରିର ଉତ୍ତରରେ ସୁଧାନିଧିନଗର ରାଜା ଭୂପତି, ତାଙ୍କର ପୁତ୍ରଙ୍କ ନାମ ବିଶ୍ୱଭୂତି, ପ୍ରାପ୍ତ ବୟସ ହେବାରୁ ରାଜା ଭୂପତି ପୁତ୍ର ସକାଶେ କନ୍ୟା ଅନୁସନ୍ଧାନ କରାଇଲେ । ରାଜପୁତ୍ର ବିଶ୍ୱଭୂତି ମଧ୍ୟ ଉତ୍ତମ କନ୍ୟା ପ୍ରାପ୍ତି ଆଶାରେ ଦୁର୍ଗାଙ୍କୁ ପୂଜା କରନ୍ତି ।

ମହାମାୟା ଦିନେ ସ୍ୱପ୍ନରେ ରାଜକୁମାର ବିଶ୍ୱଭୂତିଙ୍କୁ ଆଦେଶ ଦେଲେ, ରସୋଦୟ ବନକୁ ଗମନ କର ସେଠାରେ ଉତ୍ତମ କନ୍ୟା ପାଇବ । ସେଠାରେ ରାଜର୍ଷିଙ୍କ କନ୍ୟା ଅଛି ବିବାହ କର । ଥରେ ରାତିରେ ବିଶ୍ୱଭୂତିଙ୍କୁ ଦୁର୍ଗା ଧରିଯାଇ ରସୋଦୟ ବନରେ ଛାଡ଼ିଦେଇ ଆସିଲେ ।

ଋଷି କୁମାରୀ ରସଲେଖା ସଖୀମାନଙ୍କ ସହିତ ଉପବନରେ ଭ୍ରମଣ କରୁଥିବା ବେଳେ ରାଜକୁମାର ଲୁଚି ଲୁଚି ଏକାନ୍ତରେ ବନାନ୍ତରେ ରସଲେଖାର ଶୋଭା ସନ୍ଦର୍ଶନ କରୁଥିଲେ । ଋଷି କୁମାରୀ ଫୁଲ ତୋଳୁ ତୋଳୁ ରାଜକୁମାର ବସିଥିବା ନିକଟକୁ ଯିବାରୁ, ସେଠାରେ ଦୁହେଁ ପରସ୍ପର ପ୍ରତି ଦୃଷ୍ଟିପାତ କରିବା ହେତୁ ଦୁଇଜଣ ମୁଗ୍ଧ ହେଲେ । କୁମାରୀର ସଖୀମାନେ ମା, ଡ଼ାକୁଛନ୍ତି ବୋଲି କହି ରସଲେଖାକୁ ନେଇଗଲେ । ରସଲେଖା ଚାଲିଯିବା ପରେ ରାଜକୁମାର ବିଶ୍ୱଭୂତି କେତକୀ ପତ୍ରରେ ଚିଠି ଲେଖି ମୁଣ୍ଡତଳେ ରଖି ବ୍ୟାଜ ନିଦ୍ରାରେ ଶୟନ

କଲେ । ଏହି ସମୟରେ ରସଲେଖାର ସଖୀଗଣ ସେଠାରେ ପ୍ରବେଶ ହୋଇ ରାଜକୁମାର ମୁଣ୍ଡଚନ୍ଦ୍ର ଚଟିକି ନେଇଗଲେ । ରସଲେଖାକୁ ପତ୍ରଟି ଦେଲେ । ରସଲେଖା ପତ୍ରଟି ପଢ଼ି କାତର ହେଲା ।

ପଢ଼ି ଏମନ୍ତ ପତ୍ରକୁ କାତର
ହେଲା ବେପଥୁ ବଶେଷ ଥରଥର
ଲଭିବାକୁ ମନ ହେଲା ତତପର
ବନ୍ଧେ ପୁନଃ ପୁନଃ ଫୁଲଶର ଶର
ଏଣୁ ତନୁ ହୋଇଗଲା ଜରଜର
ଉଚ୍ଚ କରି ବୋଇଲା ଯେ ହରହର
୭/୪୨/୪୩/୪୪

ଏହି ୩ ପଦରେ 'ର' ଅକ୍ଷର ଅନୁପ୍ରାସ ରହିଛି । କାମର ଦଶଦଶାରୁ ବେପଥୁ, କମ୍ପନ, ସ୍ୱେଦ କାତର ପ୍ରଭୃତି ପତ୍ର ପାଠପରେ ଜାତହେଲା । ଏପରି ଦଶା ସନ୍ଦର୍ଶନ କରି ସଖୀମାନେ ରସଲେଖା ପତି ଲଭ କରୁ ବୋଲି ହରିହରଙ୍କୁ ସ୍ତୁତି କଲେ । ଏବଂ କନ୍ଦର୍ପର ଦଶା ଶାନ୍ତି ପାଇଁ ଉପଚାର କଲେ ।

ଜଣେ ଦେଲା ବାଳାକଣ୍ଠେ ବଦନ ସମୀର
ଚେତନାକୁ ଲଭିସେ କହିଲା ଧୀରଧୀର
ସଖୀ କାନ ଫୁଙ୍କିବାରୁ ରସଲେଖା ଚେତା ହେଲା ।
ଅନୁରାଗ ବଶରୁ କହଇ ବାଳୀ
କାମଦେବ ନୁହଇ ତାହାଙ୍କ ଭଳି । ୭/୩

ଅନୁରାଗ ବଶରୁ ସଖୀ ମାନଙ୍କ ଆଗରେ ରସଲେଖା କହୁଛି କାମଦେବ ତାଙ୍କପରି ହେବନାହିଁ । ଏକଥା ରସଲେଖା ଚିନ୍ତା କଲାବେଳେ ରାଜପୁତ୍ର ମଧ୍ୟ ବିରହ ଅବସ୍ଥାରେ ଚିନ୍ତା କରୁଛି ।

ନନ୍ଦୀ ଅର୍ଦ୍ଧରେ କୁମର ଗାଇଲା ଏ ଗୀତ ସାର
ଆହାରେ ଆଜନ୍ମ ସୁଖୀ ସୁକୁମାରୀ
ସକଳ ଗଢ଼ ତୁ ମୋର । ୯/୧
ପାଦେଫିଙ୍ଗି ଦେଲେ ରୁହି ଅଲତା ପରାୟେ ମୁହିଁ
ଲାଗି ରହିଥିବି ତୋ ଚାନ୍ଦେ କାନ୍ଥିତେ
କରୁଣା ହୋଇବା ପାଇଁ । ୯/୨

ଅଙ୍ଗେ ଥିଲପର ଛୁଇ ତୋ ପଛେ ଥିବ ଗୋଡ଼ାଇ
ତୋତେ ଚାଟୁ କହି ତୋ ମୁଖକୁ ଚାହିଁ
ଧନ ହରୁଥିବ ମୁହିଁ । ୯/୩

## ଅନ୍ତର୍ଲିପି

ଏପରି ବିରହ ବେଦନା ଲେଖା ବହୁତ ଅଛି ।

କୁମାରୀର ବିରହରେ କୁମାରଙ୍କ ଅନ୍ତର୍ଲିପିରେ ପତ୍ର ପଠାଇଛି । ସେଥିରେ ଲେଖାଅଛି ।

ହେ ନାଗର କିଶୋର ସୁନ୍ଦର ସୃଷ୍ଟି ରୂପ
କହି ନୁହଇ ରୂପ ସମାନ ପୁଷ୍ପ ଚାପ ଯେ ୧୧
ଜଗତର ପେଶଲ ଚନ୍ଦ୍ରମା ପରି କାନ୍ତି
ପଡ଼ି ବିଲୋକନରୁ ଲଭିଲି ରସବନ୍ତୀ ଯେ ୧୩
ହେତୁ ହର ରିପୁ ଶିରେ ଦେବାକୁ ହୋଇଲି
କାନ୍ତ ସ୍ତନା ବିଶିଖୁ କି ମନ୍ତ୍ର ଭିଆଇଲି ଯେ ୧୪
ରବି ପ୍ରାପ୍ତ ହୋଇଅଛି ଚନ୍ଦ୍ରମା ବଦନ
ଅନୁଭବ ହିନା ସିନା ହେଉଛି ଏସନ ଯେ ୧୫
ଅଧର ଅଧର ବେଳୁବେଳ ହୁଏ ଓଷ୍ଠ କାନ୍ତି
ନାଶ ଗଲି ଖୀଣ ଜଗତ ଚାରୁ ଚମ୍ପା ତନୁ ଯେ ୧୬
ସଦାପୁର କଲି ବାଳା ମନ ନୟନରେ
ପାଇଁ କିଏ ସ୍ଥିତ ନାହିଁ ଶ୍ୟାମା ତୁମ୍ଭଠାରେ ୧୭
ଏକା ଦଶା କରୁଣା କରନ୍ତି ନ ସାରିବ
ହରିହର ରମଣୀ କେତେ ହେଁ ସୁମରିବ ୧୮
ନେତ୍ର ବର୍ତ୍ତି ଶୁନ୍ଧା ହୋଇଅଛି ଏ ଅକ୍ଷର
ହେ କୋବିଦେ ମନେ ଅନ୍ତର୍ଲିପିକା ବିଚାର ୧୯
୧୦/୧୧ ରୁ ୧୯

ଦଶମ ଛାନ୍ଦରେ ଏହି ଅନ୍ତର୍ଲିପିକା ଅଛି । ରସଲେଖାର ଚିଠି ପଢ଼ି କୁମାର ବିଚାର କରୁଛି ।

ଯେତେ ରୂପବନ୍ତୀ ତେତେ ସୁନ୍ଦରୀ ସୁକେଶୀ
ତେଜ୍ଞାଙ୍କ ଚତୁରୀ ମିଳି ଅଛଇ ପ୍ରେୟସୀ ଯେ
୧୦/୬୧

ଏଠାରେ ବିରହ ବର୍ଣ୍ଣନା ବହୁତ ଅଛି ।

ଚରିତ୍ର ବର୍ଣ୍ଣନ ହେଲା ।

ନାହିଁ ଗଢ ଗୁମ୍ଫ ବନ୍ଧୁ ରସଦର୍ପୀକାର
କ ରୂପେ କରିବ କର ବେଗକରି କର ୧୦।୫୮

ଏହି ପଦରେ 'କ' ଅକ୍ଷର ଅନୁପ୍ରାସ ଅଛି । ୨୨ ରୁ ୨୯ ପଦରେ ଲେଖା ଯାଇଥିବା ପତ୍ରର ବିଷୟ ୫୮ ପଦରେ ବାହାରିବ ।

ଅଶୋକ ବନରେ ଅଶୋକ ହୋଇଲା
ପୁରୁଷ ସୁଶୀଳା ସ୍ମୃତି
ମୋତେ ବେଦନକର ମୋତେ ବେଦନକର
ବୋଲି ସେ ବିନୟ ହୋଇ ୧୧ ୧

ଏହି ପଦରେ ଅଶୋକ ଶବ୍ଦ ଯମକ ହୋଇଅଛି । ବେଦନକର ଶବ୍ଦ ମଧ୍ୟ ଯମକ ହୋଇଅଛି । ଅଶୋକ-ଜୀବନ ଓ ଶୋକ ରହିତ ବେଦ ଦୁଇ ବା ଚତୁର୍ଥ ବେଦନକର—ଦୁଇହାତ, ଏପରି ୧୧ ଛାନ୍ଦଟି ପୂରି ରହିଛି । ରସଲେଖା କାବ୍ୟରେ ମଧ୍ୟ ସ୍ତ୍ରୀ ବିଚ୍ଛେଦ ଲେଖା ଥିବାରୁ ମନେହୁଏ କବି ସମ୍ରାଟଙ୍କର ସ୍ତ୍ରୀ ବିୟୋଗ ଘଟିଥିଲା ।

ମହାବିପତ୍ତି ବିଚ୍ଛେଦ ଠାରୁ ଥିବ ନାହିଁ
ବଡ଼ ହୋଇ ମାର ମାରଣରୁ ଦଣ୍ଡ କାହିଁ ଯେ । ୧୦/୬୮

୧୨।୨୦ ରେ ନାରଦ ଉପସ୍ଥିତ ଏବଂ ବିବାହ ।

ବିବାହ ଘରେ ଶୀତ ଋତୁ ପ୍ରବେଶ ହେତୁ ରାଜକୁମାର କହୁଛି ।
ମୁଁ ଯେ ନୁହଇ ସବିତାପରି
ଅଗ୍ନି କୋଣେ ରହିବାକୁ ଡ଼ରି

ଗୁମୁସର ରାଜସଭାକୁ ବହୁ ପଣ୍ଡିତ ଆସି ପ୍ରଶଂସା ପାଇ ଓ ଉପଢୌକନ ପାଇଯାଆନ୍ତି । ଏହି ସକାଶେ ପଣ୍ଡିତ ମାନେ ଶ୍ଳୋକ ରଚନା କରି ପାଠ କରନ୍ତି ।

ଦିନେ ରାଜ ସଭାରେ ଜଣେ ପଣ୍ଡିତ ଆସି ହର ଓ ହରିଙ୍କର ବର୍ଣ୍ଣନା କରି ପଢ଼ିଲେ ।

ଗଣେଶ ପନ୍ନେ ନ ଗଜାନ୍ତିହାର
କୁମାର ତାଡ଼ା ଶଶୀଖଣ୍ଡ ମୌଳି
ଲଙ୍କେଶ ସଂପୂଜିତ ପାଦ ପଦ୍ମ
ଦାସ୍ଯାଦନାଦ ପରମେଶ୍ୱରେନଃ

ଗବୀଶ-ବୃଷ, ପତ୍ର-ବାହନ, ନଗଜା-ପାର୍ବତୀ କୁମାର-କାର୍ତ୍ତିକେୟ ଶଶୀଖଣ୍ଡ-ଅର୍ଦ୍ଧଚନ୍ଦ୍ର, ଲଙ୍କେଶ-ରାବଣ ଏହି ଶ୍ଳୋକରେ 'ଗ' ଅକ୍ଷର 'ନ' ଅକ୍ଷର 'କୁ' ଅକ୍ଷର 'ଶ' ଅକ୍ଷର 'ଲ' ଅକ୍ଷର ଲୋପ କଲେ ହେଲା ବୀଶ-ଗରୁଡ଼, ଗଜାର୍ତ୍ତିହାର-ଶ୍ରୀକୃଷ୍ଣ, ମାରତାତ-ଶ୍ରୀକୃଷ୍ଣ ଶିଖଣ୍ଡ-ମୟୂର ପୁଚ୍ଛ କେଶ—କ+ଈଶ କ-ଜଳ ଜଳେଶ-ବରୁଣ ଏପରି ହରି ଓ ହରଙ୍କର ବର୍ଣ୍ଣନା କରି ଶ୍ଳୋକ ପାଠ କଲେ । ଏହା ଶୁଣି ଧନଞ୍ଜୟ ଭଞ୍ଜ ନିକଟରେ ବସିଥିବା ପୌତ୍ର ଉପେନ୍ଦ୍ର ଭଞ୍ଜଙ୍କୁ ପ୍ରଶ୍ନ କଲେ ଏହା କିପରି ହୋଇଛି । ଉପେନ୍ଦ୍ର ଭଞ୍ଜ କହିଲେ ଏହା ହରି ହରଙ୍କର ବର୍ଣ୍ଣନା ହେଲା, ହରି ହରଙ୍କ ବର୍ଣ୍ଣନା ହୋଇଥିଲେ ଭଲ ହୋଇଥାନ୍ତା । ଏକଥା ଶ୍ରବଣରେ ପଣ୍ଡିତଗଣ ବିରକ୍ତ ହେଲେ ମଧ୍ୟ ତର୍କ ନକରି ତୁନି ହେଲେ ଏବଂ ଉପେନ୍ଦ୍ର ଭଞ୍ଜଙ୍କୁ ପ୍ରଶ୍ନ କଲେ ଏପରି ହରିହରଙ୍କ ବର୍ଣ୍ଣନା ଓଡ଼ିଆ ଭାଷାରେ ହେବ ? ଉପେନ୍ଦ୍ର ଭଞ୍ଜ ଉତ୍ତର ଦେଇ କହିଲେ, ମୋର ଉତ୍କଳ ଜନନୀ ଶ୍ରେଷ୍ଠା ଅଟନ୍ତି । ତାଙ୍କର ଦୟା ଥିଲେ ନିଶ୍ଚୟ ହେବ । ଅଳ୍ପଦିନ ଅପେକ୍ଷା କରନ୍ତୁ । ଏହି ସମୟରୁ ମଧ୍ୟ ଉପେନ୍ଦ୍ର ଭଞ୍ଜଙ୍କ ଦ୍ୱାରା ଲିଖିତ କାବ୍ୟ ଗୁଡ଼ିକ ପଣ୍ଡିତଙ୍କ ଦ୍ୱାରା ସମାଲୋଚନା ଓ ଅନାଦୃତ ହୋଇ ଥିବା ଜଣାଯାଏ ।

ରସଲେଖା କାବ୍ୟ ଲେଖା କଲାବେଳେ ପ୍ରଥମେ ହରିହରଙ୍କର ବନ୍ଦନା ଲେଖାଯାଇଅଛି ।

ଜୟ ତ୍ରିପୁର ମୋହନ ତ୍ରିପୁର ଦହନ
ଖଗ ପୁଙ୍ଗବ ବାହନ ପୁଙ୍ଗବ ବାହନ ।୧।
ଜୟ ଚାମୀକରାକୃତ ବାସ କୃତ୍ତିବାସ
ପଞ୍ଚାସ୍ୟ ଜିତ ବିକ୍ରମ ସେ ପୁଣି ପଞ୍ଚାସ୍ୟ ଯେ ।୨।
ଜୟ କମଳଦଳ ଲୋଚନ ତ୍ରିଲୋଚନ
ମାର ଯାର କୁମର କୁମର ଯା ନନ୍ଦନ ହେ ।୩।
ଜୟ ପାଣ୍ଡବ ପକ୍ଷକ ତାଣ୍ଡବ ପଣ୍ଡିତ
ଚନ୍ଦ୍ର ମୁକୁଟ ଧର ଚନ୍ଦ୍ର ମୁକୁଟ ସେତ ଯେ ।୪।
ଜୟ ଭବ ଭ୍ରମ ଦୂରକର୍ତ୍ତା ଶ୍ୟାମ ଶ୍ୟାମ
ନୀଳକଣ୍ଠ ପୁଚ୍ଛ ଚୂଡ଼ ନୀଳକଣ୍ଠ ନାମ ଯେ ।୫।

ଏହି କାବ୍ୟର ପ୍ରଥମ ଛାନ୍ଦରେ ଲେଖାଅଛି ତ୍ରିପୁର ମୋହନ—ଶ୍ରୀକୃଷ୍ଣ, ତ୍ରିପୁର ଦହନ-ଶିବ, ଖଗ ପୁଙ୍ଗବ-ଗରୁଡ଼, ପୁଙ୍ଗବ-ବୃଷଭ, ଚାମୀକରାକୃତ ବାସ-ସୁବର୍ଣ୍ଣ ତୁଲ୍ୟ ହଳଦୀ ବର୍ଣ୍ଣ ଲୁଗା, କୃତ୍ତିବାସ-କୃତ୍ତି-ବ୍ୟାଘ୍ର ଚର୍ମ ଲୁଗା, ପଞ୍ଚାସ୍ୟ-

ସିଂହ, ହର ପଞ୍ଚାସ୍ୟ–ପଞ୍ଚମୁଖ ଶିବ, କମଳଦଳଲୋଚନ–ହର, ତ୍ରିଲୋଚନ ଶିବ ମାର–କନ୍ଦର୍ପ, କୁମାର–ପୁତ୍ର, କୁମାର–କାର୍ତ୍ତିକେୟ, ପାଣ୍ଡବ ପକ୍ଷକ–ଶ୍ରୀକୃଷ୍ଣ, ତାଣ୍ଡବ ପଣ୍ଡିତ–ଶିବ, ଚନ୍ଦ୍ର-ମୟୂର ପୁଚ୍ଛ, ଚନ୍ଦ୍ର ମୁକୁଟ–ଚନ୍ଦ୍ରଙ୍କୁ ମୁକୁଟରେ ଧାରଣକାରୀ–ଶିବ, ଭବଶ୍ରମ ଦୂରକାରୀ ଶ୍ୟାମ–ଭବଜନ୍ମ ଉଦ୍ଧାରକାରୀ–ଶ୍ରୀକୃଷ୍ଣ, ଶ୍ୟାମ–ଶିବ, ବ୍ୟୋମକେଶଭବୋ ଶ୍ୟାମ ଇଡ, ଆମରଃ, ନୀଳକଣ୍ଠ–ମୟୂର ଚୂଡ଼ରେ ମୟୂର ପୁଚ୍ଛ ଧାରଣକାରୀ–ଶ୍ରୀକୃଷ୍ଣ, ନୀଳକଣ୍ଠ–ଶିବ, ଶିବ ଗରଳ ପାନ କରିବା ସମୟରେ ଗଳାରେ ଅଟକି ଯିବାରୁ ଶିବଙ୍କର କଣ୍ଠ ନୀଳବର୍ଣ୍ଣ ହେଲା । ଏଣୁ ନୀଳକଣ୍ଠ ହେଲେ । ଏପରି ବର୍ଣ୍ଣନା କଲାବେଳେ ଯମକ ଅଳଂକାର ରହିଅଛି ।

ତ୍ରିପୁର ମୋହନ, ତ୍ରିପୁର ଦହନ, ଚର୍ମାମ୍ବର କୃତ୍ତିବାସ, କୃତ୍ତିବସ, ଦେଗ ପୁଙ୍ଗବ, ପୁଙ୍ଗବ, ପଞ୍ଚାସ୍ୟ, ମାର, କୁମାର, ଚନ୍ଦ୍ରମୁକୁଟ, ଶ୍ୟାମ–ନୀଳକଣ୍ଠ ଶବ୍ଦ ଗୁଡ଼ିକ ଯମକ ହୋଇ ଥିବାରୁ ଯମକାଳଂକାର ହେଲା ।

ରଙ୍ଗ ଶ୍ରମ ହେବାରୁ ରସଲେଖା ସଖୀଙ୍କୁ ସଙ୍କେତ ଦେଉଛି ।

ଶ୍ରମେ ମଲ୍ଲୀ ଫୁଲ ବାଲା କାନ୍ତକରେ ଦେଲା
କହିଲା ସେ ବେନି ବର୍ଣ୍ଣ ଫେଡ଼ି ନ କହିଲା ସେ ୧୪।୪୭

## ଅନୁପ୍ରାସ

ମହା ବରହୀ ସେ ବରହୀ କୁନ୍ତଳା
ବରହୀ କୁମାର ସେପରି
ଅଶନ ବସନ ବୃଷପର୍ବ ପ୍ରତେ
ବସନ ଏହା ପାଶ ପରି
କହେ ଏ ରସ
ଉପେନ୍ଦ୍ର ଭଞ୍ଜ ହରଷେ
ହରିହର ଦ୍ରବ୍ୟ କାନ୍ତ ସଦାଶିବ
ପାଦପଦ୍ମ ଭାବି ମାନସେ । ୧୭।୨୪

ଏ ପଦରେ 'ର' ଅକ୍ଷର ଏବଂ 'ସ' ଅକ୍ଷର ମଧ୍ୟ ଅନୁପ୍ରାସ ରହିଛି । ବରହୀ ଶବ୍ଦ ଯମକ ଅଳଂକାର ହେଲା । ଗ୍ରନ୍ଥଟି ଶ୍ରେଷ୍ଠ ହେଲେ ମଧ୍ୟ ଅଳଂକାର ପୂର୍ଣ୍ଣ ହୋଇଅଛି । ସର୍ବଦା ସ୍ତାବକ, ନିନ୍ଦୁକ ରହିଅଛନ୍ତି ଏବଂ ରହିବେ ମଧ୍ୟ । ପୌରାଣିକ ଯୁଗରେ ମଧ୍ୟ ମହାପୁରୁଷ ମାନଙ୍କୁ ସମାଲୋଚନା ଓ ନିନ୍ଦା

କରାଯାଇଛି । ସେ ସକାଶେ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଖଳ ପ୍ରକୃତିର ଲୋକଙ୍କୁ ଡ଼ର ନାହାନ୍ତି ।

ବୋଲେ ଉପେନ୍ଦ୍ର          ମୋ ପ୍ରଭୁ ଶ୍ରୀରାମ
ବୈକୁଣ୍ଠ ନାଥ ସାକ୍ଷାତ
ଜାତକଲେ କ୍ଷୀର-          ଶୀର୍ଣ୍ଣବୁ ସୁଧା ମୋର
ଗୀର୍ବାଣ୍ଣିବୁଁ ରସ ଗୀତ
ସେସତ
ସେ ଶ୍ରବୁଧ ଏ ବୁଧ ରଞ୍ଜିତ
ଦୈତ୍ୟ ଖଳରେ ଅଧରଞ୍ଜିତ
ଯେ ଭକ୍ଷିବ ହେବ ବହୁମତ ।

ଏହା ମଧ୍ୟ ଲେଖି ଅଛନ୍ତି ।



# ରସକଲ୍ଲୋଳ କାବ୍ୟରେ ପ୍ରେମ ଚିତ୍ର

॥ ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି ॥

ପ୍ରେମ ହେଉଛି ଶାଶ୍ୱତ ଓ ଚିରନ୍ତନ । ସଚରାଚର ବ୍ରହ୍ମାଣ୍ଡର ଲୀଳାଖେଳା ସୁଖ ଦୁଃଖ, ମହତ ପବିତ୍ର ପ୍ରତ୍ୟେକ କାର୍ଯ୍ୟ ଏହି ପ୍ରେମ ଭିତ୍ତି ଉପରେ ପ୍ରତିଷ୍ଠିତ । ଯେଉଁ ପ୍ରେମରେ ତ୍ୟାଗ ନାହିଁ, ଚିରନ୍ତନତ୍ୱ ନାହିଁ ସେ ପ୍ରେମ ପ୍ରକୃତ ପ୍ରେମ ପଦବାଚ୍ୟ ନୁହେଁ । ତେଣୁ ପ୍ରେମ ହେଉଛି ଏପରି ଏକ ପଦାର୍ଥ ଯାହାକୁ ଜୀବନର କେତେ ଝଡ଼ଝଞ୍ଜା ପ୍ରତିହତ କରିପାରେ ନାହିଁ । କୌଣସି ବାଧା ବନ୍ଧନ ଏହାକୁ ଖଣ୍ଡ ବିଖଣ୍ଡିତ କରିପାରେ ନାହିଁ । ଏହା ଜନ୍ମ ଜନ୍ମାନ୍ତରରେ ଅମଳିନ, ଅବିଚ୍ଛେଦ୍ୟ ଓ ତେଜେ ବନ୍ତ ହୋଇ ରହେ ।

ପ୍ରେମର ପ୍ରକାର ଭେଦରେ କୁହାଯାଏ ଯେ ପ୍ରେମ ହେଉଛି ପାଞ୍ଚ ପ୍ରକାର ଯଥା :—ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର୍ଯ୍ୟ । ସନକାଦି ମୁନିମାନେ ଭଗବାନଙ୍କୁ ପାଇବା ପାଇଁ ଯେଉଁ ପ୍ରେମ ପ୍ରଦର୍ଶନ କରିଥିଲେ ତାହାକୁ ଶାନ୍ତପ୍ରେମ କୁହାଯାଏ । ଦାସ୍ୟ ଭାବ ବା ଦାସ୍ୟ ପ୍ରେମ ସାଧାରଣ ଭକ୍ତଙ୍କ ଠାରେ ପରିଦୃଷ୍ଟ ହୁଏ । ସଖ୍ୟ ପ୍ରେମ ଅର୍ଜ୍ଜୁନଙ୍କ ପରି କେତେକ ଭକ୍ତଙ୍କ ଠାରେ ଦେଖିବାକୁ ମିଳେ କାରଣ ସେମାନେ ଶ୍ରୀକୃଷ୍ଣଙ୍କୁ ସଖା ଭାବରେ ଲାଭ କରିଥିଲେ । ସେହିପରି ଯଶୋଦାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରେମ ଓ ଶ୍ରୀ ରାଧିକାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରେମକୁ ଯଥାକ୍ରମେ ବାତ୍ସଲ୍ୟ ଓ ମାଧୁର୍ଯ୍ୟ ପ୍ରେମ ରୂପେ ନାମିତ କରାଯାଏ । (୧)

ଉପରୋକ୍ତ ପ୍ରେମ ଯେପରି ସ୍ୱର୍ଗୀୟ ଭାବନା ଓ ପବିତ୍ରତା ଉପରେ ପ୍ରତିଷ୍ଠିତ ହୋଇଛି, ସେହିପରି ଭଞ୍ଜଙ୍କ କାବ୍ୟରେ ବର୍ଣ୍ଣିତ ଆଦର୍ଶ ଦାମ୍ପତ୍ୟ ପ୍ରେମ ସ୍ୱର୍ଗୀୟ ଭାବନା ଓ ପବିତ୍ରତାର ସ୍ୱର ବହନ କରିଛି । ଆର୍ଯ୍ୟ ସଂସ୍କୃତିରେ ଦାମ୍ପତ୍ୟ ସମ୍ବନ୍ଧ ଜନ୍ମ ଜନ୍ମାନ୍ତର ପାଇଁ ଏକ ଅବିଚ୍ଛେଦ୍ୟ ବନ୍ଧନ ବୋଲି ଧରାଯାଏ । ଭାରତୀୟ

(୧) ଗୋପାଳ ପ୍ରହରାଜ; ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ—୪ର୍ଥ ଖଣ୍ଡ ପୃ ୫୧୮୫

କବି ମଦନଙ୍କ ମତରେ ସତୀ ସ୍ତ୍ରୀ ପରଜନ୍ମରେ ମଧ୍ୟ ନିଜର ପତି ଅଙ୍ଗ ସଙ୍ଗ ଲାଭ କରେ । ଏ ବିଷୟରେ ଋକ୍‌ବେଦରେ ଉଲ୍ଲେଖ ଅଛି :—

"ଯା ଦମ୍ପତି ସୁମନସା ସୁନୁତ ଆ ଚ ଧାବତଃ
ଦେବାସୋ ନିତ୍ୟୟା ଶିରା
ସମଞ୍ଜନ୍ତୁ ବିଶ୍ୱେ ଦେବାଃ ସମାପୋ ହୃଦୟାନି ନୌ
ସ ମାତରିଶ୍ୱା ସଧାତା ସମୁଦେଷ୍ଟ୍ରୀ ଦଧାତ ନୌ ।"

ଅର୍ଥାତ୍ :—ଯେଉଁ ଦମ୍ପତି (ସ୍ତ୍ରୀ-ପୁରୁଷ) ଏକମନ ହୋଇ ଯଜ୍ଞ (ସମାଜର ହିତକର କାର୍ଯ୍ୟ) କରନ୍ତି ଏବଂ ଲୋକଯାତ୍ରା ପାଇଁ ପରିଶ୍ରମ କରନ୍ତି ଏବଂ ନିତ୍ୟ ନିଜନିଜର କର୍ତ୍ତବ୍ୟ ପାଳନ କରି ଈଶ୍ୱର ପ୍ରସାଦ ପ୍ରାପ୍ତ ହୁଅନ୍ତି ସେମାନେ ଦେବତା । ଦେବଗଣ ! ଆମ ଦୁଇ ସ୍ତ୍ରୀ ପୁରୁଷଙ୍କୁ ସର୍ବଦା ଏକତ୍ର ରଖନ୍ତୁ, ଆମ ଦୁହିଙ୍କ ହୃଦୟ ଜଳବତ୍ ଅବିଚ୍ଛିନ୍ନ ରହୁ ଏବଂ ଆମ୍ଭ ଦୁହିଙ୍କ ପ୍ରତ୍ୟେକ, ଧାରଣ ଓ ଉପଦେଶ ପରସ୍ପର ହିତ ସାଧନ ଲାଗି ରହୁ ।

ଅନୁରୂପ ବର୍ଣ୍ଣନା ମଧ୍ୟ ମନୁସ୍ମୃତିରେ ଦେଖିବାକୁ ମିଳେ । ସେଥିରେ ସ ଗୃ ଯାଇଛି :—

"ଅନ୍ୟୋନ୍ୟ ସ୍ୟା ବ୍ୟଭିଚାରୋ
ଭବେଦା ମରଣାନ୍ତିକ
ଏଷ ଧର୍ମଃ ସମାସେନ
ଜ୍ଞେୟଃ ସ୍ତ୍ରୀ ପୁଂସୟୋଃ ପରଃ ।"

ଅର୍ଥାତ୍ :— ସ୍ତ୍ରୀ-ପୁରୁଷ ଆଜନ୍ମ ପରସ୍ପର ଅବିଚ୍ଛିନ୍ନ ଭାବରେ ମିଳିତ ରହନ୍ତୁ । ଦୁହିଙ୍କ ମଧ୍ୟରେ କେତେବେଳେ ବିଚ୍ଛେଦ ନ ହେଉ ଏହା ସଂକ୍ଷେପତଃ ସ୍ତ୍ରୀ ପୁରୁଷ ଧର୍ମର ସାର ଅଟେ । (୨)

ସେହିପରି ଆଉ ଏକ ଦୃଷ୍ଟାନ୍ତ ରହିଛି ଶିବଙ୍କର ଅର୍ଦ୍ଧନାରୀଶ୍ୱର ମୂର୍ତ୍ତିରେ ଯେଉଁଥିରେ ଶିବ ନିଜେ ଅର୍ଦ୍ଧକରେ ରହି ନାରୀ ପାର୍ବତୀଙ୍କର ଅର୍ଦ୍ଧକ ଅଙ୍ଗ ଏହି ମୂର୍ତ୍ତିରେ ଧାରଣ କରିଛନ୍ତି, ଏହା ତାଙ୍କର ଅଭିନ୍ନ, ଅବିଚ୍ଛେଦ୍ୟ ଦାମ୍ପତ୍ୟ ପ୍ରେମ ଛଡ଼ା କ'ଣ ହୋଇପାରେ ?

ଆଲୋଚ୍ୟ କାବ୍ୟରେ ସେହି ଅନାବିଳ ଦାମ୍ପତ୍ୟ ପ୍ରେମର ଆଦର୍ଶକୁ ପରିପ୍ରକାଶ କରିବା ପାଇଁ କବି ଲେଖିଛନ୍ତି :—

---

(୨) ପ୍ରାଣନାଥ ମହାନ୍ତି; ବିଶ୍ୱ ସାହିତ୍ୟକୁ ଦାନ କଲାଭଳି ସାମଗ୍ରୀ ଭଞ୍ଜ ସାହିତ୍ୟରେ ଅଛି କି ?— ଆମ ଉପେନ୍ଦ୍ର ଭଞ୍ଜ ଆମ ସାହିତ୍ୟରେ ପ୍ରକାଶିତ ପୃ—୯୫

ସ୍ୱାନ୍ତୁ ତ ପ୍ରୀତେ ରୁ ନାହିଁ — ମୁଁ ବଶ ହୋଇଚ୍ଛ ତହିଁ
ଅନଳ ପତଙ୍ଗ ପ୍ରାୟେ ହେଲେ ହେବ ତହିଁକ ଶୋଚନା ନାହିଁ ।
୯/୧୫ ର. ଲେଖା

ଅନାଇଁ ଉଜ୍ଜଳ ଦୀପ — ମୃଗେ ହୁଅନ୍ତି ଲୋଲୁପ
ଶବର ଶରକୁ ଡ଼ର ତ ନଥାଇ ମାରୁ ପଛେ ଫୁଲ ଗୃପ ୯/୧୬
ଇଚ୍ଛା ନାହିଁ ଇନ୍ଦ୍ର ପଦେ — ଏକାଗ୍ର ନୃପ ସମ୍ପଦେ
ଶ୍ରବଣ କରନ୍ତି ତୋର ଉତ୍ସବକୁ ବଳା ବାଜବାର ପାଦେ ୯/୧୬

ଦମ୍ପତ ଅବସ୍ଥାକୁ ଆସିବା ପୂର୍ବରୁ ନାୟକ ନାୟିକାଙ୍କ ମଧ୍ୟରୁ ଜଣେ ଅନ୍ୟ ଜଣଙ୍କର ପୂର୍ଣ୍ଣ ପରିଚୟ ଲାଭ କରିବା ଦରକାର ପଡ଼ିଥାଏ । ଚାରି ଚକ୍ଷୁ ମିଳନରେ ପ୍ରେମ ବନ୍ଧନ ସୁଦୃଢ଼ ହୋଇ ନପାରେ ବୋଲି ହୃଦୟ ସହିତ ହୃଦୟର, ମନ ସହିତ ମନର, ଆତ୍ମା ସହିତ ଆତ୍ମାର ମିଳନ ଘଟାଇବାକୁ ଆବଶ୍ୟକ ପଡ଼େ । ଏପରି ହୋଇ ପାରିଲେ ଦାମ୍ପତ୍ୟ ଜୀବନରେ ସୁଖ ସୌହାର୍ଦ୍ଦ୍ୟ ବଢେ, ମାନସିକ ବଳ ବହୁ ଗୁଣିତ ହୁଏ ଓ ମହତ୍ କାର୍ଯ୍ୟ ସମ୍ପାଦନା ପାଇଁ ପ୍ରେରଣା ମିଳେ । ସେଥିପାଇଁ କବି ସ୍ୱକୀୟ କାବ୍ୟ ଜଗତରେ ନାୟକ ନାୟିକା ଉଭୟେ ପରସ୍ପରର ପୂର୍ଣ୍ଣ ପରିଚୟ ପାଇବାକୁ କେତେ ଗୁଡ଼ିଏ ସର୍ବଜନ ସମ୍ମତ ଉପାୟମାନ ଅବଲମ୍ବନ କରିଛନ୍ତି । ସଖୀ ସହଚରୀ, ଦୂତଦୂତୀ, ନଟନଟୀ, ଐନ୍ଦ୍ରଜାଲିକ, ଯାଦୁକର, ବୋଇତଆଳ, ବ୍ରହ୍ମଗୁରୀ, ପୋଟା, ଶୁକସାରୀ, ମାଳିନୀ, ସନ୍ୟାସିନୀ, ପଠପଠଣୀ ପ୍ରଭୃତିଙ୍କ ସାହାଯ୍ୟରେ ସେ ପ୍ରେମିକ ପ୍ରେମିକାଙ୍କର ଚିତ୍ରପଟ ଦର୍ଶନ, କୁହୁକ ମନ୍ତ୍ର ପ୍ରଭାବରେ ମିଳନ, କଥୋପ କଥନ, ମିଳନ କରାଇଛନ୍ତି । ସେହିପରି ନାୟକ ନାୟିକାଙ୍କ ଦର୍ଶନର ସ୍ଥାନ ଯଥା : ଦେବାଳୟ, ବନ, ଉପବନ ଆଦିର ବ୍ୟବସ୍ଥା କରିଛନ୍ତି । (୩)

ଆଲୋଚ୍ୟ କାବ୍ୟରେ ନାୟକ ନାୟିକାଙ୍କ ମିଳନ ପାଇଁ ଢନେ ପାର୍ବତୀ ସ୍ୱପ୍ନରେ ସୁଧାନିଧି ରାଜ୍ୟର ରାଜକୁମାର ବଶ୍ୱଭୂତିଙ୍କୁ କହିଛନ୍ତି :—

× × ×

ଯାଅ ରସୋଦୟ ବନେ,
ରାଜ ରଞ୍ଜିର କୁମାରୀ, ଅତି ସୁନ୍ଦରୀ ଏ । ୩/୨୧ ର. ଲେଖା
ତାହାକୁ ସେ ସ୍ଥଳେ ଦେଖ, ମନେରଖ ନେତ୍ର ଲେଖ
ଗୃଟ୍ଟ ଉପାୟରେ ଲଭ, ହେଉ ତ ଶୁଭ ଏ । ୩/୨୨

(୩) ଅନନ୍ତ ପଦ୍ମନାଭ ପଟ୍ଟନାୟକ; କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ପୃ ୧୦୮

ଏହି କଥା ମନେରଖି ରାଜକୁମାର ରସୋଦୟ ବନରେ ବୁଲୁଥିବା ରସଲେଖାକୁ ଦେଖି ଭାବୁଛି :—

ଏ ତ ଲବଣ୍ୟ ସବ ରୂଣ୍ଡ ସୀମା,
ନାହିଁ ସମ ଏହା ଏହି ଉପମା,
ରସ ହରଷ ବୟସ ଏ ତନ
ସହିଁ ହୋଇ ଅଛନ୍ତି ଘେନାଘେନ । ୫/୨ (ରସଲେଖା)

ରସଲେଖାଠାରେ ରସ, ହର୍ଷ ଓ ବୟସ—ଏ ସମସ୍ତ ଠୁଳ ହୋଇ ଥିବାରୁ ସେ ଅତ୍ୟନ୍ତ ମନଲୋଭା ହୋଇ ପାରିଛି ଓ ନାୟକର ମନରେ ପ୍ରେମ ଉଦ୍ଦୀପନା ସୃଷ୍ଟି କରିଛି । ଏହି ପରିପ୍ରେକ୍ଷୀରେ ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତ ସିଂହାର କହନ୍ତି :—

ଶୋଭା ବୟ ଭଂଗୀ ବେଶ ଭୂଷଣ
ଏକାନ୍ତ କ୍ରୀଡ଼ା ନାନା ଆଚରଣ,
ସଙ୍ଗୀତ ଇଂଗିତ ବଧି ବିଗ୍ରହ
ସ୍ରକ ଚନ୍ଦନ ତାମ୍ବୂଳ ଦେବାର
ଏ ଆଦରେ ଯେତେ
ଉଦ୍ଦୀପନ କାଣ୍ଡ ଏହି ଜଗତେ । ୪୦/୧୭ ବିଦଗ୍ଧ ଚିନ୍ତାମଣି

ପ୍ରକୃତ ପକ୍ଷେ ସୌନ୍ଦର୍ଯ୍ୟ, ବୟସ, ଭଂଗୀ, ବେଶ ଭୂଷଣ, ଏକାନ୍ତରେ କ୍ରୀଡ଼ା ନାନା ଆଚରଣ, ସଂଗୀତ, ଇଂଗିତ, ଫୁଲ, ଚନ୍ଦନ ଓ ତାମ୍ବୂଳ ଇତ୍ୟାଦିର ଆଦାନ ପ୍ରଦାନରେ ପ୍ରେମ ସୃଷ୍ଟି ହୋଇଥାଏ ।

ପ୍ରଥମ ଦେଖା ପରେ ନାୟକ ନାୟିକାଙ୍କ ହୃଦୟରେ ପ୍ରେମବୀଜ ଅଙ୍କୁରିତ ହୋଇଛି ଓ ପ୍ରେମ ପତ୍ରର ଆଦାନ ପ୍ରଦାନ ମାଧ୍ୟମରେ ତାହାକୁ ଦୃଢ଼ୀଭୂତ କରିବାକୁ ସେମାନେ ଚେଷ୍ଟା କରିଛନ୍ତି । ରାଜ କୁମାର ରସଲେଖା ପାଖକୁ ପଠାଇଥିବା ପ୍ରେମ ପତ୍ରରେ ଲେଖିଛି :—

ତୋର ନାମ ହୃଦେ କରୁ କରୁ ଜପ
ପୁଣି ଧ୍ୟାନ କରୁ କରୁ ତୋର ରୂପ ୭/୩୪ (ର. ଲେଖା)
ଯାଉ ଯାଉ ଏ ଜୀବନ ଯଶ ଥାଉ
ଏଥୁଁ ପରମ ଗତି ଅଛି କି ଆଉ । ୭/୩୫ (ର. ଲେଖା)

× × ×

କ୍ଷମା କର ମୋହର ଚଷ୍ଟାଉ ଦୋଷ
ମେ.ହ ପ ଉଁ ସଜନୀ ମାନଙ୍କୁ ତୋଷ । ୭.୪୦ (ର. ଲେଖା)

ଏହି ପ୍ରେମ ପତ୍ରକୁ ପଢ଼ି ରସଲେଖା ଭାବବିହ୍ୱଳ ହୋଇ ଉଠିଛି ଓ ତାର ଶରୀରରେ କମ୍ପ ଦେଖା ଦେଇଛି । ଉଚ୍ଚ ସ୍ୱରରେ "ହେ ହର ! ମୋର ପ୍ରେମ ଜନିତ ଦୁଃଖକୁ ହରଣ କର" ବୋଲି ଡ଼ାକ ପକାଇଛି ।

ଋତୁ ପର୍ଯ୍ୟାୟକ୍ରମରେ ଧରଣୀରେ ଦେଖା ଦେଇଛି ମଧୁମାସ । କୋଇଲଟି ଆମ୍ବ ଗଛ ଡ଼ାଳରେ ବସି କୁହୁକୁହୁ ଗୀତ ଗାଉଛି । ଏ ଗୀତିକୁ ଶ୍ରବଣ କରି ଓ ପ୍ରିୟ କଥା ମନେ ପକାଇ ରସଲେଖା ସଜ୍ଞାହୀନ ହୋଇ ପଡ଼ିଛି । ପ୍ରିୟ ସଖୀମାନେ ନାନା ଚେଷ୍ଟାକରି ତାର ସଜ୍ଞା ଫେରାଇ ଅଣିବାରେ ପ୍ରିୟର ବିରହରେ ସେ ଚନ୍ଦ୍ର ଓ ମଳୟ ପବନକୁ ନିନ୍ଦା କରିବାକୁ ପଛାଇ ନାହିଁ । ସଖୀମାନଙ୍କ ପ୍ରଶ୍ନର ଉତ୍ତର ଦେଇ କହୁଛି -

ବାଳା (ରସଲେଖା) ବୋଲେ ତେତେକେ ଲ ଜାଉଁଥିଲେ ସିନା
ଅତି ଅସହିତା ସଖୀ ବିରହ ବେଦନା ୮/୧୯
ପ୍ରମାଣ କ.ମର ଅଛୁ ଅମ୍ବୁଜ (ପଦ୍ମ) ବିଶିଖ (ଶର)
ଦେଖ ଜରଜ ଗିରକ କରୁଅଛୁ ଲଖ ! ୮।୨୦ (ର. ଲେଖା)

ଅନୁରୂପ ଭାବନା ମଧ୍ୟ ନାୟକ ଠାରେ ଦେଖାଦେଇଛି । ରସଲେଖାର ବିରହରେ ବିରହୀ ହୋଇ ନାୟକ ମନେ ମନେ ନିମ୍ନୋକ୍ତ ପ୍ରକାରରେ ଚିନ୍ତା କରୁଅଛି :—

ଯେଉଁ ଅ.ଖି ଦେଖି ନାହିଁ ବାଳା ବଦନ
ଅ.ଖିରେ ନ ଦେଖି ଶିଖୀଚନ୍ଦ୍ରକ (ମୟୂର ଚନ୍ଦ୍ରିକା) ସମାନ ଯେ ୧୦।୪୩

×   ×   ×

ଯେଉଁ ମୁଖ ଗୃହ୍ଣ କରି ନାହିଁ ଯୁବତୀଙ୍କ
ସେ ନିଷ୍ଟେ ବହିଛି ନିରର୍ଥକ ଭାରତୀକ (କଥାକୁ) ଯେ । ୧୦/୪୫
ଯେଉଁ ଦେହ ଲାଗି ନାହିଁ ରସବତୀ ଦେହ
ଅଗମ୍ୟ ବନରେ ଶୁଷ୍କ ଦାରୁ ପରି ସେହି ଯେ । ୧୦/୪୭
(ର. ଲେଖା)

ଏହିପରି ନାୟକ ନାୟିକାଙ୍କ ଠାରେ ଗଭୀର ଅନୁରାଗ ବଢ଼ିବା ପରେ ଶୁଭଲଗ୍ନ ସ୍ଥିର କରାଯାଇଛି ଓ ବିବାହ କାର୍ଯ୍ୟ ନାରଦଙ୍କ ଦ୍ୱାରା ସଂପାଦିତ

ହୋଇଛି । ବିବାହ ପରେ ଆସିଛି ନାୟିକା ନାୟିକାଙ୍କର ମଧୁଶଯ୍ୟାର ଦିନ । ଏହି ମିଳନର ରାତି କିପରି ମଧୁମୟ ହେବ ସେଥିପାଇଁ ରସଲେଖାର ସଖୀମାନେ ଦିନ ଶେଷ ହେବାକୁ ଆଉ ଦୁଇ ଘଡ଼ି ବାକି ଅଛି ତାକୁ ଅଳଙ୍କାରରେ ମଣ୍ଡନ କରିଛନ୍ତି । ଏ ସମୟର ଶୋଭା ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି :—

ମାରକ କଟୀ (ପଦ୍ମକଟୀ) ଉରଜ ଉପରେ
ଚେଲ (ବସ୍ତ୍ର) ନଦେଲେ ଫୁଲ ଉପକାରେ
ପତ୍ରାବଳୀରେ ସେ ଅତି ବିଚିତ୍ର
ହେମ (ସୁନା) ଯନ୍ତ୍ର ଉର୍ମି (ଲହ) ରୋପଣ ଶବ୍ଦେ
ଚୂଡ଼ୀ ତାଡ଼ ମୁଦି ଦେଇ ସେ
ହସ୍ତକୁ ପୂଜିଲେ ଅତୁଳା (ତୁଳନା ନ ହୋଇ ପାରିବା) ବୋଲି ସି
ଅତୁଳା ହିଁ ଥିଲା ତହିଁ ସେ । ୧୩/୧୧ (ର. ଲେଖା)

ସେହିପରି ମଧୁଶଯ୍ୟା କକ୍ଷକୁ ରସ ଲେଖାକୁ ତାର ସଖୀମାନେ ନେବାବେଳେ ଯେଉଁ ସବୁ ଉପଦେଶ ଦେଇଛନ୍ତି ତାହା କବି ଲେଖନୀରେ ଅତ୍ୟନ୍ତ ମନୋଜ୍ଞ ହୋଇଛି । ଯଥା—

ବାଣ୍ଟୁଣିକି ହେଲେରେ ରହିରହି ନୋହି
ନ ଜାଣିବୁ କେତେବେଳେ ନଶିଯିବ ପାହି ସେ । ୧୪।୧

×　　　×　　　×

ଅବଳାକୁ ବଳା (ବଳଯୁକ୍ତା ସ୍ତ୍ରୀ) ବୋଲି ସେ ଯେଉଁ ରସିବ
ଉରରେ ଲଗାଇ ସବୁ ଦୃଢ଼େ ସେ ଭିଡ଼ିବ ସେ । ୧୪।୧୧
କବସନ କାଳକୁ କେବଳ ହେଜୁଥିବୁ ।
କେଶ କୁସୁମ ପକାଇ ଦୀପ ଲିଭାଇବୁ ସେ ୧୪।୧୨
ନାହିଁ ସେ ବୋଲିବେ ତାହା ନ କରିବୁ ନାହିଁ ।
ଏ ସେ ଜାଣି ନାହିଁ କେହି ପୁରେ ମନଦେଇ ସେ ୧୪।୧୩ (ର. ଲେଖା)

କବି ମିଳନ ପରେ ବିଚ୍ଛେଦର ସୂତ୍ରପାତ କରିଛନ୍ତି । କେତେକ କ୍ଷେତ୍ରରେ ବିବାହ ପୂର୍ବରୁ ନାୟକ ନାୟିକାଙ୍କ ମନରେ ପ୍ରଣୟ ଜାତ କରାଇ ବିରହର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ବିବାହ ପରେ ପୁଣି ବିରହ ବର୍ଣ୍ଣନା କରିଛନ୍ତି । ଏହି ବିରହ ବର୍ଣ୍ଣନାରେ ବିମଳ ଦାମ୍ପତ୍ୟ ପ୍ରେମର ସରସତା ପ୍ରତିପାଦିତ ହୋଇଛି । ବିରହୀ

ନାୟକ ପ୍ରାଣ ପ୍ରେୟସୀର ଦୂରରେ ରହି ନିଜର ସାଙ୍ଗ ଆଗରେ ଦୁଃଖ ପ୍ରକାଶ କରି କହୁଛି :—

ଉଜ୍ଜ୍ୱଳ କରଇ ନିଶାକୁ ଚନ୍ଦ୍ରମା ଚନ୍ଦ୍ରମାକୁ ନିଶା ଯେମନ୍ତ
ରସିକା ନାୟିକା ରସିକ ଯେପରି ରସିକା ରସିକେ ତେମନ୍ତ
ଆହେ ସଙ୍ଗାତ ଭୃଙ୍ଗ ମଧୁବିନ୍ଦୁ କାଲେଡ଼ି
ଅଚଳ ଶିରେ କମ୍ପା ପଡ଼େ କୁଳିଶ ପ୍ରିୟା ବିଚ୍ଛେଦ ଶିରଗୁଡ଼ି ୧୭।୧୩

ଅନୁରୂପ ଭାବନା ମଧ୍ୟ ନାୟିକା ଠାରେ ଦେଖାଦେଇଛି । କାନ୍ତଗୁଣ ମାନ ସ୍ମରଣ କରି ଭାବୁଛି :—

କେ ପାଇଁ କହିବ କାନ୍ତ ଗ୍ରୀଷ୍ମରେ ଏଡିକି
ହୃଦରେ ପକାଅ ଯାକୁ ଶୀଘ୍ର ନେଇ ଟେକି
ହେବ ଅଗଣା ହେବକି । ବିରହ ଅନଳେ ତାକୁ ପୋଡ଼ି ଦେଇନକି ୨୦/୮

ନାୟକ ନାୟିକାଙ୍କ ବିଚ୍ଛେଦ ହେବା ପରେ କବି ପୁଣି ଶେଷରେ ଦୁଇଜଣଙ୍କର ମିଳନ କରାଇ ସମଗ୍ର କାବ୍ୟଟିକୁ ରସାପ୍ଳୁତ କରିଛନ୍ତି ।

କାବ୍ୟର ଶେଷ ଭାଗରେ କବି ଉଲ୍ଲେଖ କରିଛନ୍ତି ଯେ ଉକ୍ତ କାବ୍ୟର ରଚନା ଦିବ୍ୟସିଂହ ଦେବଙ୍କ ୨୭ ଅଙ୍କରେ ସମ୍ପୂର୍ଣ୍ଣ ହୋଇଅଛି । ଏହି ଉକ୍ତିକୁ ଉଦ୍ଧାର କରି ପଣ୍ଡିତ ବିନାୟକ ମିଶ୍ର କହନ୍ତି ୧୭୨୧ ମସିହାରେ ଉକ୍ତ କାବ୍ୟର ରଚନା ସମ୍ପୂର୍ଣ୍ଣ ହୋଇଥିଲା ଓ ଏହା କବିଙ୍କର ପ୍ରାରମ୍ଭିକ ରଚନା । (୪)

ଆଲୋଚ୍ୟ କାବ୍ୟ କବି ପ୍ରତିଭାର ପ୍ରାରମ୍ଭିକ ସଙ୍କେତ ବହନ କରିଥିବାରୁ ଏଥିରେ ବିଶେଷ ଅଳଙ୍କାର ପ୍ରୟୋଗର ସୂଚନା ମିଳେ ନାହିଁ । ସରଳ ସାବଲୀଳ ଭାଷାରେ ଲିଖିତ ଏହି କାବ୍ୟଟିକୁ ପାଠକଲେ ମନେହୁଏ ସତେ ଯେପରି ଉପେନ୍ଦ୍ରଙ୍କ ପ୍ରତି ଆରୋପିତ କ୍ଳିଷ୍ଟତା ଓ ଅଶ୍ଳୀଳତା ଦୋଷରୁ କାବ୍ୟଟି ସମ୍ପୂର୍ଣ୍ଣ ମୁକ୍ତ ଅଟେ । (୫) ପାରମ୍ପାରିକ ଓଡ଼ିଆ କାବ୍ୟରୀତି ଓ ପ୍ରକାଶ ଭଙ୍ଗୀ ମାଧ୍ୟମରେ ପ୍ରେମ ଚିତ୍ରର ବର୍ଣ୍ଣନା ଅତି ସୁନ୍ଦର ଭାବରେ ଅବତାରଣା କରିପାରିଛନ୍ତି ।

---

୪ । ପଣ୍ଡିତ ବିନାୟକ ମିଶ୍ର; କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ- ଆମ ଉପେନ୍ଦ୍ର ଭଞ୍ଜ ଆମ ସାହିତ୍ୟରେ ପ୍ରକାଶିତ- ପୃ ୪୭

୫ । କିଶୋର ଚନ୍ଦ୍ର ମିଶ୍ର; ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ଉପମା: ଏକ ଅଧ୍ୟୟନ ପୃ- ୨୪

# 'ରସଲେଖା'ର ଚରିତ୍ର ଚିତ୍ରଣ କୌଶଳ

॥ ଅଧ୍ୟାପକ ମଧୁସୂଦନ ମହାପାତ୍ର ॥
ଏମ୍. ଫିଲ୍.

---

ଉପେନ୍ଦ୍ର ଭଞ୍ଜଙ୍କ ରସଲେଖା କାବ୍ୟ ଅନ୍ୟାନ୍ୟ କାବ୍ୟପରି ଚରିତ୍ର ମାନଙ୍କର ଏକ ସୁଦୃଶ୍ୟ ଚିତ୍ରଶାଳା । ସାହିତ୍ୟରେ କାହାଣୀକୁ ଗତିଶୀଳ କରାଇବାକୁ ହେଲେ କେତେକ ଚରିତ୍ରର ଆବଶ୍ୟକତା ଅପରିହାର୍ଯ୍ୟ ହୋଇଥାଏ । ଏକ ବଳିଷ୍ଠ ପ୍ରେମ କାହାଣୀକୁ ଭିତ୍ତିକରି ଏହି କାବ୍ୟଟି ରଚିତ ହୋଇଥିବାରୁ ବିଷୟ ଅନୁରୂପ ଚରିତ୍ର ସୃଷ୍ଟି କରିବା ପାଇଁ କବି ଯଥେଷ୍ଟ ଶ୍ରମ ସ୍ୱୀକାର କରିଛନ୍ତି । ତତ୍କାଳୀନ ସମାଜରେ ଧନୀକ ସମ୍ପ୍ରଦାୟରେ ପ୍ରଚଳିତ ରୀତିନୀତି ଅନୁଯାୟୀ ଏହି ଚରିତ୍ର ଗୁଡ଼ିକ ପରିପୁଷ୍ଟ । ମୁଖ୍ୟତଃ କବି ରାଜ ପରିବାରର ଅନ୍ତର୍ଭୁକ୍ତ ହୋଇ ଥିବାରୁ ଏବଂ ତତ୍କାଳୀନ କବି ଓ ତାର କାବ୍ୟ ଦରବାରାଶ୍ରୟୀ ହୋଇଥିବାରୁ ସମ୍ଭ୍ରାନ୍ତ ପରିବାରର ଗୃହଚଳଣିକୁ ଦୃଷ୍ଟି ସମ୍ମୁଖରେ ରଖି ସେ ତାଙ୍କ କାବ୍ୟର ଚରିତ୍ର ଗୁଡ଼ିକ ସୃଷ୍ଟି କରିଛନ୍ତି । ନିଜ ଜୀବନ ପର୍ଯ୍ୟାୟ ଭିତରେ କବି ବହୁ ଶ୍ରେଣୀର ଚରିତ୍ର ମାନଙ୍କ ସଂସ୍ପର୍ଶରେ ଆସିଛନ୍ତି । ଏହି ଅନୁଭୂତିକୁ ପୁଞ୍ଜି କରି ତଥା ତଦୀୟ ସମୟର କାବ୍ୟ ନିୟମାନୁମୋଦିତ ରୀତିରେ କବି ତାଙ୍କର ଚରିତ୍ର ଗୁଡ଼ିକ ଅଙ୍କନ କରିଛନ୍ତି ।

ଚରିତ୍ର ସୃଷ୍ଟିରେ ଉପେନ୍ଦ୍ର ଭଞ୍ଜ ଏହି କାବ୍ୟରେ କେବଳ ସ୍ରଷ୍ଟା ନୁହଁନ୍ତି ଦ୍ରଷ୍ଟା ମଧ୍ୟ । ପୁରାଣୀୟ ପ୍ରବୃତ୍ତି ଉପରେ ପ୍ରତିଷ୍ଠିତ ତାଙ୍କର ଏହି ଚରିତ୍ର

ଗୁଡ଼ିକ କଲ୍ପନା ବଳାପରେ ପୃଷ୍ଠପୀଠିକା ଉପରେ ଦଣ୍ଡାୟମାନ ହୋଇଛନ୍ତି । କବି ସ୍ୱୀୟ କାବ୍ୟ ଗୁଡ଼ିକରେ ଯେପରି ଭାବରେ ଚରିତ୍ର ଚିତ୍ରଣ କରିଛନ୍ତି ତାଙ୍କର ସମସାମୟିକ ତଥା ପରବର୍ତ୍ତୀ କାଳର କବିମାନେ ତାହାକୁ ଅନୁସରଣ କରିଛନ୍ତି । ମାତ୍ର ତାଙ୍କର ସ୍ୱାତନ୍ତ୍ର୍ୟକୁ ଏପର୍ଯ୍ୟନ୍ତ କୌଣସି କବି ଅତିକ୍ରମ କରିବାକୁ ସମର୍ଥ ହୋଇ ନାହାନ୍ତି । ଚରିତ୍ରକୁ ପାଠକ ନିକଟରେ ପରିଚିତ କରାଇବା ପାଇଁ ସେ ନିଜେ ଅନେକ କଥା ପ୍ରକାଶ କରିଛନ୍ତି । କାରଣ ଚରିତ୍ର ମାନଙ୍କର ସୃଷ୍ଟି, ବିକାଶ ଓ ପରିଣତି ପ୍ରତି ସୂକ୍ଷ୍ମ ଦୃଷ୍ଟି ନ ଦେଲେ ସ୍ରଷ୍ଟାର ସୃଷ୍ଟି ସମ୍ପଦ ଯଥାର୍ଥ ଭାବେ ରୂପାୟିତ ହୋଇପାରିବ ନାହିଁ । ଇଂରାଜୀ କବି ସେକ୍‌ସପିଅରଙ୍କ ପରି ତାଙ୍କର ସମସ୍ତ କାବ୍ୟରେ ସଂଯୋଜିତ ଚରିତ୍ର ଗୁଡ଼ିକ ଉଚ୍ଚବର୍ଣ୍ଣର ଏବଂ ବିଶିଷ୍ଟ ସମ୍ପ୍ରଦାୟର ।

ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟ ସାଧନାର ସମୟ ଓଡ଼ିଶା ଇତିହାସରେ ଏକ କ୍ରାନ୍ତିକାଳୀ ପର୍ଯ୍ୟାୟ । ଏକାଳର ଓଡ଼ିଶା ତଥା ଓଡ଼ିଆଜାତି ପରାଧୀନତାର ଶୃଙ୍ଖଳାରେ ଆବଦ୍ଧ ହୋଇ ରହିଥିଲା । ଓଡ଼ିଶାର ପ୍ରଶାସନିକ ଦାୟିତ୍ୱ ମୋଗଲ, ମରହଟ୍ଟା ତଥା ସାମନ୍ତ ରାଜାମାନଙ୍କ ହାତରେ ନ୍ୟସ୍ତ ଥିଲା । ସୁବିଧାଙ୍କର ପ୍ରଲୋଭନ ତଥା ସେମାନଙ୍କ କବିତାର ସମ୍ମୋହନ ମନ୍ତ୍ରରେ ଏମାନେ ହୋଇଥିଲେ ବଶୀଭୂତ ତେଣୁ ଭାଗ୍ୟ ବିପର୍ଯ୍ୟସ୍ତ ଦୈବୀ ଅଭିପ୍ରେତ ହାସ୍ୟଭ ଅଥଚ ରସାଳ ଚରିତ୍ରମାନଙ୍କୁ ନେଇ ଏହି ସମୟର କବିମାନଙ୍କର କାବ୍ୟ ସମୂହ ପରିକଳ୍ପିତ ହୋଇଅଛି ।

ସାତଶହ ଛତିଶ ପଦ ବିଶିଷ୍ଟ ସମୁଦାୟ ବାଇଶି ଛାନ୍ଦ ବିଶିଷ୍ଟ 'ରସଲେଖା' କାବ୍ୟ ପ୍ରାଥମିକ ପର୍ଯ୍ୟାୟର ରଚନା ହୋଇ ଥିବାରୁ ଏଥିରେ କବିଙ୍କର କୌଣସି ନିର୍ଦ୍ଦିଷ୍ଟ 'ଶୈଳୀ' ବା ମତବାଦ ରୂପାୟିତ ହୋଇପାରି ନାହିଁ । ରୀତିଯୁଗର ଚିରାଚରିତ ଶୈଳୀ କ୍ଲିଷ୍ଟ ଶବ୍ଦ ସଂଯୋଜନା କିମ୍ବା ଅଳଂକାର ପ୍ରବଣତା ମଧ୍ୟ ଏଥିରୁ ଦେଖାଯାଏ ନାହିଁ । ଚରିତ୍ର ଚିତ୍ରଣରେ ଅନୁରୂପ ଭାବେ କବି ବଳିଷ୍ଠ ପଦକ୍ଷେପ ନ ନେଇଥିଲେ ମଧ୍ୟ ଏ ଦିଗଟି ସମ୍ପୂର୍ଣ୍ଣ ଅବହେଳିତ ହୋଇନାହିଁ ।

'ରସଲେଖା' କାବ୍ୟ ମଧ୍ୟରେ ପ୍ରତିଭାତ ହୋଇଥିବା ଚରିତ୍ର ଗୁଡ଼ିକର ସ୍ୱରୂପ କିମ୍ବା 'ଗୃହ' ବା ରେଖା ଚିତ୍ରରୁ ସ୍ପଷ୍ଟ ଅନୁମିତ ହେବ ।

## 'ରସଲେଖା' ର ଚରିତ୍ର




ରସଲେଖା କାବ୍ୟରେ ଉପେନ୍ଦ୍ର କବି ମୁଖ୍ୟତଃ ଦୁଇପ୍ରକାର ଚରିତ୍ର ବ୍ୟବହାର କରିଛନ୍ତି—ଲୌକିକ ଏବଂ ଅଲୌକିକ । ଯେଉଁ ମାନଙ୍କର ଜନ୍ମ, ବିକାଶ ଏବଂ ସାଧନା ଏହି ମାଟିରେ ସାଧାରଣ ଜୀବନ ପରି ହୋଇଥାଏ ସେମାନଙ୍କୁ ଲୌକିକ ଚରିତ୍ର ଏବଂ ଯେଉଁ ଚରିତ୍ର ଗୁଡ଼ିକ ଏହି ମାଟିର ନହୋଇ ଅନ୍ୟ ଏକ ପରିକଳ୍ପିତ ଜଗତର ସେମାନଙ୍କୁ ଅଲୌକିକ ଚରିତ୍ର କୁହାଯାଏ । ଲୌକିକ ଚରିତ୍ର ଗୁଡ଼ିକ ମଧ୍ୟରୁ କେତେକ ଦୈବୀଶକ୍ତି ସମ୍ପନ୍ନ ହୋଇଥିବା ବେଳେ ଅନ୍ୟ କେତେକ ସାଧାରଣ ଶ୍ରେଣୀର । ପୃଥିବୀରେ ଜନ୍ମ ହୋଇଥିଲେ ମଧ୍ୟ ଯେଉଁ ଚରିତ୍ର

ଗୁଡ଼ିକ ଦ୍ୱିତୀୟ ଗୁଣାବଳୀରେ ପରିପୂର୍ଣ୍ଣ। ସେମାନଙ୍କୁ ଦୈବୀଶକ୍ତି ସମ୍ପନ୍ନ ଚରିତ୍ର କୁହାଯାଏ । ଏମାନେ ତ୍ରିକାଳଦର୍ଶୀ ଏବଂ ସାଧନା ବଳରେ କେତେକ ଅଲୌକିକ କାର୍ଯ୍ୟ ସମ୍ପାଦନ କରିପାରନ୍ତି । ଧ୍ୟାନ ବଳରେ ଅନାଗତ ଘଟଣାକୁ ଏମାନେ ନିର୍ଦ୍ଧାରଣ କରିପାରନ୍ତି । 'ରସଲେଖା' କାବ୍ୟରେ ଦୈବୀଶକ୍ତି ସମ୍ପନ୍ନ ୫ ଜଣ ପୁରୁଷ ଚରିତ୍ର ଏବଂ ଜଣେ ନାରୀ ଚରିତ୍ର ସ୍ଥାନ ପାଇଛନ୍ତି । ସେଗୁଡ଼ିକ ହେଲେ —

୧. **କପିସାଞ୍ଜ ମୁନି**—କପିସାଞ୍ଜ ମୁନି ଜଣେ ସୁନାମଧନ୍ୟ ଋଷି ସେ ୭୫୦ ଜଣ ଶିଷ୍ୟଙ୍କ ସହ ନୈମିଷ୍ୟାରଣ୍ୟରେ ବାସ କରୁଥିଲେ । ପୃଥିବୀ ପର୍ଯ୍ୟଟନ କରିବା ସମୟରେ ଏହି ଶିଷ୍ୟମାନେ ୧୨ ବର୍ଷ ପର୍ଯ୍ୟନ୍ତ ନ ଫେରିବାରୁ ସମଗ୍ର ପୃଥିବୀକୁ ଅନୁସନ୍ଧାନ କରି ରସୋଦୟ କାନନରେ ସେ ପହଞ୍ଚିଛନ୍ତି । ଏଠାରେ କନ୍ଦର୍ପର ଫୁଲ ଧନୁଶରରେ ଜର୍ଜରିତ ହେବାରୁ ଯୁବତୀ ଆଡ଼କୁ ତାଙ୍କର ମନ ଆକୃଷ୍ଟ ହୋଇ ପଡ଼ିଛି । ଜପା ମାଳରୁ 'ହରି' ଶବ୍ଦ ଉଚ୍ଚାରିତ ହେବା ପରିବର୍ତ୍ତେ 'ରମା' ଶବ୍ଦ ଉଚ୍ଚାରିତ ହେବା ଫଳରେ ଶୈଳଦେଶର ରାଜାଙ୍କ ନିକଟକୁ ଯାଇ ତାଙ୍କ କନ୍ୟାର ପାଣିଗ୍ରହଣ ପ୍ରସ୍ତାବ ସେ ବାଢ଼ିଛନ୍ତି । ରାଜା ଉପଯୁକ୍ତ ଲଗ୍ନ ଦେଖି ନିଜ କନ୍ୟା ସହ ଋଷିଙ୍କର ବିବାହ କରିଦେବାରୁ ସେମାନଙ୍କ ଔରସରୁ ରସଲେଖା (କାବ୍ୟନାୟିକା) ଜନ୍ମଗ୍ରହଣ କରିଛି । ପରେ ନାୟକର (ବିଶ୍ୱଭୂତି) ଅନ୍ତର୍ଦ୍ଧାନରେ ନାରଦ କହିଥିବା ବିଷୟ ସେ ସମସ୍ତଙ୍କୁ ଜଣାଇଛନ୍ତି—ଦେବୀ ଦୁର୍ଗାଙ୍କ ସୁଦୟାରୁ ନାୟକ ଏଠାକୁ ଆସିଥିଲା ଏବଂ ତାଙ୍କ ନିର୍ଦ୍ଦେଶରେ ସେ ଯାଇଅଛି । ସେ ନିଜ ଇଚ୍ଛା ବଳରେ ଯାଇନାହିଁ । ଦୂତ ପ୍ରେରଣ କରି ତାକୁ ପୁଣି ଆଣିବା ପାଇଁ ପୁରଜନଙ୍କୁ ସେ ନିର୍ଭର ପ୍ରତିଶ୍ରୁତି ଦେଇଛନ୍ତି । ବିବାହ ବେଳେ ସିନ୍ଧୁ ଦେଶରୁ ବହୁ ଜାତିର ଅଶ୍ୱ ଆଣି ସେ କନ୍ୟାକୁ ଉପହାର ଦେଇଛନ୍ତି । ଶଙ୍ଖନିଧି ମନ୍ତ୍ରୀ କନ୍ୟା ପାଇଁ ବହୁ ଅଲଙ୍କାର ଯୋଗାଡ଼ କରିଛନ୍ତି । ଦେବଶିଳ୍ପୀ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ଶୁଖାସନ (ସବାରୀ, ପାଲିଙ୍କି, ପଲଙ୍କ, ଚଉକି ପ୍ରଭୃତି) ଓ ମୂଲ୍ୟବାନ ବାସନ ଅଣାଯାଇଛି । ରତ୍ନ ପଞ୍ଜୁରିରେ ଥିବା ଶୁଆ ସାରୀ ଓ ରତ୍ନବେଣ୍ଟର ସମାର୍ଜ୍ଜନୀ ଦିଆଯାଇଛି ।

୨. **୭୫୦ ଜଣ ଶିଷ୍ୟ**-- କପିସାଞ୍ଜ ମୁନିଙ୍କ ଏହି ଶିଷ୍ୟବୃନ୍ଦ ଏକଦା ପୃଥ୍ୱୀ ପର୍ଯ୍ୟଟନ କରିବା ସମୟରେ ଜଣେ ପରେ ଜଣେ ଆସି ଶୈଳ ଦେଶସ୍ଥ ମଳୟଗିରି ନିକଟରେ ଥିବା ରସୋଦୟ ନାମକ ବନର ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ପଡ଼ିଛନ୍ତି ଏବଂ କନ୍ଦର୍ପ ଶରରେ ପୀଡ଼ିତ ହୋଇ ପତ୍ନୀ ଗ୍ରହଣ କରିଛନ୍ତି । ଧନର ବିନିମୟରେ କିଏ ସ୍ୱୟଂବରରେ ଉପସ୍ଥିତ ହୋଇ କିଏ କନ୍ୟାକୁ ମୋହିତ କରି କିଏ ଅଗ୍ନିରେ ଆହୂତି ଦେଇ କିଏ ଅପୁତ୍ରିକ ଜନକଙ୍କୁ ପୁତ୍ର ଦାନ କରି କିଏ

ଇନ୍ଦ୍ରଙ୍କ ମାଗି କନ୍ୟା ଅପହରଣ କରି ସେମାନେ ନିଜନିଜର ପତ୍ନୀ ପ୍ରାପ୍ତ ହୋଇଛନ୍ତି । ଦୀର୍ଘ ୧୨ ବର୍ଷ ପର୍ଯ୍ୟନ୍ତ ସେମାନେ ଗୁରୁଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ ନ କରିବାରୁ କପିସାଙ୍ଖ ମୁନି ଖୋଜି ଖୋଜି ଆସି ସେମାନଙ୍କ ନିକଟରେ ପହଞ୍ଚିଛନ୍ତି ।

୩. **ନିଶାକର ଋଷି** — ଚତୁର୍ମାସ୍ୟା କଟାଇବାପାଇଁ ସୁଧାନିଧି ନଗରକୁ ଆସିଥିବା ନିଶାକର ଋଷିଙ୍କୁ ରାଜା ଭାସ୍ୱତୀ ନିଜ ପୁତ୍ର (ବିଶ୍ୱଭୂତ)ର ଅନ୍ତର୍ଦ୍ଧାନ ଖବର ପଚାରିଛନ୍ତି । ଋଷି ଧ୍ୟାନବଳରେ ବିଶ୍ୱଭୂତର ସମସ୍ତ ଖବର ଜାଣିପାରିଛନ୍ତି ଏବଂ ସେହି ଦିନ ରାତ୍ରରେ ତାଙ୍କୁ ହରଣ କରିନେଇ ଚୈଳରାଜ୍ୟରେ ମିତ୍ରମାନଙ୍କ ଗାହାଣରେ ଛାଡ଼ିଦେଇଛନ୍ତି । ଯୋଗବଳରୁ କପିସାଙ୍ଖ ମୁନି ତଥା ରାଜା ଭାସ୍ୱତୀଙ୍କ ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣନା କରିଛନ୍ତି । ପୃଥିବୀ ବିଖ୍ୟାତ ସିନ୍ଧୁଦେଶର ରାଜା ଜଳନ୍ଧରକୁ ଶିବ ହତ୍ୟା କରି କଦମ୍ବବଂଶର ଜଣକୁ ନୃପତି କଲେ । ବହୁତଦିନ ପରେ ସେହି ବଂଶର ବିଦ୍ୟୁନଥ ରାଜା ହେଲେ । ପୁତ୍ରପ୍ରାପ୍ତି ନ ହେବାରୁ ଜନୈକ ମୁନିଙ୍କ ପ୍ରସନ୍ନତା ପାଇଁ କଠିନ ସେବା କରିବାରୁ ଏକାବେଳକେ ଦୁଇପୁତ୍ର ହେବାପାଇଁ ସେ ବର ପ୍ରଦାନ କଲେ । ତନ୍ମଧ୍ୟରୁ ଅନୁଜ କପିସାଙ୍ଖ ମୁନି ରସୋଦୟ ବନରେ ବିବାହ କରିବାପାଇଁ ମନସ୍ଥ କରିବା ଏବଂ ସୁଧାନିଧି ନଗର ରାଜା ଅଗ୍ରଜ ହୋଇ ଜନ୍ମହେବା ପାଇଁ ଋଷିଙ୍କର ନିର୍ଦ୍ଦେଶ ଥିଲା । ନିଶାକର ଋଷି ରାଜାଙ୍କୁ କହିଛନ୍ତି— କପିସାଙ୍ଖ ଋଷିଙ୍କ କନ୍ୟା ରସଲେଖା ତୁମ୍ଭ ପୁତ୍ର ପ୍ରତି ଆକୃଷ୍ଟ ହୋଇଛି । ମନ୍ତ୍ରୀଙ୍କୁ ସାଙ୍ଗରେ ନେଇ କପିସାଙ୍ଖ ନିକଟକୁ ଗଲେ ସେ କଦାପି ଏହି କଥାକୁ ଅନ୍ୟଥା କରିବ ନାହିଁ । ନାୟକ (ବିଶ୍ୱଭୂତ) ନାୟିକା ( ରସଲେଖା )ଙ୍କ ମିଳନ ପାଇଁ ଯଥାସାଧ୍ୟ ଉଦ୍ୟମ ସେ ଶେଷ ପର୍ଯ୍ୟନ୍ତ ଅବ୍ୟାହତ ରଖିଛନ୍ତି ।

୪. **ସନ୍ନ୍ୟାସୀ**— ଜଣେ ସନ୍ନ୍ୟାସୀ ଦୁଇ ମାସରେ ବିବାହ ନିଶ୍ଚୟ ସମ୍ପନ୍ନ ହେବ ବୋଲି କହି ସୁଧାନିଧି ନଗରରୁ ନାୟକ ବିଶ୍ୱଭୂତର ଖବର ବୁଝିଆସିବାପାଇଁ ରସୋଦୟ ବନକୁ ଯାଇଛନ୍ତି ।

୫. **ଯୋଗୀ**— କପିସାଙ୍ଖ ଋଷି ଏବଂ ଅନ୍ୟାନ୍ୟ ଯୋଗୀଗଣଙ୍କ ନିକଟରେ ନାରଦ ଏକାକୀ ଭାବେ ପୁରୁଷ (ନାୟକ)କୁ ଆଣି ରଖିଦେଇଥିଲେ ।

ଦୈବୀଶକ୍ତି ସମ୍ପନ୍ନ ନାରୀ ଚରିତ୍ର ମଧ୍ୟରେ ଗୋଟିଏ ମାତ୍ର ଚରିତ୍ର ଯୋଗିନୀ 'ରସଲେଖା' କାବ୍ୟରେ ସ୍ଥାନ ପାଇଛି । ନାରଦଙ୍କ ଦ୍ୱାରା ପ୍ରେରିତ ହୋଇଥିବା ଏହି ଯୋଗିନୀ ଜଣକ କପିସାଙ୍ଖ ମୁନିଙ୍କୁ ବିଶ୍ୱକର୍ମାଙ୍କ ଠାରୁ ନେଇଥିବା ନାୟକ ବିଶ୍ୱଭୂତର ଚିତ୍ରପଟ ପ୍ରଦାନକରି ଏହା ନିକଟରେ ରସଲେଖା ବଶୀଭୂତ ହୋଇଥିବାରୁ ଉଭୟଙ୍କର ବିବାହ ପାଇଁ ପ୍ରସ୍ତାବ ଦେଇଛି । ପୁଣି ସେ ନାୟିକା

ରସଲେଖା ନିକଟରେ ସେହି ଚିତ୍ରପଟ ଉପସ୍ଥାପନ କରି ନାୟକର ଗୁଣ ଏବଂ ଯଶୋଗାନ କରି କହୁଛି – ଏହି ଯୁବକଙ୍କୁ କନ୍ଦର୍ପର ସୌନ୍ଦର୍ଯ୍ୟକୁ ବଳିଯାଇଥିବା କିନ୍ନର ଓ ଦେବତା ମାନେ ସେବା ପ୍ରଦାନ କରିଥାନ୍ତି । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ମଧ୍ୟ ଏହାର ସୌନ୍ଦର୍ଯ୍ୟ ସହି ସମକକ୍ଷ ନୁହଁନ୍ତି । ନାୟକର ରୂପଗୁଣକୁ ଏହିପରି ଚିତ୍ରିତଭାବେ ବର୍ଣ୍ଣନା କରିବା ଫଳରେ ନାୟିକା ମନରେ ଥିବା ଅନୁରାଗ ଭାବ ଅଙ୍କୁର ଦ୍ୱିଗୁଣିତ ହୋଇଅଛି ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଉକ୍ତ କାବ୍ୟଟି ଲୌକିକ ଚରିତ୍ରରେ ଅନ୍ୟଯେଉଁ ବଳିଷ୍ଠ ଚିତ୍ରବଦ୍ଧାରା ରସୋତ୍ତୀର୍ଣ୍ଣ ହୋଇପାରିଛି ତାହା ହେଉଛି ତାଙ୍କର ସାଧାରଣ ଚରିତ୍ରମାନଙ୍କର ଚଟୁଳ ବର୍ଣ୍ଣନା । ଉଭୟ ପୁରୁଷ ଓ ନାରୀ ଚରିତ୍ର ଚିତ୍ରଣ କ୍ଷେତ୍ରରେ ଉଭୟ ମୁଖ୍ୟ ଓ ଗୌଣ ଚରିତ୍ର ସ୍ଥାନ ପାଇଛନ୍ତି ।

କାବ୍ୟର ସଧାରଣ ପୁରୁଷ ମୁଖ୍ୟ ଚରିତ୍ର ହେଉଛି ନାୟକ ବିଶ୍ୱଭୂଷ । ଏହି ଚରିତ୍ର ଚିତ୍ରଣରେ କବି ସଂସ୍କୃତ ଅଳଙ୍କାର ଶାସ୍ତ୍ରର ନିର୍ଦ୍ଦେଶକୁ ଗ୍ରହଣ କରିଛନ୍ତି । ସଂସ୍କୃତ ସାହିତ୍ୟର ପ୍ରସିଦ୍ଧ ଅଳଙ୍କାରିକ ବିଶ୍ୱନାଥ କବିରାଜଙ୍କ 'ସାହିତ୍ୟ ଦର୍ପଣରେ' ନାୟକର ଗୁଣ ଓ ଲକ୍ଷଣ ସମ୍ପର୍କରେ ଉଲ୍ଲିଖିତ ଅଛି—

ସର୍ଗବନ୍ଧୋ ମହାକାବ୍ୟଂ ତତ୍ରୈକୋ ନାୟକଃ ସୁରଃ
ସଦ୍‌ବଂଶଃ କ୍ଷତ୍ରିୟୋ ବାପି ଧୀରୋଦାତ୍ତ ଗୁଣାନ୍ୱିତଃ
ଏକବଂଶଭବା ଭୂପାଃ କୁଳଜା ବହବୋଽପି ବା — ଅର୍ଥାତ୍

ସର୍ଗବଦ୍ଧ ମହାକାବ୍ୟର ନାୟକ ଦେବତା, କୁଳୀନ ବା ସଦ୍‌ବଂଶଜାତ, କ୍ଷତ୍ରିୟ ବା କୌଣସି ଧୀରୋଦାତ୍ତ ବ୍ୟକ୍ତି ହେବେ । ଏହା ଏକ ନାୟକ ବିଶିଷ୍ଟ କିମ୍ବା ବହୁନାୟକ ସମନ୍ୱିତ ହୋଇପାରେ । ଏହି ଲକ୍ଷଣକୁ ସମ୍ପୂର୍ଣ୍ଣରୂପେ ଅନୁସରଣ କରି 'ରସଲେଖା' କାବ୍ୟର ଏକମାତ୍ର ମୁଖ୍ୟ ନାୟକ ବିଶ୍ୱଭୂଷର ଚରିତ୍ର ଚିତ୍ରଣ କରାଯାଇଛି । ସୁଧାନିଧି ନରରାଜା ଭୂପତିଙ୍କ ପୁତ୍ର ବିଶ୍ୱଭୂଷ । ତାଙ୍କର ବିବାହ ସମୟ ଉପସ୍ଥିତ ହେବାରୁ ପିତା କନ୍ୟା ଅନ୍ୱେଷଣ କରୁଥିବା ସମୟରେ ଦେବୀ ଦୁର୍ଗା ଦିନେ ସ୍ୱପ୍ନରେ ରସୋଦୟ ବନକୁ ଯାଇ ରାଜର୍ଷି କନ୍ୟା ରସଲେଖାକୁ ପତ୍ନୀ ରୂପେ ଗ୍ରହଣ କରିବାପାଇଁ ବିଶ୍ୱଭୂଷକୁ ନିର୍ଦ୍ଦେଶ ଦେଇଛନ୍ତି । ଲୌହକୁ ଚୁମ୍ବକ ଆକର୍ଷଣ କଲାପରି ପ୍ରଥମ ଦେଖାରେ ସେ ରସଲେଖା ପ୍ରତି ଆକୃଷ୍ଟ ହୋଇଛନ୍ତି । ରସଲେଖାକୁ ଦେଖିବା ପରେ ତା ମନରେ ଇନ୍ଦିରା (ଲକ୍ଷ୍ମୀ) ବା ରମ୍ଭା ବା ରତି ଦେବୀଙ୍କର ଭ୍ରମ ସୃଷ୍ଟି ହୋଇଛି । ନିଜକୁ ଦାସ ବୋଲି, ଅଭିହିତ କରି ସେ

ରସଲେଖା ସହ ମିଳିତ ହୋଇଛି । ନାୟିକା ସହାୟତାରେ କନ୍ଦର୍ପର ଫୁଲ ଧନୁଶରର ପ୍ରଭାବକୁ ପ୍ରତିହତ କରିପାରିବ ବୋଲି ତା'ର ବିଶ୍ୱାସ ଜନ୍ମିଛି । ପ୍ରିୟା ନିକଟକୁ ଲେଖିଥିବା ବିନୟ ପତ୍ରିକାରେ ସେ ଉଲ୍ଲେଖ କରିଛି—

'ରଖ ନ ରଖ ମାରକ୍ଷ ଜନ ମୁହିଁ, ମୋର ଭଲ ମନ୍ଦ ତୋର ଗୁଣମୟୀ'
(୭/୩୩)

ପ୍ରେମିକାକୁ ନିକଟରେ ନ ପାଇବା ଫଳରେ ଆର୍ତ୍ତିସାଗରରେ ବୁଡ଼ିଗଲା ପରି ତାକୁ ଲାଗିଛି । ତା'ଠାରୁ ଧାଡ଼ିଟିଏର ପତ୍ରଟିଏ ପାଇବାପାଇଁ ବ୍ୟାକୁଳ ହୋଇପଡ଼ିଛି । ପରବର୍ତ୍ତୀ ସମୟରେ ପ୍ରେମିକା ଠାରୁ ପତ୍ର ପାଇ ତାକୁ ଗଳାର ହାରଭଳି ସନ୍ଧାନ କରିଅଛି । ମଧୁଶଯ୍ୟା ଗୃହରେ ପ୍ରାଣପ୍ରିୟାର ଅଧର ସୁଧା ପାନ କରିବାପାଇଁ ପ୍ରତୀକ୍ଷିତ ହୋଇ ରହିଅଛି ଏବଂ ପ୍ରିୟା ସହିତ ମିଳିତ ହୋଇ ନିଜକୁ ଧନ୍ୟ ମନେ କରିଛି । ବିବାହ ଠାରୁ ୯ ବର୍ଷ ପର୍ଯ୍ୟନ୍ତ ନଦୀସାଗରର ଉଦାହରଣ ମନ ଭିତରେ ବହନ କରି ନାୟିକାର ଅଧରାମୃତ ପାନ କରି ତା' ସହ ମିଳିତ ହୋଇ ରହିଅଛି । ନିଶାକର ଋଷିଙ୍କ ପ୍ରଭାବରୁ ରସୋଦୟ ବନରୁ ନିଜ ରାଜ୍ୟକୁ ଯାଇ ସିଦ୍ଧମନ୍ତ୍ରଙ୍କ ଗହ୍ୱରରେ ଶୋଇଥିବାବେଳେ ଚେତନା ଫେରି ପାଇଛି ଓ ପ୍ରାଣପ୍ରିୟାକୁ ପାଖରେ ନ ପାଇ ଅଧୀର ହୋଇପଡ଼ିଛି । ପାଖରେ ନ ପାଇ ପ୍ରିୟାର ରୂପ ଗୁଣକୁ ମନେ ପକାଇ କ୍ରନ୍ଦନ କରିଅଛି ଏବଂ ଚେତନା ଶୂନ୍ୟ ହୋଇଅଛି । ଜଣେ ଦାସର ସେବା ଦ୍ୱାରା ସେ ଚେତନା ଫେରି ପାଇଛି ଏବଂ ଦୁଃଖ ଢଣସ୍ୟରେ ନିର୍ବାକ୍ ହୋଇପଡ଼ିଛି । ବର୍ଷା ଋତୁରେ ତା'ର ପ୍ରିୟା ମିଳନର କଥା ମନେ ପଡ଼ିଯାଇଛି । ଆକାଶରେ ନୂଆ ମେଘକୁ ଦେଖି ପ୍ରିୟା ନିକଟକୁ ସନ୍ଦେଶ ପ୍ରେରଣ କରିଛି । ଅତୀତ ସମୟର ପ୍ରେମକୁ ହୃଦୟ ଭିତରେ ଉଜ୍ଜୀବିତ ରଖି ସେ କହିଛି—

'ପ୍ରୀତିରେ ପକ୍ଷୀମଳ ପ୍ରୀତିରେ ଦ୍ରବେ ଶିଳା
ମୁହିଁ ତୋ ପ୍ରୀତି ପରାଧୀନା
ପ୍ରୀତି ପରମ ଧନ ପାଇଁ ମୁଁ ହେଲି ଭିନ୍ନ
କି ଦୋଷେ ହେଲି ଏ ଯାତନା ହେ ।' (୧୯/୧୦)

ବନ୍ଧୁ ମନ୍ତ୍ରୀପୁତ୍ର ହାତରେ ବିବାହ ପୂର୍ବରୁ ଦେଇଥିବା ପତ୍ରରେ ପୁଣି ସେ ଲେଖିଛି—

ମୁଁ ହୋଇଲି ବୋଲି ଭିନ୍ନ ମନେ ନ ଦେଖିବୁ ଆନ
ସହିଁ ଥିଲେ ମୁଁ ତୋ ପାଶେ ଅଛି

ମୁଁ ତୋର ଯେମନ୍ତ ଭୃତ୍ୟ ତାହା ଜାଣ ପ୍ରାଣ ମିତ
ଅସ୍ତେ କି ଅନ୍ତର ହୋଇଛୁ ହେ । (୨୨/୩)

ପ୍ରେମିକାର ଅଧରାମୃତ ପାନ କରିଥିବାରୁ ବିଚ୍ଛେଦ ଯନ୍ତ୍ରଣାର ଉତ୍କଟ ଗରଳ ତାର ମୃତ୍ୟୁ ଘଟାଇ ପାରିନାହିଁ ।

ଏକମାତ୍ର ମୁଖ୍ୟ ପୁରୁଷ ଚରିତ୍ରକୁ ବାଦଦେଲେ 'ରସଲେଖା' କାବ୍ୟରେ କବି ଅନ୍ୟ ଛଅ ଜଣ ଗୌଣ ପୁରୁଷ ଚରିତ୍ରକୁ ସ୍ଥାନ ଦେଇଛନ୍ତି । ଯେମାନେ ହେଲେ ଭାସ୍ୱତୀ, ମନ୍ତ୍ରୀ, ମନ୍ତ୍ରୀପୁତ୍ର, ଶୈଳଦେଶ ରାଜା (ଭାସ୍ୱତୀ )ଙ୍କ ରାଜଦୂତ ଏବଂ ଦଣ୍ଡଧାରୀ । କଥା ବସ୍ତୁର ଅଗ୍ରଗତିରେ ମୁଖ୍ୟ ଚରିତ୍ରର ସହାୟତା କରିଥିବା ଏହି ଗୌଣ ଚରିତ୍ରମାନଙ୍କର ଭୂମିକା କମ୍ ନୁହେଁ ।

୧. ଭାସ୍ୱତୀ—ମଳୟଗିରିର ଉତ୍ତରରେ ଥିବା ସୁଧାନିଧି ନଗରର ରାଜା ଭାସ୍ୱତୀ । ତାଙ୍କ ପୁତ୍ର ବିଶ୍ୱଭୂତ । ପୁତ୍ର ପାଇଁ ବିଧୁର ସମସ୍ତ ଜଗତରେ ସେ ଅନୁସନ୍ଧାନ କରିବା ସମୟରେ ପୁତ୍ରର ଅନ୍ତର୍ଦ୍ଧାନ ହୋଇଯିବାରୁ ବିଭିନ୍ନ ଦେଶକୁ ଦୂତ ପଠାଇ ତାକୁ ଖୋଜିଛନ୍ତି ପୁଣି ସ୍ୱୟଂ କପି ଋଷିଙ୍କୁ ଏହି ବିଷୟରେ ସେ ପଚାରିଛନ୍ତି ।

୨. ମନ୍ତ୍ରୀ / ଦଣ୍ଡଧାରୀ—ରାଜା ଭାସ୍ୱତୀ ନିଜ ପୁତ୍ରର ଅନ୍ତର୍ଦ୍ଧାନ ବିଷୟ ମନ୍ତ୍ରୀଙ୍କୁ ଅବଗତ କରାଇବା ପରେ ମନ୍ତ୍ରୀ ତ୍ରିକାଳଦର୍ଶୀ ସ୍ୱୟଂ କପି ଋଷିଙ୍କ ନିକଟରେ ପହଞ୍ଚି ତାଙ୍କର ସହାୟତା ଲୋଡ଼ିବାରୁ ଋଷି କପିଯାଞ୍ଚ ମୁନି ଏବଂ ରାଜା ଭାସ୍ୱତୀଙ୍କ ପୂର୍ବଜନ୍ମ ବୃତ୍ତାନ୍ତ କହିଛନ୍ତି । ଏହା ଶୁଣି ମନ୍ତ୍ରୀ ଓ ଦଣ୍ଡଧାରୀ ସୈନ୍ୟବାହିନୀ ପ୍ରସ୍ତୁତ କରି କପିଯାଞ୍ଚଙ୍କ ନିକଟକୁ ଗମନ କରିଛନ୍ତି ରାଜର୍ଷିଙ୍କ ନିକଟକୁ ଯାଇ ଲଗ୍ନ ଶୁଝାଇଛନ୍ତି ।

୩. ମନ୍ତ୍ରୀପୁତ୍ର— ରାଜା ଭାସ୍ୱତୀଙ୍କ ନିର୍ଦ୍ଦେଶରେ ମନ୍ତ୍ରୀପୁତ୍ର ନିଜ ମିତ୍ର ବିଶ୍ୱଭୂତଙ୍କୁ ତାଙ୍କର ଅନ୍ତର୍ଦ୍ଧାନ ପ୍ରସଙ୍ଗ ପଚାରିବାରୁ ଦେବୀଙ୍କ ଦ୍ୱାରା ଅପହରଣ ଠାରୁ ରସଲେଖା ସହ ବିବାହ ଏବଂ ଅନ୍ତର୍ଦ୍ଧାନ ବିଷୟ ମିତ୍ର ଆଗରେ ବିଶ୍ୱଭୂତ ପ୍ରକାଶ କରିଅଛି । ପ୍ରିୟା ବିରହ ଜନିତ ଅକାଳ ବଜ୍ରର ପ୍ରକୋପରୁ ରକ୍ଷା କରିବା ପାଇଁ ସେ ବନ୍ଧୁକୁ ଅନୁରୋଧ କରିଛି । ବନ୍ଧୁଠାରୁ ଶୁଣିଥିବା ସମସ୍ତ ବିଷୟ ମନ୍ତ୍ରୀପୁତ୍ର ରାଜାଙ୍କୁ ଜଣାଇଛି । ବିବାହ ପାଇଁ ପିତାଙ୍କର ସମ୍ମତ ଖବର ଶୁଣି ବିଶ୍ୱଭୂତ ମନ୍ତ୍ରୀପୁତ୍ର ହାତରେ ଗୋଟିଏ ପତ୍ରଦେଇ ପଠାଇଛନ୍ତି । ମନ୍ତ୍ରୀପୁତ୍ର ରସଲେଖାର ସଖୀ ହାତରେ ବନ୍ଧୁପ୍ରିୟା ପାଖକୁ ଶୁଭ ଅଭିବାଦନ ଜଣାଇ ପତ୍ର

ପ୍ରେରଣ କରନ୍ତି । ପୁଣି ରସଲେଖା ପଠ ଚ୍ଛନ୍ଦରେ ପହଞ୍ଚିବା ସମୟରେ ମନ୍ତ୍ରୀପୁତ୍ର ରହଲେଖା ଠାରୁ ନେଇଥିବା ପତ୍ର ବଶୂଭୂଷଙ୍କୁ ପ୍ରଦାନ କରନ୍ତି ।

**୪. ଗୈୃଳଦେଶ ରାଜା—** କାବ୍ୟର ନାୟିକା 'ରସଲେଖା'ର ମାତା ଗୈୃଳଦେଶ ରାଜାଙ୍କ କନ୍ୟା । ଶିଷ୍ୟ ମାନଙ୍କୁ ଖୋଜି ଖୋଜି ଆସି ରସୋଦୟ ବନରେ ପହଞ୍ଚିଥିବା କପିଷାଞ୍ଜ ମହର୍ଷି କନ୍ଦର୍ପ ଶରରେ ପୀଡ଼ିତ ହେବାରୁ ଗୈୃଳଦେଶ ରାଜାଙ୍କ ନିକଟକୁ ଯାଇ ତାଙ୍କ କନ୍ୟାର ପାଣିଗ୍ରହଣ ବିଷୟ କହିବାରୁ ରାଜା ଉପଯୁକ୍ତ ଲଗ୍ନ ଦେଖି ଉଭୟଙ୍କର ବିବାହ କରଦେଇଛନ୍ତି ଓ ସେମାନଙ୍କ ଔରସରୁ ଅନନ୍ୟାସୁନ୍ଦରୀ ରସଲେଖା ଜନ୍ମଗ୍ରହଣ କରିଅଛି ।

**୫. (ବସୁମତୀ)ଙ୍କ ରାଜଦୂତ—** ଏକ ବର୍ଷ ପର୍ଯ୍ୟନ୍ତ ରାଜଉଆସକୁ ଅଗ୍ନିନଳ ଅନ୍ତର୍ଦ୍ଧାନ ହୋଇ ନ ଫେରିବାରୁ ରାଜା ନିଜ ପୁତ୍ର ବିଶ୍ୱଭୂଷଣର ଉଦ୍ଧାର ପାଇଁ ଦୂତମାନଙ୍କୁ ପ୍ରେରଣ କରିଛନ୍ତି ସମଗ୍ର ବିଶ୍ୱ ପରିକ୍ରମା କରି ସେମାନେ ନିଜ ନିଜର ଅସାମର୍ଥ୍ୟ ପ୍ରକାଶ କରିଛନ୍ତି ।

ପୁରୁଷ ଚରିତ୍ର ଅପେକ୍ଷା ନାରୀ ଚରିତ୍ର ଚିତ୍ରଣରେ କବି ନିଜର ସିଦ୍ଧହସ୍ତତା ପ୍ରତିପାଦନ କରିଛନ୍ତି । ସାଧାରଣ ନାରୀ ଚରିତ୍ର ବର୍ଣ୍ଣନା ଅବସରରେ କବି ଉଭୟ ମୁଖ୍ୟ ଓ ଗୌଣ ନାରୀ ଚରିତ୍ରକୁ ଉକ୍ତ କାବ୍ୟରେ ସ୍ଥାନ ଦେଇଛନ୍ତି । ସାଧାରଣ ମୁଖ୍ୟ ନାରୀ ଚରିତ୍ର 'ରସଲେଖା' ହୋଇଥିବା ବେଳେ ଗୌଣ ନାରୀ ଚରିତ୍ର ମଧ୍ୟରେ ଅଷ୍ଟସଖୀ, ରସଲେଖା ମାତା, ଧାତ୍ରୀ, ଗଣିକା, ଦାସୀ, ମୃଦୁସୁଲ ଇତ୍ୟାଦି ଅନ୍ତର୍ଭୁକ୍ତ ।

**ରସଲେଖା—** ରସଲେଖା କାବ୍ୟର ଏକମାତ୍ର ମୁଖ୍ୟ ନାରୀ ଚରିତ୍ର ବା ନାୟିକା । ପୁରୁଷ ଚରିତ୍ର ଅପେକ୍ଷା ନାରୀ ଚରିତ୍ର ବିଶେଷ କରି ନାୟିକାର ରୂପ ଗୁଣ ବର୍ଣ୍ଣନାରେ ରୀତିଯୁଗର ସମସ୍ତ କବିଙ୍କ ଲେଖନୀ ସତେ ଯେପରି ଚଳଚଞ୍ଚଳ ହୋଇଉଠିଛି । ନାୟିକାର ନଖ ଠାରୁ ଶିଖ ବର୍ଣ୍ଣନା ତତ୍କାଳୀନ କବିର ଥିଲା ସାଧାରଣ ଧର୍ମ । କାବ୍ୟର ସମଗ୍ର ୨ ଛାନ୍ଦରେ, ୩ୟ ଛାନ୍ଦର ୨୫ ଠାରୁ ୩୨ ପଦ, ୪ର୍ଥ ଛାନ୍ଦର ୩୩ ପଦ ଠାରୁ ୪୨ ପଦ, ସମଗ୍ର ୫ମ ଛାନ୍ଦ, ୬ଷ୍ଠ ଛାନ୍ଦର ୧୧ ଠାରୁ ୨୫ ପଦ, ୭ମ ଛାନ୍ଦର ୧୨ ଠାରୁ ୩୯ ପଦ, ୧୦ମ ଛାନ୍ଦର ୪୧ ଠାରୁ ୫୭ ପଦ, ସମଗ୍ର ୧୧, ୧୩ ଓ ୧୫ ଛାନ୍ଦରେ ରସଲେଖାର ରୂପ ଓ ଗୁଣ ବର୍ଣ୍ଣିତ ହୋଇଛି ।

କମ୍ପିଶାକ୍ଷ ମୁନି ଏବଂ ସ୍ୱେତକେଶ ରାଜକୁମାରୀଙ୍କ ଔରସରୁ 'ରସଲେଖା'ର ଜନ୍ମ । ତାର ସେବା ପାଇଁ ମୁନି ଅଷ୍ଟସଖୀଙ୍କୁ ନିଯୁକ୍ତ ଦେଇଛନ୍ତି । ତା'ର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି କବି ଲେଖିଛନ୍ତି—'ବଚନେ କହିବାକୁ ଉପମା ନାହିଁ, ତାହାଙ୍କୁ ସମ ହୋଇ ଜଗତେ ସେହି ସେ' (୨/୧୮) । କାଳି ଚତୁର୍ଦ୍ଦଶୀ ଦିନ ଶିବ ଉପାସନାକୁ ଫୁଲ ସଂଗ୍ରହ କରିବା ନିମନ୍ତେ ବାହାରିବା ସମୟରେ ନାୟକ ସହ ଦେଖା ହେବାରୁ ସେ ଭାବିଛି—'ଏତ ଲାବଣ୍ୟ ସର୍ବରୂପ ସୀମା । ନାହିଁ ସମ ଏହା ଏହି ଉପମା ।' କନ୍ୟାକୁ ପାଇବାର କାମନା କରି ସେ ଭାବିଛି—ଯେ ବହୁଥର ଗଙ୍ଗାରେ ସ୍ନାନ ଦେଇଥିବ ସେ କେବଳ ପତ୍ନୀ ରୂପେ ଏହାକୁ ପାଇପାରିବ । କୋଟିଏ ରତିଙ୍କ ନିବାସସ୍ଥଳୀ ଏହାର ସୌନ୍ଦର୍ଯ୍ୟ ଶୁଣିଲି ନଥିଲି ଦେଖିଥିବି କେ କାହିଁ ନାୟକ ଠାରୁ ପ୍ରେମ ଚିଠାଉ ପାଇ ଅନୁରୂପ ଭାବେ ତାର ମିଳନ ଇଚ୍ଛା ଜାଗରିତ ହୋଇଛି—ପଢ଼ି ସମସ୍ତ ପତ୍ରକୁ କାତର, ଧୈର୍ଯ୍ୟ ନ ଧରି ବେପଥୁ ବଢ଼େ ତା ଥରଥର (୭/୪୭) । ଚୂତବନର କୋକିଳ ରବ ତାକୁ ବଜ୍ରପାତ ଭଳି ମନେ ହୋଇଛି । ମଧୁଶଯ୍ୟା ଠାରୁ ୧ ବର୍ଷ ପର୍ଯ୍ୟନ୍ତ ପୁରୁଷ ସହ ମିଳିତ ହୋଇ ନିଜ ଜୀବନକୁ ଧନ୍ୟ ମନେ କରିଛି । ବିଚ୍ଛେଦ ଯନ୍ତ୍ରଣାରେ ଜର୍ଜରିତ ନାୟିକା ବିଶ୍ୱଭୂତ ନିଜ ବନ୍ଧୁ ମନ୍ତ୍ରୀପୁତ୍ରକୁ ମନର ଦୁଃଖ ଜଣାଇବା ସମୟରେ ସେ ମଧ୍ୟ ନାୟିକାକୁ ନିକଟରେ ନ ପାଇ ଅଧୈର୍ଯ୍ୟ ହୋଇପଡ଼ିଛି । ଶୟନ ଭୋଜନ ତାକୁ ବିଷତୁଲ୍ୟ ବୋଧ ହୋଇଛି । ଅତିଶୟ ଦୁଃଖରେ ସେ ସଂଜ୍ଞା ଶୂନ୍ୟ ହୋଇ ପଡ଼ିଥିବା ବେଳେ ନାୟକ ନିକଟକୁ ଲେଖିଥିବା ପତ୍ରଟିକୁ ପଠାଇ ଦେବା ପାଇଁ ସଖୀମାନଙ୍କୁ ଅନୁରୋଧ କରିଅଛି । ପିତାଙ୍କ ସମ୍ମତିରୁ ୫ ଦିନ ପରେ ହେଉଥିବା ହେମନ୍ତଙ୍କର ବିବାହ ଖବର ଶୁଣି ସେ ଅତ୍ୟନ୍ତ ଉତ୍କଣ୍ଠିତା ହୋଇଛି । ମନ୍ତ୍ରୀପୁତ୍ର ଠାରୁ ପ୍ରାପ୍ତ ଚିଠାଉ ପଢ଼ିବା ଫଳରେ ତାର ବହୁଦିନର ଦୁଃଖ ଦୂର ହୋଇଛି । ପତି ଘରକୁ ଯାଇ ଶାଶୁ ଶ୍ୱଶୁରଙ୍କ ପାଦରେ ବିନମ୍ର ପ୍ରଣତି ଜଣାଇଛି । ମଧୁଶଯ୍ୟା ଗୃହରେ ନାୟକ ନାୟିକା ପରସ୍ପରକୁ ଦେଖି ଅତ୍ୟଧିକ ସ୍ନେହ ବଶରୁ ଲୌହରେ ଚୁମ୍ବକ ଜଡ଼ିଲା ପରି ଆଲିଙ୍ଗନ ବଦ୍ଧ ହୋଇଛନ୍ତି । କ୍ଷୁଧାତୁର ବ୍ୟକ୍ତିର ହଠାତ୍ ଅମୃତ ଭୋଜନ ପ୍ରାପ୍ତିରେ ଶୃଙ୍ଖଳିତ ବଶରୁ ନ ରହିଲା ପରି ଦୁହେଁ ଦୁହିଁଙ୍କ ସୌନ୍ଦର୍ଯ୍ୟ ମଧୁକୁ ଆକଣ୍ଠ ପାନ କରିଛନ୍ତି ।

**'ରସଲେଖା'ର ମାତା**— ଶ୍ୱେତ କେଶ ରାଜ୍ୟର ରାଣୀ ନିଜର ଏକମାତ୍ର କନ୍ୟା ରସଲେଖା ପୁଷ୍ପବତୀ ହେବା ସମୟରେ ସମସ୍ତ ନାରୀୟ ମଙ୍ଗଳ ବିଧିବିଧାନ ପୂର୍ବକ ନିର୍ବାହ କରିଛନ୍ତି । ଶବାକ୍ଷରେ ଜାମାତା ବିଶ୍ୱଭୂତିର ଅନୁପମ ସୌନ୍ଦର୍ଯ୍ୟ

ଦେଖି ନିଜକୁ ଧନ୍ୟ ମନେ କରିଛନ୍ତି । ମଧୁଶଯ୍ୟା ପରେ ବର କନ୍ୟାଙ୍କୁ ନେଇ ନିର୍ମଳ କାରୁକାର୍ଯ୍ୟଯୁକ୍ତ କାଚନିର୍ମିତ ଗୃହରେ ରଖିବା ପାଇଁ କନୈକା ଦାସୀଙ୍କୁ ରସଲେଖାର ପିତା ମାତା ନିର୍ଦ୍ଦେଶ ଦେଇଛନ୍ତି ।

**ଅଷ୍ଟସଖୀ—** ରସଲେଖାର ସେବା ଶୁଶ୍ରୂଷା ପାଇଁ କବିସାଙ୍କ ମୁନି ୮ ଜଣ ସଖୀଙ୍କୁ ନିଯୁକ୍ତି ଦେଇଛନ୍ତି । ସେମାନେ ହେଲେ ବିମଳା, ପରିମଳା, କମଳା, ବିଧିମାଳା, ସୁରୁଶୀଳା, ମଂଜୁଳା, ସୁଶୀଳା, ପ୍ରେମଶୀଳା । ନାୟକର ଆକର୍ଷଣ ଭାବ ତୀବ୍ରରୁ ତୀବ୍ରତର କରିବା ପାଇଁ ମିଳନ ସମୟରେ ମାତା ଡ଼ାକୁଛନ୍ତି ବୋଲି କହୁଛନ୍ତି ଓ ତାପରେ ନାୟକ ମନରେ ସୃଷ୍ଟ ସାତ୍ତ୍ୱିକ ବିକାର ଭାବକୁ ଏମାନେ ଲକ୍ଷ୍ୟ କରିଛନ୍ତି । ନାୟକ ଠାରୁ ପ୍ରେମ ଚିଠି ଆଣି ଆତୁର ନଯାଏ କାର୍ଯ୍ୟ କେଉଁ କାଳରେ ବୋଲି ନାହିଁ ଧୈର୍ଯ୍ୟଧାରଣ କରିବା ପାଇଁ ଏମାନେ ପରାମର୍ଶ ଦେଇଛନ୍ତି । ମନର ମଣିଷ ସହ ମିଳନ କରାଇବା ପାଇଁ କାବ୍ୟ ମଧ୍ୟରେ ରସଲେଖା ଏମାନଙ୍କୁ କହୁବାର ଅନୁରୋଧ କରିଅଛି । ନାୟିକାକୁ ମଧ୍ୟ ଧୈର୍ଯ୍ୟ ଧାରଣ କରିବା ପାଇଁ ଏମାନେ ପରାମର୍ଶ ଦେଇ କହୁଛନ୍ତି—'ଚିତ୍ତ ସ୍ଥିର କରରେ ଅଶେଷ ରସବତୀ ।' ନିର୍ବୋଧ ବ୍ୟକ୍ତିକୁ ଶାସ୍ତ୍ର ବୁଝାଇଲା ପରି ସଖୀମାନେ ରସଲେଖାର ସମସ୍ତ ପ୍ରେମ ବିକାରକୁ ଧୈର୍ଯ୍ୟର ସହ ଏଣି ଅମୂଲ୍ୟ ଉପଦେଶ ପ୍ରଦାନ କରିଛନ୍ତି । ନାୟକ ସହ ନାୟିକାର ମିଳନ ଘଟାଇବାରେ ଏମାନଙ୍କର ଭୂମିକା କୌଣସି ଗୁଣରେ କମ୍ ନୁହେଁ । ବିଭିନ୍ନ ହାସ୍ୟ-ପରିହାସ ଏବଂ ଗୂଢ଼ୋକ୍ତି ମଧ୍ୟରେ ନାୟିକା ମନରେ ଉଦ୍ଭାବିତ ହୋଇଥିବା ପ୍ରେମଭାବକୁ ବିକାଶ କରାଇବାରେ ଏମାନେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । ପ୍ରିୟ ସଖୀର ବିରହ ବେଦନାର ଉପଶମ ପାଇଁ ହରିଦାରଙ୍କୁ ସେମାନେ ସ୍ତୁତି କରିଛନ୍ତି । ସଖୀ ଠାରୁ ଚିଠାଉ ନେଇ ବିଶ୍ୱଭୂତକୁ ଅତି କୌଶଳ ସହକାରେ ପ୍ରଦାନ କରିଛନ୍ତି । ନାରଦଙ୍କ ପୌରହିତ୍ୟରେ ବିଶ୍ୱଭୂତ ଓ ରସଲେଖାର ବିବାହ ଅନୁଷ୍ଠିତ ହେବା ସମୟରେ ରସଲେଖାଙ୍କୁ ଏମାନେ ବିଭିନ୍ନ ଅଳଂକାର ଦ୍ୱାରା ବିଭୂଷିତ କରିଛନ୍ତି ଏବଂ ମଧୁଶଯ୍ୟା ପୁରରେ ନେଇ ସଖୀଙ୍କୁ ଛାଡ଼ି ଦେଇଛନ୍ତି । ବିଭିନ୍ନ ହାସ୍ୟ ପରିହାସ ମଧ୍ୟରେ ଜୀବନର ଅଳୁଟ ମୂଲ୍ୟବୋଧ ପ୍ରତି ସେମାନେ ସଚେତନ କରାଇ ଦେଇଛନ୍ତି । ନାୟକ ଠାରୁ ମନ୍ତ୍ରୀପୁତ୍ର ଆଣିଥିବା ପତ୍ରକୁ ନାୟିକାର ପତ୍ର ବିନିମୟରେ କନୈକ ସଖୀ ପ୍ରଦାନ କରିଅଛି ।

**ଧାତ୍ରୀ—** ଶୈଶବ ଅବସ୍ଥାରୁ ରସଲେଖାର ଲାଳନ ପାଳନ ପାଇଁ ମୁନି ଧାତ୍ରୀ ନିଯୁକ୍ତ କରିଛନ୍ତି ।

**ଦାସୀ/ମୁଦ୍ରସୁଲୀ—** ଦାସୀମାନେ ବିବାହ ସମୟରେ ରସଲେଖାକୁ ସୁସଜ୍ଜିତ କରିଛନ୍ତି ଓ ନାୟକକୁ ମୁଦୁସୁଲୀ ଡ଼ାକି ଶୁଭ ମୁହୂର୍ତ୍ତରେ ମଧୁଶଯ୍ୟା ଘରେ ଛାଡ଼ି ଦେଇଛନ୍ତି ।

**ଗଣିକା—** ରସଲେଖାର ବିବାହ ସମୟରେ ଫୁଲଦ୍ୱାର ସୁସଜ୍ଜିତ ଗଣିକାମାନେ ସ୍ୱର୍ଗୀୟ ସ୍ୱରରେ ଗୀତ ଗାଇଛନ୍ତି ।

ଲୌକିକ ଚରିତ୍ର ବ୍ୟତୀତ 'ରସଲେଖା' କାବ୍ୟରେ କବି କେତେକ ଅଲୌକିକ ବା ମାନବେତର ଚରିତ୍ରକୁ ଅନ୍ତର୍ଗତ୍ତିତ କରିଛନ୍ତି । କାଳ୍ପନିକ ହେଲେ ମଧ୍ୟ ପାଠକ ମନରେ ପୁରାଣର ପ୍ରଭାବ ଜନ୍ମାଇବା ପାଇଁ କାବ୍ୟ କାବ୍ୟ ବିଷୟ ପ୍ରତି ଅକୁଣ୍ଠ ଜନ ସମର୍ଥନ ପ୍ରାପ୍ତି ହେବାକୁ କବି ଏହି ଧରଣର ଚରିତ୍ର ଅବତାରଣା କରିଛନ୍ତି । କାରଣ ଯୁଗେ ଯୁଗେ ପୁରାଣ ତଥା ଦେବଦେବୀଙ୍କ ପ୍ରତି ମଣିଷର ଏକ ପ୍ରକାର ଦୁର୍ବଳତା ରହି ଆସିଅଛି । ମାନସ ସମ୍ଭୂତ କାଳ୍ପନିକ ଚରିତ୍ର ଗୁଡ଼ିକର କାର୍ଯ୍ୟାବଳୀ ଯେ ଦୈବୀ ଚରିତ୍ର ଗୁଡ଼ିକ ଦ୍ୱାରା ଅନୁମୋଦିତ ଏବଂ ସମର୍ଥିତ— ଉକ୍ତ ଭାବ ଜାଗରିତ କରିବା ଏହି ଧରଣର ଚରିତ୍ର ସୃଷ୍ଟିର ମୁଖ୍ୟ ଉଦ୍ଦେଶ୍ୟ । 'ରସଲେଖା' କାବ୍ୟରେ ଏହି ଧରଣର ସମୁଦାୟ ୪ଟି ଚରିତ୍ରର ଅବତାରଣା କରାଯାଇଛି ।

**୧. ନାରଦ –** ନାୟକ ବିଶ୍ୱଭୂତି ଓ ନାୟିକା ରସଲେଖାର ପ୍ରେମଭାବକୁ ହୃଦୟଙ୍ଗମକରି ବିଶ୍ୱକର୍ମାଙ୍କ ଠାରୁ ନାୟକର ଚିତ୍ରପଟଟିଏ ନେଇ ଜଣେ ଯୋଗିନୀଙ୍କୁ କପିସାଞ୍ଜି ଋଷିଙ୍କ ନିକଟକୁ ପ୍ରେରଣ କରିଛନ୍ତି । କପିସାଞ୍ଜି ଋଷିଙ୍କ ସମ୍ମୁଖରେ ଯୋଗିନୀ ରସଲେଖାର ସମ୍ପତ୍ତି ପ୍ରକାଶ କରିବା ସମୟରେ ନାରଦ ସେଠାରେ ଉପସ୍ଥିତ ହୋଇଛନ୍ତି ଏବଂ ଯୋଗୀଗଣଙ୍କୁ ପଠାଇ ନାୟକକୁ ସେଠାକୁ ଅଣାଇଛନ୍ତି । ପରେ ନାରଦ ପୁରୋହିତ ହୋଇ ବର କନ୍ୟାଙ୍କ ଶୁଭ ପରିଣୟ ସମ୍ପାଦନ କରାଇଛନ୍ତି । ନାୟକ ନାୟିକାଙ୍କ ବିଚ୍ଛେଦ ବିଷୟ ସେ ବହୁ ପୂର୍ବରୁ କପିସାଞ୍ଜି ଋଷିଙ୍କୁ ଜଣାଇ ଦେଇଛନ୍ତି । ସେ ଥିଲେ ତ୍ରିକାଳଦର୍ଶୀ ।

**୨. ବିଶ୍ୱକର୍ମା—** ଏହି ଚରିତ୍ରଟି ମଧ୍ୟ ଏକ ନିଷ୍କ୍ରିୟ ଚରିତ୍ର । ନାୟିକା ମନରେ ନାୟକ ପ୍ରତି ଅନୁରାଗ ସୃଷ୍ଟି କରିବା ପାଇଁ ନାରଦ ବିଶ୍ୱକର୍ମାଙ୍କ ଠାରୁ ନାୟକର ଏକ ତୈଳଚିତ୍ର ନେଇ ଦେଖାଇଛନ୍ତି । ପୁଣି ବିବାହ ସମୟରେ କପିସାଞ୍ଜି

ମହର୍ଷି ନିଜ କନ୍ୟାକୁ ଉପହାର ସ୍ୱରୂପ ବିଶ୍ୱକର୍ମାଙ୍କ ନିର୍ମିତ ଶୁକ୍ରାସନ ଏବଂ ଅମୂଲ୍ୟ ବସ୍ତୁ ପ୍ରଚୁର ପରିମାଣରେ ପ୍ରଦାନ କରିଛନ୍ତି ।

୩. ଅମ୍ବିକା (ଦୁର୍ଗା)— ରସୋଦସ୍ଥ ବନକୁ ଯାଇ ରସଲେଖାକୁ ପ୍ରାପ୍ତି ହେବାପାଇଁ ଅମ୍ବିକା ସ୍ୱପ୍ନରେ ବିଶ୍ୱଭୂଷଣକୁ କହିଛନ୍ତି ଓ ନିଜେ ଗର୍ଜିରେ ତାର ହାତଧରି ରସୋଦସ୍ଥ ବନରେ ଛାଡ଼ି ଦେଇଛନ୍ତି ।

୪. କିନ୍ନର— ଏହି ଚରିତ୍ରଟି କାବ୍ୟର ଏକ ନିଷ୍କ୍ରିୟ ଅଲୌକିକ ଚରିତ୍ର । ନାୟକ ନାୟିକା ପୁନ ମିଳିତ ହେବା ଆଶା ମନଭିତରେ ପୋଷଣ କରି ରସୋଦସ୍ଥ ବନରେ ଜଣେ କିନ୍ନର ସଙ୍ଗରେ ବନ୍ଧୁତା ସ୍ଥାପନ କରିଅଛି । ରାଜକୁମାରଙ୍କୁ ସମସ୍ତ ପ୍ରକାର ସେବା ଏମାନେ ପ୍ରଦାନ କରିଛନ୍ତି ।

ଲୌକିକ ଏବଂ ଅଲୌକିକ, ପୁରୁଷ ଏବଂ ନାରୀ, ମୁଖ୍ୟ ଏବଂ ଗୌଣ ଚରିତ୍ର ପ୍ରତ୍ୟେକର ମଂଜୁଳ ବର୍ଣ୍ଣନାରେ ଏହିପରି ଉପେନ୍ଦ୍ରଭଂଜଙ୍କ ଲେଖନୀ ସାର୍ଥକତାକୁ ବହନ କରିପାରିଛି ।



ଅଧ୍ୟାପକ
ଓଡ଼ିଆ ବିଭାଗ
ଆଦିବାସୀ ମହାବିଦ୍ୟାଳୟ
ବାଲିଗୁଡ଼ା
ଫୁଲବାଣୀ

# ରସଲେଖା କାବ୍ୟର ସାମାଜିକ-ଚେତନା —ଏକ ଆଲୋଚନା

॥ ଶ୍ରୀ ଲକ୍ଷ୍ମଣ କୁମାର ପରିଡ଼ା ॥
ଏମ୍.ଏ.ବି.ଇଡ୍.

ରସଲେଖା କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କର ଦ୍ୱାବିଂଶ ଛାନ୍ଦ ବିଶିଷ୍ଟ ଏକ ଲଘୁ କାବ୍ୟ । ୧ମ ଛାନ୍ଦରେ ନଳିନୀ ଗୌଡ଼ା, ୨ୟରେ କଳହଂସ କେଦାର, ୩ୟରେ ମୁନିବର ବାଣୀ, ୪ର୍ଥରେ ରାମକେରି, ୫ମରେ ଚକ୍ରକେଳି, ୬ଷ୍ଠରେ ମଙ୍ଗଳ ଗୁର୍ଜରୀ, ୭ମରେ ନଟବାଣୀ, ୮ମରେ କଳସବାଣୀ, ୯ମରେ ଘଣ୍ଟାରବ, ଦଶମରେ ବସନ୍ତ, ଏକାଦଶରେ ବଙ୍ଗଳାଶ୍ରୀ, ଦ୍ୱାଦଶରେ ବସନ୍ତ ବରାଡ଼ୀ, ତ୍ରୟୋଦଶରେ ରସକୋଇଲ ଓ ଚତୁର୍ଦ୍ଦଶରେ ମଙ୍ଗଳ ଗୁର୍ଜ୍ଜରୀ ବାଣୀ ସ୍ଥାନ ଲଭ କରିଛି ; ଶୈଳ ମନ୍ତ୍ରୀପତ୍ନି ରାଜକନ୍ୟା ଗର୍ଭସମ୍ଭୂତା ଓ ଋଷି ଔରସରୁ ଜାତ ରସଲେଖା ହିଁ ବାସ୍ତବରେ ରସର ଆକର । ସେ ରୂପ ଲାବଣ୍ୟର ବର୍ଣ୍ଣାଢ଼୍ୟ ପରିପ୍ରକାଶ । ତେଣୁ ଅନନ୍ୟା, ଅନୁପମା ଓ ଅତୁଳନୀୟା । ଉପେନ୍ଦ୍ରଙ୍କ ଭାଷାରେ କହିଲେ ତାପରି ସୁନ୍ଦରୀ ନାହିଁ, ନଥିଲା, ନୋହିବ ।

"ସେ ରମଣୀ ରତନ ଅତିଯତନ ।
ରତନମାନଙ୍କର ହେଲା ରତନ ଯେ ।
ବଚନ କହିବାକୁ ଉପମା ନାହିଁ ।
ତାହାକୁ ସମ ହୋଇ ଉପମା ସେହି ଯେ ।
ଭୂଷଣ ଭୂଷଣକୁ ନବନାଗରୀ ।
ଯୌବନ ତାକୁ ହେଲା ଭୂଷଣ ପରି ଯେ ।"
(ରସଲେଖା ୧୮ / ୧୯)

ଅତୁଳନୀୟ ଶୋଭା ସମ୍ପନ୍ନା ରସଲେଖା ସବୁ ଶୋଭାର ମଣି ଓ ଖଣି ।
"ଏତ ଲାବଣ୍ୟ ସବୁ ରୂପ ସୀମା
ନାହିଁ ସମ ଏହା, ଏହି ଉପମା ।"
(ରସଲେଖା–୫ / ୨)

ପୁଣି–"କୋଟିଏ ରଥ ବହୁଛି ଗୋଟିଏ ଦେହୁ
ଶୁଣି ନ ଥିଲୁ ଦେଖି ନ ଥିବ କେହୁ ।"

(ରସଲେଖା-୬ / ୧୧)

ରସଲେଖାର ଅରୁଣ ଅମ୍ବୁଜା ପାଦସ୍ପର୍ଶରେ ବସୁଧାରେ ଫୁଟି ଉଠୁଛି ଅସଂଖ୍ୟ ସଜା ସରୋଜ । କବି ସରଳ ପଦବିନ୍ୟାସରେ ସେହି ଅପୂର୍ବ ଶୋଭା ମାଧୁରୀକୁ ରୂପ ଦେବାକୁ ଯାଇ ବର୍ଣ୍ଣ କରିଛନ୍ତି-

"ଆହା ଚାଲି ଆସୁଛି ଗେଲେ ଗେଲେ
ମହୀ ମଣ୍ଡୀ ଦେଉଛି ପଦ୍ମ ଫୁଲେ ।"

ରସଲେଖାର ଚାହାଣିରେ ବର୍ଷି ହୋଇ ଯାଉଛି ଅସଂଖ୍ୟ ଇନ୍ଦୀବର । ଏହିପରି ଲାବଣ୍ୟମୟୀ ନାରୀ ସାଧାରଣ ନାରୀ ନୁହେଁ । ରାଜଦରବାର ଆଭିଜାତ୍ୟ ପରମ୍ପରାରେ ସୃଷ୍ଟ ରସଲେଖା କେବଳ ରସର ଆଲେଖ୍ୟ ନୁହେଁ ତାହାର ଆଙ୍ଗିକ ଶୋଭା ରାଜକୀୟ ଆଡ଼ମ୍ବରରେ ଗରୀୟସୀ । "ତତ୍କାଳୀନ ହିନ୍ଦୁ ରାଜା ମାନଙ୍କ ମଧ୍ୟରେ ବିଳାସମୟ ମୋଗଲ ଦରବାର ଥିଲା ପ୍ରଧାନ ଆକର୍ଷଣୀୟ ଓ ଆଦର୍ଶ ସ୍ଥାନୀୟ । ରାଜାମାନେ ବ୍ୟକ୍ତିଗତ ବିଳାସର ସମ୍ପୂର୍ଣ୍ଣ ଆୟୋଜନ ବ୍ୟତୀତ ନଗର, ଉଦ୍ୟାନ, ଉପବନ ଓ ହର୍ମ୍ୟ ନିର୍ମାଣରେ ଐଶ୍ୱର୍ଯ୍ୟ ପରିସ୍ଫୁଟ କରାଇବା ଲାଗି ଅକାତରେ ଧନ ବ୍ୟୟ କରୁଥିଲେ ।" (୧) ଏହାର ନମୁନା ଆମେ ରସ ଲେଖା କାବ୍ୟର ହର୍ମ୍ୟ, ନଗର ଓ ଉଦ୍ୟାନ ବର୍ଣ୍ଣନାରୁ ପାଉ । ରସଲେଖା କାବ୍ୟରେ ଅଧିକ ପ୍ରାଚୁର୍ଯ୍ୟଭରା ପ୍ରାସାଦ ବର୍ଣ୍ଣନା ଭଙ୍ଗୀରେ ଉପେନ୍ଦ୍ର ରୂପାୟିତ କରିଛନ୍ତି-

"ଏଥି ଅନନ୍ତେ କ୍ଷଣ ନଗରେ, ମଳୟଗିରି ଉତ୍ତରେ,
ସୁଧାନିଧି ନାମେ ପୁର କ ମନୋହର ଏ ।

× × ×

ଅନାଇ ଯେଉଁ ବଢ଼ୀ, ହରିହୟର ବଢ଼ୀ,
ହୁର ପଡ଼ିବାରୁ ଉଭ ଗମନ୍ତି ଫେରି ଯେ ।
ସେ ଜାଗତ ମଧ୍ୟ ସ୍ଥାନେ, ଖେଳନ୍ତି ବାଳକମାନେ,
ଶଶାଙ୍କ ଶଶାକୁ ପାଶ, କରନ୍ତି ଗ୍ରାସ ଏ ।

---

୧ । ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ— ଡ଼ଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ।

କାଚ ଡ଼ାଳ ଭୂମି ଭିତ୍ତି, ହୋଇ ସ୍ଥଳେ ଜାଳଖଚ
ନଜାଣଇ ଦାନଗତ ରତନ ଜ୍ୟୋତ ଏ ।''
(ରସଲେଖା-୩ । ୧୦୪ । ୬)

ରାଜକେମା ରାଜ୍ୟ ପରମ୍ପରା ଅନୁଯାୟୀ ପୁଣି ଅସଂଖ୍ୟ ସଖୀ ବେଷ୍ଟିତା । ରାଜନନ୍ଦିନୀ:ରସଲେଖା ସେଥିରେ ବାଦ ଯାଆନ୍ତି ବା କପରି । କବିଙ୍କ ଭାଷାରେ-

''ସେଦିନ କାଳୀ-ଚତୁର୍ଦ୍ଦଶୀ କାଳୀ-କାନ୍ତ ପୂଜନେ
• ସଖୀଙ୍କ ଘେନ ରସଲେଖା ଅଛି ଧ୍ୟାନ ମନେ ।
× × ×
କୁସୁମ କାନନେ ବୁଲନ୍ତି ଉକ୍ତ ପ୍ରତାପେ ରେ
ଚନ୍ଦ୍ରିକ୍ରମାସ୍ୱ ସହଚରୀ ମାନେ ପନ୍ତ ପନ୍ତରେ ।''

ରାଜକେମା ସଖୀମାନଙ୍କର ଉକ୍ତ ପ୍ରଯୁକ୍ତି ଶ୍ଳିଷ୍ଟ ଓ ନୀରସ ନୁହେଁ, ତାହା ରସ ଚଞ୍ଚଳ ଓ ଭାବ ମୃଦୁଳ । ଏହା ପୁଣି ତତ୍‌କାଳୀନ ରାଜା ଅନ୍ତଃପୁରରେ ଚଳଣିରେ ଥିଲା ସରଣୀ ।

''ମୋଗଲ ଅନ୍ତଃପୁର ଗୁଡ଼ିକରେ ଉକ୍ତ ବଳାସିତାର ଚରମ ଅବସ୍ଥା ପ୍ରକଟିତ ହୋଇଥିଲା । ଅନ୍ତଃପୁର ଗୁଡ଼ିକରେ ରହୁଥିଲେ ହଜାର ହଜାର ସଂଖ୍ୟକ ସ୍ତ୍ରୀ । ଭିନ୍ନ ଭିନ୍ନ ବର୍ଣ୍ଣ ଓ ଜାତିର ଏହି ଅଗଣିତ ନାରୀମାନେ ଅନ୍ତଃପୁରର ଭିନ୍ନ ଭିନ୍ନ କାର୍ଯ୍ୟ ସମ୍ପାଦନ କରୁଥିଲେ । ଏଥି ମଧ୍ୟରୁ ଅନେକ ବାଦଶାହାଙ୍କ ପ୍ରତ୍ୟକ୍ଷ ସେବାରେ ନିଯୁକ୍ତ ଥିଲେ । ଅନ୍ୟ କେତେକ ବାଦଶାହାଙ୍କ ମନୋରଞ୍ଜନ ଲାଗି, କେତେକ ଶିକ୍ଷା କର୍ମରେ ନିଯୁକ୍ତ ଥିଲେ । ଅନ୍ତଃପୁରର ଶିକ୍ଷା ଗଜଲ୍ ଗାନ ଓ ବହୁ ଅଶ୍ଳୀଳ ପ୍ରେମ କାହାଣୀ ମଧ୍ୟରେ ସୀମାବଦ୍ଧ ଥିଲା । ଏମାନଙ୍କ ମଧ୍ୟରେ ବୃଦ୍ଧ-ସ୍ତ୍ରୀମାନେ ଅନେକ-କ୍ଷେତ୍ରରେ ଦୂତୀର କାର୍ଯ୍ୟ କରୁଥିଲେ । ଏହି କୁଟ୍ଟନୀମାନେ ସ୍ଥାନେ ସ୍ଥାନେ ବାହାରର ସୁନ୍ଦରୀ ସ୍ତ୍ରୀମାନଙ୍କୁ ନାନା ପ୍ରଲୋଭନ ଦେଖାଇ ଅନ୍ତଃପୁରକୁ ଘେନି ଆସୁଥିଲେ । ସୁନ୍ଦରୀ ସ୍ତ୍ରୀ ସହିତ ସୁରାର ମଧ୍ୟ ବ୍ୟାପକ ବ୍ୟବହାର ହେଉଥିଲା ।

କ୍ଷୁଦ୍ର କ୍ଷୁଦ୍ର ସାମନ୍ତ ରାଜାମାନଙ୍କ ମଧ୍ୟରେ ଏହାହିଁ ଥିଲା ସେ ସମୟର ଆଦର୍ଶ । ସେମାନଙ୍କର ସମସ୍ତ ସମୟ ହିଁ ଭୋଗବିଳାସରେ ଅତିବାହିତ ହେଉଥିଲା । (୨) ରାମାୟଣରୁ ଜଣାଯାଏ ଦଶରଥଙ୍କର ୭୫୦ ରାଣୀ ଥିଲେ । ରାମ-ଲୀଳାମୃତର ''ବଲ୍ଲଭୀ ଯାହାର ସାତସହ ପରିଣ''ରୁ ଏହା ସୂଚୀତ ହୁଏ ।

୨ । ଓଡ଼ିଆ ସାହିତ୍ୟ ସଂକ୍ଷିପ୍ତ ପରିଚୟ— ଡ଼ଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ।

ପୁଣି ଦଶରଥ ଙ୍କ ତଳରୁ ଏହା ଆହୁରି ସ୍ପଷ୍ଟ ହୁଏ । "There was a king of Benarus named Dasarath. He had 16,000 queens." (The Bangali Ramayan-by Rai Sahib Dinesh ch. Sen)

ଦେଓ୍ୱାନ ଜର୍ମାନ୍ ଦାସ ତାଙ୍କ ସମୟର ରାଜ ଅନ୍ତଃପୁରର ସୁନ୍ଦର ଚିତ୍ର ଦେଇ ଲେଖିଛନ୍ତି- ଅନ୍ତଃପୁରର ଶତଶହ ରମଣୀଙ୍କର ନାଆଁ ଗୋଟି ଗୋଟି ଲେଖିବାକୁ କଷ୍ଟ ହେବ ବୋଲି ତାଲିକାରେ କେତେ ଜଣଙ୍କୁ ଏ, ବି, ସି, ଡି କ୍ରମରେ ଆଉ କେତେକଙ୍କୁ ଏ-୧, ଏ-୨, ବି-୧, ବି-୨ ଏବଂ ଆଉ କେତେକଙ୍କୁ ୧, ୨, ୩ ୪, ଇତ୍ୟାଦି କ୍ରମରେ ସୂଚନା କରା ଯାଇଥାଏ ।"

(ମହାରାଜା-ପୃ ୧୨-ଦେଓ୍ୱାନ ଜର୍ମାନ ଦାସ)

"ମହାରାଜା ପୁସ୍ତକଟି ହେଉଛି ଭାରତର ପୂର୍ବତନ ରାଜନ୍ୟବର୍ଗଙ୍କର ଉଦ୍‌ଭ୍ରାନ୍ତ, ଅସଂଯତ ଓ ଲମ୍ପଟପୂର୍ଣ୍ଣ ଜୀବନ-ଯାତ୍ରାର ଏକ ନଗ୍ନ ପ୍ରକାଶ । X X ଧର୍ମର ଧୂମିଳ ପର୍ବ ଉହାଡ଼ରେ ରହି, ରାଜା ଉହାଡ଼ର ନିଭୃତ କେଳି ସଦନ ମଧ୍ୟରେ ଦୁନିଆର ଏଭଳି କାର୍ଯ୍ୟ ନାହିଁ, ଯାହା ସେମାନଙ୍କର କରିବାକୁ ବାକି ଥିଲା । X X ରାଜ୍ୟର ଲୀଳାଭବନ ଓ ରଙ୍ଗ ମହଲ କଳୁଷିତ, ଅମାନୁଷିକ, ପ୍ରେମ ଓ ବ୍ୟଭିଚାରର କାହାଣୀ ପ୍ରାଚୀନ ରୋମର ସମ୍ରାଟ ନିରୋଙ୍କୁ ମଧ୍ୟ ବିସ୍ମିତ କରିବ ।" ମହାରାଜା —( ଏ ବାହାର ଲେଖା ଓ ଲେଖକ )

ଓଡ଼ିଆ କାବ୍ୟ ସାହିତ୍ୟରେ ରୀତିଯୁଗର ଉନ୍ମେଷ ବେଳକୁ ଘୁମୁସରର ରାଜ-କବି ଧନଞ୍ଜୟ ଭଞ୍ଜଙ୍କ ଜୀବନର ବିଳାସିତା ଓ ବୀଭତ୍ସତା ପୂର୍ଣ୍ଣ ଜୀବନଧାରା ମୋଗଲ ଦରବାରର ବିଳାସିତା ପ୍ରଭାବରେ ଏକାନ୍ତ ପ୍ରଭାବିତ ହୋଇଥିବାର ଦୃଷ୍ଟାନ୍ତ ମିଳେ । X X ସେ ନିଜେ ଆମୋଦ ପ୍ରମୋଦ ଓ ଭୋଗବିଳାସରେ ତଥା ବିଳାସମୟ ସଙ୍ଗୀତ ଚର୍ଚ୍ଚାର ପ୍ରଧାନ କେନ୍ଦ୍ର ଏବଂ ସେଥିରେ ବିଭିନ୍ନ ପ୍ରକାର ବାଦ୍ୟଯନ୍ତ୍ର—ବୀଣା, ସୀତାର, ପଖାଉଜ ପ୍ରଭୃତି ସ୍ଥାନ ପାଇଥିଲା । ଧନଞ୍ଜୟ ଭଞ୍ଜଙ୍କର ବ୍ୟକ୍ତିଗତ ସମ୍ଭୋଗ ଲାଗି ସାତ କୋଡ଼ି ଗଣିକା ବାହାରେ ରକ୍ଷିତା ସ୍ୱରୂପ ଥିଲେ । X X ସେ ଗୋଟିଏ 'ଜଗତୀ' ନିର୍ମାଣ କରି ସତୁରି ହଜାର ଟଙ୍କା ବ୍ୟୟ କରିଥିଲେ । ଏହି ଜଗତୀରେ ଖଟଦୋଳି, ବାଙ୍କିଆ ବନ୍ଧା ହୋଇଥିଲା ଓ ନବରତ୍ନ ଖଚିତ ନାନାବିଧ କାରୁକାର୍ଯ୍ୟ ଶୋଭା ପାଉଥିଲା । ଏ ସବୁ ତାଙ୍କର ବିଳାସମୟ ସମ୍ଭୋଗ ପ୍ରୀତିର ନିଦର୍ଶନ ହେଲେ ମଧ୍ୟ ସାମାଜିକ ଭାବରେ ଯୌନ ଆଚରଣର ଯଥେଚ୍ଛତା ଓ ଭ୍ରଷ୍ଟାଚାରର ସଙ୍କେତମାନ ବହୁ ତଳ ସ୍ତରକୁ ବ୍ଲିଃ

ଯାଉଥିବାର ଜଣାଯାଏ । ଧନଞ୍ଜୟ ଉନ୍ମତ୍ତଯୌବନା ଯୌବନା ନାରୀମାନଙ୍କର ସ୍ତନରେ ସ୍ନାନବେଳେ ସେ ଅପଣାର ଶରୀରକୁ ମର୍ଦ୍ଦନ କରାଉଥିଲେ । ଭଞ୍ଜ ବଂଶାନୁଚରିତରେ ଏହାକୁ ରୂପଦେଇ ବର୍ଣ୍ଣନା କରିଛି—

ଉନ୍ମତ୍ତଯୌବନା ଯୁବତୀ ନାରୀଙ୍କର
ସ୍ତନରେ ମରଦନ କରନ୍ତି ଶରୀର ।
( ଭଞ୍ଜ ବଂଶାନୁଚରିତ-ପୃ ୨୯ )

ଭଞ୍ଜ ବଂଶାବଳୀ ଅନୁସାରେ :—

ଧନଞ୍ଜୟ ଭଞ୍ଜଙ୍କର ମୋହ ହେ ଇଲା
ଦୁଃମାର୍ଗମାନ ଯେ ମାନସରେ ପ୍ରବର୍ତ୍ତିଲା
ବହୁତ ଜାତିରୁ ସ୍ତ୍ରୀମାନ ଆଣିଲେ
ଯତ୍ନେ ବଡ଼କରି ନଅରରେ ରଖିଲେ ।

ସେତେବେଳେ ଓଡ଼ିଶାର ରାଜପରିବାର ଗୁଡ଼ିକରେ ମୋଗଲ ଦରବାରୀ ପ୍ରଭାବରେ ବହୁ ପତ୍ନୀକତା ଆଦର୍ଶ ରୂପେ ବିବେଚିତ ହେଉଥିଲା । ଭଞ୍ଜବଂଶର ରାଜକୀୟ ପରମ୍ପରା ଏଥିରୁ ବାଦ ଯାଇନଥିଲା । ହତ୍ୟା ଷଡ଼ଯନ୍ତ୍ର ଯୌନ ବ୍ୟଭିଚାର ଭିତରେ ସମ୍ପୃକ୍ତ ପାପଶିଖାଟି ପ୍ରଜ୍ଜ୍ୱଳିତ ହୋଇ ଉଠୁଥିବା ବେଳେ ସମ୍ପୃକ୍ତ ସଚେତନ କବି ଉପେନ୍ଦ୍ରଙ୍କ ଆବିର୍ଭାବ ଘମୁସରରେ କମ୍ ଗୌରବର ବିଷୟ ନୁହେଁ । ତାଙ୍କର ଭୂମିକା ପୁଣି ଥିଲା ସମାଜ ଓ ସମ୍ପୃକ୍ତ ଦୋଷରେ ଖୁବ୍ ଦାୟିତ୍ୱପୂର୍ଣ୍ଣ । ବହୁ ପତ୍ନୀ ଗ୍ରହଣ ରାଜକୀୟ ପରମ୍ପରା ଅନୁସୃତ ହୋଇଥିବାରୁ ବିରହ ସମୟରେ ନାୟିକା ରସଲେଖା ତାର ସୂଚନା ଦେଇ ପତ୍ର ଲେଖିଛି—

"ନ ଜାଣଇ କି ମୁଁ ତୁମ୍ଭେ ନୃପତି କୁମର,
ଅନେକ ଯୁବତୀ ବାଞ୍ଛା ଅଛି ତୁମ୍ଭଠାର ।
ଉମା ଶିବ ମନୋହାରୀ
ଗଙ୍ଗାକୁ ବହିଲେ ଶିରେ କ୍ଷୋଭ ସେ ନକରି ।"
( ରସଲେଖା ୨୦/୧୧ )

ମହାଦେବଙ୍କର ଦ୍ୱିପତ୍ନୀ ଗ୍ରହଣ କଥା ଉଲ୍ଲେଖରେ ନାୟିକା ରସଲେଖା ଅଙ୍କ ନଯାଇ ତିନୋଟି ପତ୍ନୀ ଗ୍ରହଣ କରିଥିବା ଚନ୍ଦ୍ରଙ୍କ କଥା ଉଲ୍ଲେଖ ନେଇ ରାଜକୁମାର କୁଳ ପରମ୍ପରା ନେଇ ତାକୁ ( ରସ ଲେଖାକୁ ) ଭୁଲି ଅନ୍ୟ ସ୍ତ୍ରୀ ଗ୍ରହଣରେ ବ୍ରତୀ ହୋଇଥିବେ ବୋଲି ଆକ୍ଷେପ କରି ଲେଖିଛନ୍ତି—

"ଚନ୍ଦ୍ର ମନ ମୋହନ୍ତୀ କୁମୁଦ ତାରାପନ୍ତି
ତଥାପି ରୋହିଣୀ ଠାରୁ ତୁଟିଲାକି ପ୍ରୀତି
ଆହେ ବିବେକୀ ଶେଖର !
ଏ ଦୁଇ କଥା ମନରେ କରିବ ବିଚାର ।
( ରସଲେଖା—୨୦/୧୨ )

ପଦ ଦେଉଛନ୍ତି ଦ୍ୱୈତ ହୃଦୟର ଭାବ-ବିନିମୟର ପ୍ରତୀକ । ନାୟକର ମନୋଭାବକୁ କବି ନାୟିକାର ପଦର ଉତ୍ତରରେ ପ୍ରକାଶ କରିଛନ୍ତି ।

"ତୋ ବିନା ନବୀନା ଆନ ଗତି ଯେବେ ଥିବ ଭବେ
ଶ୍ରୀମୁଖରେ ନିୟମ କରାଇବୁ
ଯେବେ ମୋ ଦୋଷ ହୋଇବ ଯେ ତୋ ଚିତ୍ତକୁ ଆସିବ
ସେ ବିଷକୁ ସନ୍ଧିରେ ନହିବୁରେ
ପ୍ରାଣବନ୍ଧୁ !
ଏ ପିଣ୍ଡେ ତୋ ଏକା ଅଧିକାର
ଆହା କରିବାକୁ ସାହା ନାହିଁ ମୋର ରେ ।"
( ରସଲେଖା—୨୨/୭ )

ସଂସ୍କୃତି ସଚେତନ କବି ଉପେନ୍ଦ୍ରଙ୍କର ମନୋଭାବ ତାଙ୍କ କାବ୍ୟ-ମୁକୁରରେ ସମ୍ୟକ ପ୍ରତିବିମ୍ବିତ ହୋଇଥିଲା । ସମାଜ ଓ ସଂସ୍କୃତିକୁ ସାମନ୍ତବାଦୀ ଚକ୍ରାଧାରାରୁ ରକ୍ଷା କରି ଏକ ସୁସ୍ଥ ସାଂସ୍କୃତିକ ପରମ୍ପରା ଓ ସ୍ୱକୀୟ ପ୍ରେମର ନିଷ୍ଠା ପ୍ରତିଷ୍ଠା କରିବାକୁ ତାଙ୍କ ଆତ୍ମା ସତେ ଜାଗରୁକ ଥିଲା । ଏଣୁ ନାୟିକା-ରସଲେଖା କୁ ନାୟକ ଉତ୍ତର ଦେବାରେ ଦାମ୍ପତ୍ୟ ପ୍ରୀତିର ନିଷ୍ଠା, ପରକୀୟ ଓ ବହୁ ପତ୍ନୀକତାର ବିରୋଧ ସଙ୍କେତରେ ଅନୁମିତ ହୁଏ ।

କବି ଉପେନ୍ଦ୍ର ଭଞ୍ଜଙ୍କର ଏହି ରସଲେଖା କାବ୍ୟଟି କ୍ଷୁଦ୍ର ହେଲେ ବି ସେଥିରେ ସେ ଯୁଗର ରୁଚି ଅନୁଯାୟୀ କାବ୍ୟର ବୈଶିଷ୍ଟ୍ୟ ରକ୍ଷା କରିଛନ୍ତି । ଅଯଥା ଅଳଙ୍କାର ମଣ୍ଡନରୁ ମୁକ୍ତ, କ୍ଲିଷ୍ଟତା ବର୍ଜିତ ଏ କାବ୍ୟଟି ସରଳ ପଦ-ବିନ୍ୟାସରେ ଜନଚିତ୍ତ ମୋହିତ କରେ । ସ୍ୱଳ୍ପ ପ୍ରଚଳିତ ଅଳଙ୍କାର ଉପମା, ଉତ୍ପ୍ରେକ୍ଷା, ରୂପକ, ବ୍ୟତିରେକ, ଅପହ୍ନୁତି ଶ୍ଳେଷ, ବକ୍ରୋକ୍ତି ଓ ଅନନ୍ୱୟ, ଅନ୍ତର୍ଲାପି ଅଳଙ୍କାର ପ୍ରୟୋଗ କରି କାବ୍ୟର ଆଙ୍ଗିକ ଶୋଭା ସମ୍ପାଦନ କରିଛନ୍ତି । ବୈଦର୍ଭୀ ରୀତି ବିନ୍ୟାସ କରି ପଦ ସରଳତା ଓ ଭାବ ତରଳତାରେ ମାନସ ମୋହିଛନ୍ତି ।

ଅନନ୍ୱୟ ଅଲଙ୍କାର—ଏକ ପଦାର୍ଥ ଉପମାନ ଉପମେୟ ରୂପେ ବର୍ଣ୍ଣିତ ହେଲେ ଅନନ୍ୱୟ ଅଲଙ୍କାର ହୁଏ । ଯଥା:—

"ବାଳକ ଉପମା ହୋଇବ ଯେହୁ
ସେ ବାଳକ ଆଉ ଉପମା ନାହିଁ ।"

ବ୍ୟତିରେକ ଅଲଙ୍କାର—ଯଦି ଉପମେୟ ଉପମା ଠାରୁ ଅଧିକ ବୋଲି ବର୍ଣ୍ଣିତ ହୁଏ । ତେବେ ବ୍ୟତିରେକ ଅଲଙ୍କାର ହୁଏ । ଯଥା :—

"ଏକେତ ନୟନ ଚଞ୍ଚଳ ସୀମା
ସମାନକୁ ନାହିଁ ଆନ ଉପମା
ଅଞ୍ଜନ ଦେଲେ କି ରଞ୍ଜନ ଭବେ
ଖଞ୍ଜନ, ମୀନକୁ ବୁଡ଼ାଇ ଦେବେ ସେ
ଆଦ୍ୟ ଅକ୍ଷରଟି ନାହିଁ ଯେ
ମୋ ମନେ ଏମନ୍ତ ବିଚାର କରୁଛି
ଏ କୁହୁକ କାହିଁ ପାଇଁ ଯେ ।"

ଅପହ୍ନୁତି—

ଯଦି ବର୍ଣ୍ଣନୀୟ ବସ୍ତୁରେ ତାର ଧର୍ମ ନିଷେଧ କରାଯାଏ ଏବଂ ଅନ୍ୟ ବସ୍ତୁର ଧର୍ମ ଆରୋପିତ କରାଯାଏ ତେବେ ଅପହ୍ନୁତି ଅଲଙ୍କାର ହୁଏ । ଯଥା—

"ରୂପେ ମୋହପାରୁ କି ପୁର ପୁର
ଏକା ତ୍ରିପୁର ପୁରକ ସହପୁର ।"

ରୂପକ—ଯଦି ଉପମାନ ଓ ଉପମେୟର ପରସ୍ପର ଅଭେଦ ସୂଚିତ ହୁଏ ତେବେ ରୂପକ ଅଲଙ୍କାର ହୁଏ । ଯଥା—

"ସେ ଯେ କୃଷ୍ଣ ଭୁଜଙ୍ଗମ ଜୀବକୁ ଧ୍ୱଂସି
ପିଞ୍ଜରା ତଳ ପେଡ଼ାରେ ବାହୁଡ଼ ବାହୁଡ଼ି ପଶି ।"

ସ୍ୱଭାବୋକ୍ତି—ଯେଉଁଠାରେ ଜାତି ଦ୍ରବ୍ୟ କ୍ରିୟା ଓ ଗୁଣ ଯଥାସ୍ଥିତ ରୂପେ ଚମତ୍କାର ସହ ବର୍ଣ୍ଣିତ ହୋଇଥାଏ, ସେଠାରେ ସ୍ୱଭାବୋକ୍ତି ଅଲଙ୍କାର ହୁଏ ଯଥା :—

"ଲତା ତରୁ ଧରିଅଛନ୍ତି ଗୃରୁ ତରୁଣୀ ଭ୍ରାନ୍ତି
ଅଧର ନବୀନ ପଲ୍ଲବ ଫୁଲହାର ସଙ୍ଗତି ।
ବସନ୍ତ କାନ୍ତ ଆଶ୍ଳେଷରେ ହୋଇଛନ୍ତି ଉଲ୍ଲାସ
ରସ ବରଷା କରୁଛନ୍ତି କରୁଁ ଦଶନ୍ତ ବାସ ।"

ଉତ୍ପ୍ରେକ୍ଷା —

ଯଦି ଉପମେୟରେ ଉପମାନର ଅଭେଦ ସମ୍ଭାବିତ ହୁଏ ତେବେ ଉତ୍ପ୍ରେକ୍ଷା ଅଳଙ୍କାର ହୁଏ । ଯଥା...

"ମଧୁମତ୍ତ ହୋଇ ମଧୁପ କରୁ ଅଛନ୍ତି ସ୍ୱନ
ମାର ପ୍ରଦ ଶଙ୍ଖ ହରେ କି ଲୌହ ବାଣ ଗ୍ରାମାନ ।"

ଉପମା– ଉପମେୟରେ ଉପମାନର ସାଦୃଶ୍ୟ ବର୍ଣ୍ଣିତ ହେଲେ ଉପମା ଅଳଙ୍କାର ହୁଏ । ଯଥା:–

"କାଳୀ ମସ୍ତକେ ମନ୍ଦର ପରାୟେ
ପୁଣି ରୋମାଳୀ ପରେ ଶୋଭାପାଏ ।"

ଶ୍ଳେଷ:– ଯଦି ପଦ ବା ବାକ୍ୟ ମଧ୍ୟରେ ଗୋଟିଏ ଶବ୍ଦ ଥରେ ମାତ୍ର ବ୍ୟବହୃତ ଭିନ୍ନ ଶବ୍ଦ ଅର୍ଥର ପ୍ରକାଶକ ହୁଏ, ତାହାହେଲେ ସେଠାରେ ଶ୍ଳେଷାଳଙ୍କାର ହୁଏ । ଯଥା:–

"କେ ପତ୍ରରେ ନାଗେଶ୍ୱର ମୁଁ ଆରୋହିବି ସଙ୍ଗାତ
ନରେନ୍ଦ୍ର ପରା ସିଞ୍ଚି ଥିଲେ ସେ ବୋଇଲା ଭ୍ରମର ।"

ଏଠାରେ ନାଗେଶ୍ୱରର ଅର୍ଥ ଫୁଲ ବିଶେଷ ଓ ଐରାବତ ହସ୍ତୀ ।

ଅନ୍ତର୍ଲାପିକା– ଅନ୍ତର୍ଲାପିରେ ଯେଉଁ ପ୍ରଶ୍ନ ପଚରାଯାଏ, ତାର ଉତ୍ତର ତନ୍ମଧ୍ୟରେ ଥାଏ । ଯଥା–

"ହେ ନା ଗର କି ଶୋଭା ସୁନ୍ଦର ସୃଷ୍ଟି ରୂପ ।
କ ହି ନୁହଇ ରୂ ପ ସମାନ ପୁଷ୍ପ ରୂପ ଯେ ।
ଜ ଗ ତଟ୍ ଯେ ଶଳ ଚନ୍ଦ୍ରମା ପରା କାନ୍ତି ।
ଜ ଠ ବଳେ କ ନକରୁ ଲଭିଲା ରସବନ୍ତୀ ଯେ ।
ହେ ତୁ ହର ଶ ପୂଣରେ ଦେବାକୁ ହୋଇଲା ।
କୁ ମୃ ସ୍ତନ ବ ଶକୁ କି ମନ୍ଦ୍ର ଭିଆଇଲା ଯେ ।
ର ବି ପ୍ରାୟେ ନା ସୁ ଅଛ ଚନ୍ଦ୍ରମା ବଦନ
ଅ ନୁ ଭବ ହି ନା ସିନା ହେଉଛି ଏସନ

ଅ ର   ଥ ର ବେଳୁ ବେଳ ହୁଏ ଓଷ୍ଠ ଜାନୁ
ନା ଶ  ଗଲା ଗ ଜଗତ ଗୃରୁ ତ୍ମୋ ତନୁ ଯେ ।
ସ ଦା  ପୂର କ ଲ ବାଳା ମନ ନୟନରେ
ପା ଇ  କଏ ଗ୍ଧ ଦ ନାହିଁ ସମା ତୁମ୍ଭ ଠାରେ ।
ଏ କା  ଦଶା କ ରୁଣା କର ଜ ନ ପାରବ ।
ହ ର  ହର ର ମଣୀ କେବେ ହେଁ ସୁମରବ ।
ନେତ୍ର  ବର୍ଣ୍ଣେ ସନ୍ଧା  ହୋଇଅଛୁ  ଏ ଅକ୍ଷର
ହେ କୋବଦେ ମନେ  ଅନ୍ତର୍ଲାପିକା ବଚ୍ଚର ।"

ଉତ୍ତର :— ନାହି ଗତ ତୁମ୍ଭ ବିନୁ ରସ ଦାର୍ଯ୍ୟକାର । କି ରୂପେ କଚନ ତାହି ବେଗ କର କର ।

ରସଧ୍ୱନି— ଯେଉଁଠାରେ ରସ ବ୍ୟକ୍ତି ତ ହୋଇଥାଏ ସେଠାରେ ରସଧ୍ୱନି ହୁଏ । ରସ କଦାପି ବାଚ୍ୟ ନୁହେଁ କିନ୍ତୁ ଧ୍ୱନିତ ହୁଏ । ଉଦାହରଣ...

"ନେହେ ଚ ମ୍ବକ ପରସ୍ପେ ଜଡ଼ିଲା
ଗୁହିଁ ନ ଗୁହିଁଲ ପ୍ରାସ୍ତେ ରହିଲ ।
ନେତ୍ର ପଥେ ମନକୁ ବୋଲି ତାର
ମୁଖ ପୋଛ ସେ ବଶ ହେବା ବେଳେ
ବକ୍ରେ କ କର ଗୁହେଁ ବେଳେ ବେଳେ
ନାସା ପୁଡ଼ା ଫୁଲାଇ ହେଉ ଥାଇ ।
ନେଇ ଡକାଁମା ଚକ୍ଷୁକେ ଲଗାଇ ।"

ଏଠାରେ ଶୃଙ୍ଗାରଶ୍ରିତ ଲଜ୍ଜା ବ୍ୟଞ୍ଜିତ । ଏଣୁ ଏହା ଶୃଙ୍ଗାର ରସ ଧ୍ୱନିର ଅନ୍ତର୍ଗତ । ଅଲଙ୍କାର ଧ୍ୱନି—

"ପୁଣି ପ୍ରସନ୍ନ ମୁଖକୁ ଗୃହିଁଲ ।
ନଉଜ୍ଜ୍ୱଳ ମୁକୁର ଫିଙ୍ଗିଦେଲ ।
ଏଣୁ ଭାଙ୍ଗିଗଲ ସେହୁ ଉପମା
ନଉଜ୍ଜ୍ୱଳ ହେଲ ପୂର୍ଣ୍ଣଚନ୍ଦ୍ରମା ।"

ଏଥିରେ ବ୍ୟତିରେକ ଅଲଙ୍କାର ଥିଲେ ହେଁ ତାହା ମୁଖ୍ୟ ନ ହୋଇ ଗୌଣ ଭାବରେ ବ୍ୟଞ୍ଜିତ ହେଉଥିବାରୁ ଏହା ବ୍ୟତିରେକ ଅଲଙ୍କାର ଧ୍ୱନି ।

ବସ୍ତୁଧ୍ୱନି—"ବହୁଅଛୁ ମନ୍ଦ ପବନ ଦହୁଅଛୁ ବିଦେଶୀ
ଦକ୍ଷିଣୁ ଆସିଛୁ ଯେଣୁ ସେ ଅମ୍ବୁଜବଦନେ ପଶି ।"

ଏହିପରି ଭାବରେ 'ରସଲେଖା' କାବ୍ୟକୁ ଆକଳନ କଲେ ଜଣାଯାଏ ଯେ ତାହା ବୈଦର୍ଭୀ ରୀତିରେ ଲିଖିତ ହୋଇଥିବାରୁ ଅନ୍ୟଥା ଶବ୍ଦାଡ଼ମ୍ବରରୁ ବଞ୍ଚିତ ହୋଇ ସରଳ ମଧୁର ଓ କୋମଳ ଶବ୍ଦାବଳୀରେ ଗୁମ୍ଫିତ ହୋଇ ଗଣଧର୍ମୀ ହୋଇ ପାରିଛି । ଦୁର୍ବୋଧତା ଓ କ୍ଲିଷ୍ଟତା ପରିହାର ଯୋଗୁଁ ସମସ୍ତ ଜନତାର ଆନନ୍ଦପ୍ରଦ ହୋଇପାରିଛି । ଏହା ତାଙ୍କର ବୋଧହୁଏ ପ୍ରାରମ୍ଭିକ ରଚନା ହୋଇଥିବାରୁ ଏହାକୁ ଲଘୁ କାବ୍ୟ ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇପାରେ । ଯୁବତୀ, ପ୍ରୀତି ଓ ବିଚ୍ଛେଦ ବିପତ୍ତି ସଂପର୍କରେ ମତପ୍ରଦାନ କରି ଉପେନ୍ଦ୍ର ଲେଖିଛନ୍ତି--

"ସାର ହୋଇ ପ୍ରାଣରୁ ଜଗତେ କଥା ଅଛୁ ।
ଯେ ପ୍ରାଣ ମରୁଛୁଁପାରି ନାରୀ ନୁହେଁ ମୁଁ କି ଯେ
ପରମ ପଦାର୍ଥ ନାହିଁ ସୃଷ୍ଟିରୁ ଜାଣନ୍ତେ ।
ସମ ହୋଇ କଥା ନାହିଁ ପୀରତି ସଙ୍ଗତେ ଯେ ।
ମହା ବିପତ୍ତି ବିଚ୍ଛେଦ ଠାରୁ ଥିବ ନାହିଁ
ବଡ଼ ହୋଇ ମାର ମାରଣକୁ ଦଣ୍ଡ ନାହିଁ ଯେ ।

ଉପେନ୍ଦ୍ରଭଞ୍ଜ ସ୍ୱକୀୟା ସ୍ତ୍ରୀକୁ ପ୍ରାଧାନ୍ୟ ଦେଇ ବର୍ଣ୍ଣନା କରିଛନ୍ତି—

"ଯେଉଁ ଦେହ ଲାଗି ନାହିଁ ରସବତୀ ଦେହ ।
ଅଗମ୍ୟ ବନରେ ଶୁଷ୍କ ଦାରୁ ପରି ସେହି ଯେ ।
ପ୍ରିୟା ଗୁନ୍ଥିବାର ଫୁଲ ନ ଘେନିଲା ଶିର
ପଥରେ ଥିବା ପଥର ସମ୍ମାନ ଯେ ।
ନାରୀ ପୀରତିକୁ ଯେଉଁ ମନ ନ ରସିଲା
ତାହାତୁଲେ ସମ ଉପମାକୁ ନ ଦିଶିଲା ଯେ ।

କବି ସ୍ତ୍ରୀ (ସ୍ୱକୀୟା) ବିହୀନ ପୁରୁଷକୁ ପଥର ପଥର, ଅଗମ୍ୟ ବନର ଶୁଷ୍କ କାଷ୍ଠ ସହ ତୁଳନା କରି ପରକୀୟା ପ୍ରୀତିର ନିନ୍ଦା ଓ ସ୍ୱକୀୟ ଭୂୟସୀ ପ୍ରଶଂସା କରି ନାହାନ୍ତି କି ? ପ୍ରୀତି ସଂପର୍କୀୟ ଏସବୁ ସୂଚନା ବହୁପତ୍ନୀକତା ଓ ପରକୀୟା ପ୍ରୀତି ପ୍ରତି ଏକ ପ୍ରତିବାଦ ନୁହେଁ କି ? ଧ୍ୱନ୍ୟନୁସାରୀ ଯୁଗ୍ମ ପଦମାଧୁରୀରେ କାମଦଶା ବର୍ଣ୍ଣନା କି ସୁରୁଚି ସୁଖ କରି ।

"ବନ୍ଦେ ପୁନଃପୁନଃ ଫୁଲ ଶର ଶରେ ।
ଏଣୁ ତନୁ ହୋଇଗଲା ଜରଜର ।
ଉଚ୍ଚା କରି ବୋଇଲା ଯେ ହର ହର
ଆଗ ଏଥିକି ବିଧାନ କର କର ।

ରସଲେଖା କାବ୍ୟଟି କ୍ଷୁଦ୍ର ହେଲେ ବି ଭାଷା ଓ ଭାବ ଯୋଜନା ଏହା ଅତୁଳନୀୟ, ମାଧୁର୍ଯ୍ୟମୟ ଓ ସମସ୍ତଙ୍କ ଦ୍ୱାରା ଆଦରଣୀୟ ।

---

## ସହାୟକ ଗ୍ରନ୍ଥ ସୂଚୀ :—


୧ । ରସଲେଖା—କବିସମ୍ରାଟ ଉପେନ୍ଦ୍ର ଭଞ୍ଜ
୨ । ଉପେନ୍ଦ୍ର ସାହିତ୍ୟ ସମାଲୋଚନା — ବିଷ୍ଣୁ ମୋହନ ମହାନ୍ତି
୩ । ଭଞ୍ଜ ସାହିତ୍ୟର ନବଦିଗନ୍ତ—ଶ୍ରୀ ଲକ୍ଷ୍ମଣ କୁମାର ପଣ୍ଡା
୪ । ଲାବଣ୍ୟବତୀ (ପ୍ରାଚୀ)—କବିସମ୍ରାଟ ଉପେନ୍ଦ୍ର ଭଞ୍ଜ
୫ । ଭଞ୍ଜସାହିତ୍ୟ-ସମୀକ୍ଷଣ—ଶ୍ରୀ ଲକ୍ଷ୍ମଣ କୁମାର ପଣ୍ଡା
୬ । ସାହିତ୍ୟ-ଦର୍ପଣ—ବିଶ୍ୱନାଥ କବିରାଜ
୭ । ଧ୍ୱନ୍ୟାଲୋକ—ଆନନ୍ଦ ବର୍ଦ୍ଧନ
୮ । ଅଳଙ୍କାର ଚନ୍ଦ୍ରିକା—ପଣ୍ଡିତ ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମା
୯ । ଅଳଙ୍କାର ପ୍ରସଙ୍ଗ—ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା
୧୦ । କାବ୍ୟ ଶିଳ୍ପୀ ଉପେନ୍ଦ୍ର ଭଞ୍ଜ—ଡ଼କ୍ଟର କୁଳମଣି ମହାପାତ୍ର





ଅବସରପ୍ରାପ୍ତ ଅଧ୍ୟକ୍ଷ
ନିମାପଡ଼ା ମହାବିଦ୍ୟାଳୟ
ନିମାପଡ଼ା, ପୁରୀ ।

# 'ଅନୁଭୂତିରୁ ପ୍ରଖ୍ୟାତ ମାନସ ରଚନା'

॥ ଅଧ୍ୟାପକ ବାଲକୃଷ୍ଣ ମହାପାତ୍ର ॥

ମଣିଷର ଅତୀତ ମୋହ ଅତ୍ୟନ୍ତ ନିବିଡ଼ । ଅତୀତ ବର୍ତ୍ତମାନର ପୃଷ୍ଠଭୂମି ରୂପେ ବିଦ୍ୟମାନ । ତେଣୁ ଅସ୍ପଷ୍ଟ ସୁଦୂର ଅତୀତର ପଦଧ୍ୱନି ପ୍ରତିଭାର ପ୍ରେରଣା ଭୂମି । ଅତୀତର ଗୋପନବାର୍ତ୍ତାକୁ ପ୍ରକାଶ କରିବାକୁ କବି ମନ ଉନ୍ମନ ହୋଇ ଉଠେ । କବି ସ୍ରଷ୍ଟା । ତାର ବସ୍ତୁ ସନ୍ଦର୍ଶନଗତ ଭାବ ଏପରି ଏକ ବିଶେଷ ପ୍ରକ୍ରିୟା ମାଧ୍ୟମରେ ପ୍ରକାଶ ରୂପ ଲାଭ କରେ ଯେ, ତାହାର ଅନୁଶୀଳନ ସହୃଦୟ ମନରେ ଅନୁରୂପ ଭାବ ସଂଚାରିତ କରି ପାରିଥାଏ । ତାହା ହିଁ କବି-କର୍ମ-କୁଶଳତା । ତେଣୁ ସୃଷ୍ଟି ମଧ୍ୟରେ ସ୍ରଷ୍ଟାର ଆତ୍ମପ୍ରକାଶକୁ ଅସ୍ୱୀକାର କରାଯାଇ ନ ପାରେ । ସ୍ରଷ୍ଟାର କାବ୍ୟସୃଷ୍ଟି-କ୍ଷମ ବ୍ୟକ୍ତିତ୍ୱ ତଥା ତଦନୁଗତ ମାନସିକତାର ବିଶ୍ଳେଷଣ ମାଧ୍ୟମରେ ଏହି କୁଶଳତା ଅନୁଶୀଳନ କରାଯାଇ ପାରେ ।

ନିର୍ମଳ, ଶାନ୍ତ, ଗମ୍ଭୀର ଭାବପୂର୍ଣ୍ଣ ଏକ ତନ୍ମୟାବସ୍ଥାରେ ଉପନୀତ ହୋଇ କବି ସୃଷ୍ଟି କରି ଚାଲେ ତା'ର ରଚନା ସମ୍ଭାର । କବିତ୍ୱ ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତର ପରିପ୍ରକାଶନ । ସେହି ମୁହୂର୍ତ୍ତଟି କବିର ସମଗ୍ର ବ୍ୟକ୍ତିତ୍ୱର ଏକ ଅଂଶ ବିଶେଷ । ଅନୁଭୂତି ଅନୁପ୍ରେରିତ କବି-ଚେତନା ସେତେବେଳେ ଦିବ୍ୟଦ୍ରଷ୍ଟାର ଭୂମିକାରେ ଅବତୀର୍ଣ୍ଣ । ଦୃଷ୍ଟ ଓ ଅନୁଭୂତ ପରିବେଶ ତଥା ବସ୍ତୁ ସକଳର କାବ୍ୟିକ ରୂପାୟନ ଘଟେ । ଯୁକ୍ତି ଓ କଳ୍ପନାର, ଅର୍ଜିତ ଜ୍ଞାନ ଓ ସ୍ୱକୀୟ ପ୍ରତିଭାର ଅପୂର୍ବ ସମ୍ମେଳନ ଘଟେ । କିନ୍ତୁ ପରମ୍ପରା ଓ ପରିବେଶର ପ୍ରଭାବ ସୃଷ୍ଟି କର୍ମରେ ଅପ୍ରତିହତ ହୋଇପଡ଼େ । ଏକ ଦିଗରେ ପ୍ରକାଶୋନ୍ମୁଖ ଉପଲବ୍ଧି ଏବଂ ଅନ୍ୟ ଦିଗରେ ପରମ୍ପରାର ଅନୁବର୍ତ୍ତିନଗତ ମୋହ ତଥା ପରିବେଶର ଅପ୍ରତିହତ ଭୂମିକା । ଫଳତଃ କଳ୍ପନାର ଆଶ୍ରୟ ନିଏ କବି । 'ସାଧାରଣ ବସ୍ତୁକୁ ବିଶେଷ ଭାବେ ନିଜର କରି ତାକୁ ସେହିପରି ବିଶେଷ ଭାବେ ସାଧାରଣ କରି' ଉପସ୍ଥାପିତ କରାଯାଏ । (୧)

---

୧- ଦାସ, ଚନ୍ଦ୍ରାମଣି, କବି ଗୋଦାବରୀଶ—ପୃ-୯

ଅପର ଜନଙ୍କରେ ନିଜକୁ ପ୍ରକାଶ କରିବାର ସହଜାତ ପ୍ରେରଣା, ମାନସିକତାନୁରୂପ ଅଭିବ୍ୟକ୍ତି ଲାଭ କରେ । ସେଥିନେଇ ସ୍ରଷ୍ଟା କହେ, "ମୋ କଥା ଶୁଣ-ମୋର କିଛି କହିବାକୁ ଅଛି ।" (୨) ତେଣୁ କବିଜନ ସୁଲଭ ଅଭିମାନ ମିଶ୍ରିତ ଅନୁଭୂତି କଳ୍ପନାର ରଙ୍ଗ ଲଗାଇ ପ୍ରକାଶିତ ହୁଏ । ସେଥିପାଇଁ ସହୃଦୟର ସମର୍ଥନ ସେ ଗୃହେ । "ବିବେକ ସ୍ତବକ କୋଟି କବି ଆସୁ ଗେଲ, ବର୍ଣ୍ଣିଲେ କବି କବିତ୍ୱ କି ହେବ ମ୍ଲାନ" କହି ବିବେକବନ୍ତ ଗ୍ରାହକଙ୍କୁ କବି ଆମନ୍ତ୍ରଣ କରେ । ( ୩ ) ଅର୍ଥାତ ଏ କ୍ଷେତ୍ରରେ କବି ପରି କାବ୍ୟ-ଉପଭୋକ୍ତାର ବିଶେଷ ଭୂମିକା ସ୍ୱୀକୃତ । ଉପଭୋକ୍ତା ସେହି କାରଣରୁ ପାଣ୍ଡିତ୍ୟ, ପ୍ରଜ୍ଞା, ରସିକତା ସହିତ କବି ଅନୁରୂପ ସଂବେଦନଶୀଳତା, ତୀବ୍ର ଗ୍ରାହିକା ଶକ୍ତି ତଥା କବି ଅନୁଭୂତିକୁ ନିଜ କଳ୍ପନା ଦ୍ୱାରା ନିଜର କରି ନିଜ ମନରେ ପୁନଃ ସର୍ଜିତ କରି ପାରିବାର ସାମର୍ଥ୍ୟର ଅଧିକାରୀ ହୋଇଥାଏ । "ଯେଷାଂ କାବ୍ୟାନୁଶୀଳନା-ଭ୍ୟାସ-ବଶାଦ୍ ବିଶଦୀଭୂତେ ମନୋମୁକୁରେ ବର୍ଣ୍ଣନୀୟ ତନ୍ମୟୀ ଭବନ ଯୋଗ୍ୟତା ତେ ସହୃଦୟ ସଂବାଦଭାଜଃ 'ସହୃଦୟାଃ' ।" (୪) କାବ୍ୟକର୍ତ୍ତା ଓ ଆସ୍ୱାଦକର୍ତ୍ତା ଉଭୟେ ମଣିଷ, ତେଣୁ କାବ୍ୟ ମାନବୀୟ ଅନୁଭୂତି ଉପରେ ଆଧାରିତ । ସେଥିପାଇଁ କାବ୍ୟକୁ 'ମାନବର ସୁଖ-ଦୁଃଖାତ୍ମକ ଅନୁଭୂତି ଗୁଡ଼ିକର ଚିରାର୍ଥରୂପ ଅସ୍ୱାଦମୟୀ ସୌନ୍ଦର୍ଯ୍ୟା-ଭିବ୍ୟକ୍ତି' ଭାବେ ଗ୍ରହଣ କରାଯାଇପାରେ । ( ୫ ) ତେଣୁ ଅନୁଭୂତିର ଭୂମିକା ଏ କ୍ଷେତ୍ରରେ ଅନସ୍ୱୀକାର୍ଯ୍ୟ । ଏହି ପରିପ୍ରେକ୍ଷିତରେ ଉପେନ୍ଦ୍ର-କାବ୍ୟ ସୃଷ୍ଟିକୁ ପରମ୍ପରା, ପରିବେଶ ଓ ଅନୁଭୂତିର କଳ୍ପନାମିଶ୍ରିତ ପ୍ରକାଶନ—ଏହି ଅନୁକ୍ରମରେ ବିଚାର କରାଯାଇ ପାରେ ।

ଉପେନ୍ଦ୍ର-କାବ୍ୟ-ସୃଷ୍ଟିର ପରିବେଶ ଥିଲା ପ୍ରତିଷ୍ଠିତ ସଂସ୍କୃତ ଭାଷା-ସାହିତ୍ୟ ମଧ୍ୟରେ ନବଜନ୍ମ କରିଥିବା ପ୍ରାକୃତ ଭାଷା-ସାହିତ୍ୟର ପ୍ରତିଷ୍ଠା ପାଇଁ ବ୍ୟାକୁଳତାର କାଳ । ସମାଜ ଓ ଶାସନର କର୍ଣ୍ଣଧାର ରାଜାଙ୍କର ଅନୁଗ୍ରହ ପ୍ରାପ୍ତି ବିନା ସାହିତ୍ୟର ପ୍ରଚାର ଓ ପ୍ରସାର ସହଜ ନଥିବାରୁ ଏବଂ ରାଜ ଦରବାର ସଂସ୍କୃତ

---

୨- Miss Shirley Ann Gran-Span-June 1976. P. 43

୩- ବିଦଗ୍ଧ ଚିନ୍ତାମଣି, ୧/୩୯

୪- ଡ଼. କୃଷ୍ଣବଳ,କାବ୍ୟାସ୍ୱାଦ କା ବିବେଚନ'ରେ 'ଧ୍ୱନ୍ୟାଲୋକ-ଲୋଚନଟୀକା'ରୁ ଉଦ୍ଧୃତ ।

୫- ତତ୍ରୈବ ।

ପଣ୍ଡିତ ମଣ୍ଡଳୀ ଦ୍ୱାରା ଅଧିକୃତ ଥିବାରୁ ଅନ୍ୟପ୍ରାନ୍ତୀୟ ଭାଷା ଗୋଷ୍ଠୀର ସାହିତ୍ୟ ସାଧକମାନଙ୍କ ପରି ଓଡ଼ିଆ ସାହିତ୍ୟ ସାଧକମାନେ ପାଣ୍ଡିତ୍ୟ ଓ ପ୍ରତିଭାର ମାଧ୍ୟମରେ ସଂସ୍କୃତ ସାହିତ୍ୟ ସହ ସମକକ୍ଷ ସୃଷ୍ଟି ପାଇଁ ତତ୍ପର ଥିଲେ । ତେଣୁ ତତ୍କାଳ ସଂସ୍କୃତ କାବ୍ୟ ପରମ୍ପରାକୁ ଆଦର୍ଶ ଭାବେ ଗ୍ରହଣ କରି ନେବାକୁ ସେମାନେ ଏକ ପ୍ରକାର ବାଧ୍ୟ ହୋଇଥିଲେ । କାବ୍ୟ ଦର୍ଶନର ଗ୍ରନ୍ଥକୁ ଗ୍ରହଣ କରି ନେଇ ତନ୍ମଧ୍ୟରେ ଏକ ଅବହେଳିତ ଭାଷାର ସମୃଦ୍ଧି ଓ ସାମର୍ଥ୍ୟକୁ ପ୍ରତିପାଦନ କରିବାକୁ ଚେଷ୍ଟିତ ଥିଲେ ଏମାନେ । ମାତ୍ର ଏହି ପ୍ରତିପାଦନ ଅପେକ୍ଷା ରଖିଥିଲା ରାଜାନୁମୋଦନ ଅର୍ଥାତ ରାଜ ଦରବାର ମଣ୍ଡନକାରୀ, ଲୋକଭାଷା ବିଦ୍ୱେଷୀ ସଂସ୍କୃତ ପଣ୍ଡିତମାନଙ୍କର ସ୍ୱୀକୃତି । ତେଣୁ ଏ ସୃଷ୍ଟି ଥିଲା ଆନ୍ତରିକ ପ୍ରସୂତ । ସେଥିପାଇଁ ଅଳଂକରଣ ତଥା ଶବ୍ଦ ସଂଯୋଜନଗତ କ୍ଳିଷ୍ଟତା ମାଧ୍ୟମରେ ପାଣ୍ଡିତ୍ୟ ପ୍ରଦର୍ଶନକୁ ଆବଶ୍ୟକତା ଭାବେ ବରି ନିଆଯାଇଛି ।

ଏତାଦୃଶ ପରମ୍ପରା- ପୁଷ୍ଟ କବିଚେତନା ସାମନ୍ତୀୟ ବାତାବରଣ ମଧ୍ୟରେ ଅନ୍ତଯାତ ହୋଇଛି । ଦୀର୍ଘକାଳ ଧରି ବାରମ୍ବାର ଯୁଦ୍ଧରେ ବ୍ୟାପୃତ ରହିଥିବା ଏକ ସମୃଦ୍ଧ ଜାତିର ଅଧୋପତନ ଆରମ୍ଭର କାଳ ଏହା । ଏହି ସମୟରେ ଗଜପତି ଶାସନର ଦୁର୍ବଳତା ଓ ସାମ୍ରାଜ୍ୟର ଅଧଃପତନ ସହିତ କ୍ଷୁଦ୍ର କ୍ଷୁଦ୍ର ଗଡ଼ଜାତର ଶାସକଗଣ ନିଜ ନିଜର ସୀମିତ ରାଜ୍ୟ ସୀମା ମଧ୍ୟରେ ବିଳାସ ବ୍ୟସନରେ ସମୟ ଅତିବାହିତ କରିବାକୁ ଆରମ୍ଭ କରିଛନ୍ତି । କେବେ କେବେ ପ୍ରତିବେଶୀମାନଙ୍କ ସହ ଯୁଦ୍ଧ ସଂଘଟିତ ହେଉଥିଲେ ମଧ୍ୟ ପୂର୍ବର ବୀରତ୍ୱ ଓ ସାହସ ସେମାନଙ୍କ ମଧ୍ୟରେ ଆଉ ନଥିଲା । ବରଂ ତଥାକଥିତ ରାଜାପ୍ରାସାଦ ଗୁଡ଼ିକ ବିଭତ୍ସ ଯୌନସମ୍ଭୋଗ ଓ ଜଘନ୍ୟ ହତ୍ୟାର ନାରକୀୟ କ୍ଷେତ୍ରରେ ପରିଣତ ହୋଇ ଯାଇଥିଲା । ତେଣୁ ବ୍ୟକ୍ତିଗତ ଜୀବନରେ ଏମାନେ କୌଣସି ଉଚ୍ଚ ଦର୍ଶନର ପରିପୋଷକ ନଥିଲେ । ଭାରତୀୟ ଶାସନ କ୍ଷେତ୍ରରେ ଯେପରି ଧର୍ମ ସମନ୍ୱୟର ଭିତ୍ତି ଉପରେ ପ୍ରତିଷ୍ଠିତ ଆକବରଙ୍କ ବିଶାଳ ସାମ୍ରାଜ୍ୟ ଉତ୍ତରାଧିକାରୀମାନଙ୍କର ଅତ୍ୟଧିକ ବିଳାସ ପ୍ରବଣତା, ଧର୍ମ ବିଦ୍ୱେଷଜାତ ଓ ସହନଶୀଳତା ଅଭାବରୁ ଭୂଲୁଣ୍ଠିତ ପଡ଼ି କେବଳ ଦେହଚର୍ଯ୍ୟାର କ୍ଷେତ୍ରରେ ପରିଣତ ହୋଇଥିଲା, ଅନୁରୂପ ଭାବେ ଏହି ରାଜପ୍ରସାଦ ଗୁଡ଼ିକର କ୍ଳୀବ ଶାସକଗଣ ନାରୀ ଶରୀରର ଚତୁର୍ଦ୍ଦିଗରେ ପରିଭ୍ରମଣ କରି ଶାନ୍ତି ପ୍ରାପ୍ତ ହେଉଥିଲେ । ନାରୀ ତନୁ ତୀର୍ଥରେ ଅବଗାହନ କରିବା ପରମ ପୁରୁଷାର୍ଥ ରୂପେ ଗୃହୀତ ହେଉଥିଲା । ଜୀବନରେ ନିର୍ଦ୍ଦିଷ୍ଟ ଆଦର୍ଶ ଓ ଉଚ୍ଚାକାଂକ୍ଷା, ବୀରତ୍ୱ ଓ ସାହସର ଅଭାବ ଏବଂ ବିଳାସ ପ୍ରବଣତା ଏ ଜାତିକୁ କ୍ରମଶଃ ଦୁର୍ବଳ କରିପକାଇଛି । ଠିକ୍ ଏହି

ସମସ୍ତରେ ଗୌଡ଼ୀୟ ବୈଷ୍ଣବ ଧର୍ମର ଉତ୍ତାଳ ତରଙ୍ଗ ଏ ଭୂମିକୁ ପ୍ରେମ ଧର୍ମ ପ୍ଲାବିତ କରିଛି । ବହୁ ବର୍ଷ ଧରି ଯୁଦ୍ଧ କ୍ଲିଷ୍ଟ ଏକ ଜାତିର ସମରାକାଂକ୍ଷା ପ୍ରଶମିତ ହୋଇଯିବା ସହିତ ଯୁଗ ଯୁଗର କ୍ଳାନ୍ତି ଓହ୍ଲାଇ ଆସିଚି ଏ ଜାତିର ଜୀବନକୁ । ଏହି କ୍ଳାନ୍ତି ଅପନୋଦନ ପାଇଁ କାବ୍ୟିକ ରସ ପରିଚର୍ଯ୍ୟା ଏକ ମାନସିକ ପ୍ରଶାନ୍ତି ପ୍ରଦାନ କରିଛି । ଏଣୁ ଦରବାରୀ ବିଳାସରେ କାବ୍ୟାନୁଶୀଳନ ଏକ ବିଶିଷ୍ଟ ଦୋଷ ହୋଇପଡ଼ିଛି ଦୈନନ୍ଦିନ ଜୀବନରେ କାବ୍ୟାନୁଶୀଳନରୁ ପ୍ରାପ୍ତ ଶୃଙ୍ଗାର କେଳି କୌଶଳକୁ ରାଜ ଅନ୍ତଃପୁରରେ ରକ୍ଷିତ ବହୁ ସଂଖ୍ୟକ ରମଣୀମାନଙ୍କ ସାହଚର୍ଯ୍ୟରେ ଆଜଣ୍ଟୁ ଉପଭୋଗ କରାଯାଉଛି ; ଶାସକ ବର୍ଗଙ୍କର ପରିତୃପ୍ତ୍ୟର୍ଥେ । ତେଣୁ ଏ ଯୁଗୀୟ କାବ୍ୟ ଗୁଡ଼ିକରେ ଶୃଙ୍ଗାର ରସର ବହୁଳ ଚର୍ବଣ ମଧ୍ୟ ସ୍ୱାଭାବିକତାରେ ପରିଣତ ହୋଇଯାଇଛି ।

ପୁନଶ୍ଚ ପୂର୍ବ କଥିତ ଆଦର୍ଶରେ ବଶବର୍ତ୍ତୀ ହୋଇ ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟି କରିବାର ପ୍ରଚେଷ୍ଟା ପ୍ରାଥମିକ ପର୍ଯ୍ୟାୟରେ ଧର୍ମ ସାହିତ୍ୟ ମଧ୍ୟରେ ଆବଦ୍ଧ ଥିଲା । ଯଦିଓ ଓଡ଼ିଆ ଭାଷାରେ ଜଗନ୍ନାଥ ଦାସ ଭାଗବତ ରଚନା କରିଥିଲେ ମଧ୍ୟ ଏବଂ ତାହା ଜନଜୀବନକୁ ସର୍ବୋତ୍‌ଭାବରେ ସ୍ପର୍ଶ କରିଥିଲେ ମଧ୍ୟ ଭାଷାକୁ ପ୍ରତିଷ୍ଠା କରିବାର ଅଭିପ୍ରାୟ ଏହା ଦ୍ୱାରା ଚରିତାର୍ଥ ହୋଇ ପାରିନଥିଲା । କାଳିଦାସୀୟ କାବ୍ୟ ରୀତି ପରବର୍ତ୍ତୀ କାଳରେ ଅବହେଳିତ ହେଲାପରି ଜଗନ୍ନାଥୀୟ ଶୈଳୀକୁ ତତ୍‌କାଳୀନ ପଣ୍ଡିତମାନେ ସମାଦର କରିଥିଲେ । ତେଣୁ ପରବର୍ତ୍ତୀ ଓଡ଼ିଆ ସ୍ରଷ୍ଟାଗଣ ଲୋକ-ଆବଶ୍ୟକତାକୁ ଜାଣି ଜାଣି ପ୍ରାଧାନ୍ୟ ନ ଦେଇ ସଂସ୍କୃତ ସାହିତ୍ୟର ଗଦ୍ୟ ନୈଷଧୀୟ ଆଦର୍ଶରେ ବିଦଗ୍‌ଧ କାବ୍ୟ ଶୈଳୀକୁ ଗ୍ରହଣ କରି ନେଇଥିଲେ । ଏତାଦୃଶ ପରମ୍ପରା, ପରିବେଶ ଓ ପ୍ରଚେଷ୍ଟା ମଧ୍ୟରେ ଉପେନ୍ଦ୍ର ପ୍ରତିଭାର ଉନ୍ମେଷ ଓ ବିକାଶ । ମନେ ହୁଏ ଶତାଧିକ ବର୍ଷ ଧରି ଆରମ୍ଭ ହୋଇଥିବା ପ୍ରଚେଷ୍ଟା ସତେ ଯେପରି ପୂର୍ଣ୍ଣତା ପାଇଁ ଉପେନ୍ଦ୍ର-ପ୍ରତିଭାର ଅପେକ୍ଷାରେ ଥିଲା । ସେଥିପାଇଁ ଉପେନ୍ଦ୍ର ଏହି ପୂର୍ଣ୍ଣତାରେ ଉପନୀତ ହୋଇ ଚରମ ଦାମ୍ଭିକତାର ସହିତ ତାଙ୍କ କାବ୍ୟ ସମ୍ପର୍କରେ ଉଦ୍‌ଘୋଷଣା କରିପାରିଥିଲେ "ଯେନ ନୈଷଧ ପରାସ୍ତେ" ।

ଉପେନ୍ଦ୍ରଙ୍କ କାବ୍ୟଗୁଡ଼ିକ ସେଥିପାଇଁ ପରମ୍ପରାର ଅନୁବର୍ତ୍ତନ ସହିତ ପରିବେଶର ଆବଶ୍ୟକତାନୁସାରେ ସୃଷ୍ଟ ହୋଇଛନ୍ତି । କିନ୍ତୁ ତାଙ୍କର କାବ୍ୟିକ ପ୍ରତିଭା ସ୍ୱକୀୟତାରେ ଋଦ୍ଧିମନ୍ତ ! ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞା ତାଙ୍କର କେବଳ ଗତାନୁଗତିକତାର ପିଷ୍ଟ ପେଷଣ କରି ନାହିଁ ବରଂ ସ୍ୱ ଅନୁଭୂତିକୁ କାବ୍ୟିକ ରୂପ ପ୍ରଦାନ କରିଅଛି । ଅବଶ୍ୟ ଏହା ସ୍ୱୀକାର୍ଯ୍ୟ ଯେ ରୀତିଯୁଗୀୟ ଅନ୍ୟ କାବ୍ୟକାରଙ୍କ

ପରି କବି ଉପେନ୍ଦ୍ର ମଧ୍ୟ ଏକ ବିଶାଳ କାବ୍ୟିକ ଐତିହ୍ୟରୁ ଉତ୍ତରାଧିକାରୀ ସୂତ୍ରରେ ମିଳିତ ପ୍ରବଣତା ଲାଭ କରିଛନ୍ତି । କାବ୍ୟ ସାମଗ୍ରୀ ସେଥିପାଇଁ ବ୍ୟକ୍ତିଗତ ଅନୁଭୂତିରୁ ସଂଗୃହୀତ ନ ହୋଇ ପରମ୍ପରାରେ ପ୍ରତିଷ୍ଠିତ ଶାସ୍ତ୍ର, କାବ୍ୟ ଓ କାବ୍ୟ ଶାସ୍ତ୍ର ମଧ୍ୟରୁ ବିଶେଷତଃ ଆହୃତ ହୋଇଛନ୍ତି । ପରମ୍ପରା ଓ ପରିବେଶର ଅନୁରୋଧରେ ସେ କାବ୍ୟଗୁଡ଼ିକୁ ଏକ ନିର୍ଦ୍ଦିଷ୍ଟ ଗ୍ରନ୍ଥିରେ ପକାଇଛନ୍ତି ସତ, ମାତ୍ର କାମକଳାର କବି ଭାବେ ତାଙ୍କ କାବ୍ୟକଳା ସାଧାରଣ ଦର୍ଶନ ସହିତ ସମ୍ମିଶ୍ରିତ ହୋଇ ପ୍ରକାଶିତ ହୋଇ ପାରିଛି, ଯେଉଁଠାରେ କି ସହୃଦୟଙ୍କର ଭାବ ଉନ୍ମୀଳନ ପାଇଁ ତାହା ସକ୍ଷମ ହୋଇପାରିଛି । ଆହୃତ ଜ୍ଞାନ, ଭାବଜଗତର ତତ୍‌କ୍ଷଣାତ୍ ସଂସ୍ପର୍ଶରେ ଆସି ପୁନଶ୍ଚ ଜ୍ଞାନର ନୂତନ ବିଭବ ରୂପେ ପ୍ରତିଭାତ ହୋଇଛି । ଆହୃତ ସତ୍ୟ ଅବବୋଧ ଓ ଅନୁଭୂତିର ସମନ୍ୱୟ ହୋଇ ନୂତନ ସୃଷ୍ଟିରେ ତାହା ପ୍ରକାଶିତ ହୋଇଛି ।

ଉପେନ୍ଦ୍ର ରାଜପୁତ୍ର ଓ କବି । ଏକ ପ୍ରତିଷ୍ଠିତ ରାଜ ବଂଶରେ ତାଙ୍କର ଜନ୍ମ । ପିତାମହ ରାଜା ଧନଞ୍ଜୟ କବି ଓ ବଳଶାଳୀ । "ଉନ୍ମତ୍ତହସ୍ତୀ ସଉବଣୀ-ମାନଙ୍କର ସ୍ତନରେ ସେ 'ଶଙ୍ଖର ମରଦନ' କରାନ୍ତି" ହେଲେ ମଧ୍ୟ ତାଙ୍କ ସିଂହାସନରେ ଉତ୍ତରାଧିକାରୀ ପ୍ରତିଷ୍ଠା ପାଇଁ କୁଟୀଳତା ଓ ଜଘନ୍ୟ ହତ୍ୟାର ଆଶ୍ରୟ ନିଆଯାଇଛି । ଅନ୍ୟ ବହୁ ରାଜ ଅନ୍ତଃପୁର ପରି ସୁମୁସର ରାଜ ଅନ୍ତଃପୁର ବ୍ୟଭିଚାର ଓ କୁଟୀଳତା ଅଧ୍ୟୁଷିତ ଥିବା ଇତିହାସ କହୁଛି । ମନ୍ତ୍ରୀଦେବୀ ପୁତ୍ର ନୀଳକଣ୍ଠଙ୍କୁ ରାଜା କରିବାକୁ ସ୍ୱାମୀ ଧନଞ୍ଜୟଙ୍କୁ ହତ୍ୟା କରିଛନ୍ତି । ଏପରି ରାଜ ପରିବାର ମଧ୍ୟରେ ଯେଉଁ ମାନଙ୍କ କୋଳରେ କାଖରେ ଲାଳିତ ପାଳିତ ହୋଇ ରାଜ ପୁତ୍ରଟିଏ ବାଲ୍ୟ, କୈଶୋର ଅତିକ୍ରମଣ କରିଥାଏ, ଯୌବନାଗମରେ ସେହି-ମାନଙ୍କ ଠାରୁ ପୂର୍ଣ୍ଣ କାନ୍ତି ନୂତନ ସନ୍ନିହିତ ଯୁବତୀଙ୍କ ସାହଚର୍ଯ୍ୟରେ କାମଶାସ୍ତ୍ର ବର୍ଣ୍ଣିତ ସ୍ତନ ପୀଡ଼ନାଦି ବିବିଧ କାମକ୍ରୀଡ଼ା ପଦ୍ଧତି ସହଜରେ ଶିକ୍ଷା କରିଥାଏ । ବିତାଡ଼ିତ ପିତା ନୀଳକଣ୍ଠଙ୍କ ସହ ଉପେନ୍ଦ୍ର ରାଜ୍ୟତ୍ୟାଗୀ ମଧ୍ୟ ହୋଇଛନ୍ତି । ପୁନଶ୍ଚ ପ୍ରିୟା ବିରହ ବିଧୁର ହେବାର ଦୁର୍ଭାଗ୍ୟ ଉପେନ୍ଦ୍ରଙ୍କ ଭାଗ୍ୟରେ ଆସିଥିଲା । ତେଣୁ କବିଙ୍କର ବ୍ୟକ୍ତିଗତ ଜୀବନ ଏକ ଦିଗରେ ଦରବାରୀ ବିଳାସ ପ୍ରବଣତା, ସହଜ ଲଭ୍ୟ ପ୍ରଚୁର ନାରୀ ଦେହ ତଥା ଅନୈତିକ, ବ୍ୟଭିଚାରଗ୍ରସ୍ତ ପାରିବାରିକ ପରିବେଶ ସହିତ ଅପରଦିଗରେ ରାଜ୍ୟ ତ୍ୟାଗ ଓ ପରାଶ୍ରୟ ଜନିତ ବ୍ୟାକୁଳିତ ବେଦନାର ଅନୁଭୂତିରେ ସିକ୍ତ ହୋଇ ଯାଇଥିବ ।

ତେଣୁ ଉପେନ୍ଦ୍ର-ମାନସିକତା ଉତ୍ତରାଧିକାରୀ ସୂତ୍ରରେ ପ୍ରାପ୍ତ ଆଦ୍ୟ ଜୀବନର ବିଳାସ ସୁଲଭତା ଓ ପରବର୍ତ୍ତୀ ଜୀବନର ରାଜନୈତିକ ପରିବେଶ ସୁଲଭ ପ୍ରତାରଣା ମଧ୍ୟରୁ ଲବ୍ଧ ଦୁଇ ପରସ୍ପର ବିରୋଧୀ ଅନୁଭୂତିରୁ ପ୍ରସ୍ତୁତ ହୋଇଥିବ ।

ତେଣୁ ଏପରି ଏକ ଇନ୍ଦ୍ରଜାଲ ସାଂସାରିକ ସଂସାର ଅପେକ୍ଷା ଭିନ୍ନ ଏକ ଅଧିକ ଲୋଭନୀୟ ଓ ଚେତନ ସାମ୍ରାଜ୍ୟର ପ୍ରତିଷ୍ଠା ଆକର୍ଷଣ ତାଙ୍କୁ ସଙ୍କଳ୍ପବଦ୍ଧ କରିଥିବା ବିଚିତ୍ର ନୁହେଁ । ସେଥିପାଇଁ ସଦ୍‌ଜାତ ସ୍ୱଭାବ, ପାଣ୍ଡିତ୍ୟ ତଥା ଢଭମ୍ବ ପିତୃରାଜ୍ୟ ଓ ଆଶ୍ରୟ ନେଇଥିବା ମାଲୁଜାଲୟର ତତ୍କାଳୀନ ରାଜକୀୟ କାବ୍ୟ-ଲୋଚନା ପରିବେଶ ଏବଂ ବଂଶ୍ୟରୁ ବଂଶ୍ୟାନ୍ତର ସାଧା ଜାଳୀନ ବିଭିନ୍ନ ଲୋକ ଓ ଦୃଶ୍ୟ ସହ ସମ୍ଭାବ୍ୟ ପରିଚୟ ଜନିତ ବିପୁଳାନୁଭୂତି ତାଙ୍କ ସୃଷ୍ଟିକୁ ପରିପୂର୍ଣ୍ଣ କରିଛି । କବି ଉପେନ୍ଦ୍ରଙ୍କ ପ୍ରକାଶ ଓ ପ୍ରତିଷ୍ଠା ବ୍ୟାକୁଳତା, ରାଜସୁଲଭ ଅହଂକାର ଦ୍ୱାରା ପ୍ରବୃଦ୍ଧିତ ହୋଇ ପ୍ରତିଷ୍ଠା ପ୍ରୟାସୀ ମାତ୍ର ଦେବାର ଅସ୍ୱୀକୃତ ଓଡ଼ିଆ ଭାଷା ସାହିତ୍ୟର ପୂର୍ଣ୍ଣତା ପାଇଁ ଆହ୍ୱାନକୁ ଗ୍ରହଣ କରି ନେଇଛି । ଏକ ସୁନିର୍ଦ୍ଦିଷ୍ଟ ଆଦର୍ଶର ପରିସୀମା ମଧ୍ୟରେ ଓଡ଼ିଆ କାବ୍ୟ କୋଣାର୍କର ମୂର୍ତ୍ତି ମାରିବାକୁ ସେ ସଚେତନ ଓ ସଫଳ ପ୍ରୟାସ ଆରମ୍ଭ କରିଛନ୍ତି । 'ରସକୋଷା' ଏହି ପ୍ରୟାସର ଆଦ୍ୟ ଫଳଶ୍ରୁତି ପରି ପ୍ରତୀୟମାନ ହୁଏ ।

ଉପେନ୍ଦ୍ର ସୃଷ୍ଟି ସମ୍ପର୍କରେ ପଦବିନ୍ୟାସର ଚମତ୍କାରିତା, ବର୍ଣ୍ଣନା ବିଳାସିତା ସହ ଶବ୍ଦ ଯୋଜନାର କ୍ଲିଷ୍ଟତା, ଅଳଙ୍କାର ସଂଯୋଜନର ପ୍ରାଚୁର୍ଯ୍ୟ, ଶୃଙ୍ଗାର ରସର ଉତ୍କଟତା, ଗତାନୁଗତିକ ବର୍ଣ୍ଣନାର ବାହୁଲ୍ୟ, ଦରବାରୀ ପରିବେଶ ଓ ତତ୍‌ଜନ୍ୟ ଚରିତ୍ର ଗତ ଏକମୁଖୀନତା, ବିଷୟ ପରିବେଷଣ ଗତ ବୈଚିତ୍ର୍ୟ ହୀନତା ପ୍ରଭୃତି ସମ୍ପର୍କରେ ଆଲୋଚନା କରାଯାଇଥାଏ । ମାତ୍ର ରସକୋଷା କ୍ଲିଷ୍ଟ ଶବ୍ଦ ସଂଯୋଜନା, ବର୍ଣ୍ଣନା ବାହୁଲ୍ୟ କିମ୍ବା ପଦବିନ୍ୟାସ ଚମତ୍କାରିତା ଦୃଷ୍ଟିରୁ ଉଲ୍ଲେଖନୀୟ କୃତିତ୍ୱର ଅଧିକାରୀ ନୁହେଁ । ବରଂ ଏହାକୁ ପରବର୍ତ୍ତୀ ସମୟରେ ଉପେନ୍ଦ୍ର-ପ୍ରତିଭାର ପ୍ରତିଷ୍ଠା ପାଇଁ ଏକ ଯଥାର୍ଥ ପ୍ରାଥମିକ ପ୍ରୟାସଭାବେ ଅସ୍ୱୀକାର କରି ହେବନାହିଁ । ପରବର୍ତ୍ତୀ ସମୟରେ ରସିକ ହାରାବଳୀ, ପ୍ରେମସୁଧାନିଧି, ଲାବଣ୍ୟବତୀ, ବୈଦେହୀଶ ବିଳାସ, ସୁଭଦ୍ରା ପରିଣୟ ଓ କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ ପ୍ରଭୃତି ବିପୁଳ କାବ୍ୟ ସୃଷ୍ଟି ଉପେନ୍ଦ୍ରଙ୍କ ପାଇଁ ତଥା ଓଡ଼ିଆ ଭାଷା ସାହିତ୍ୟ ପାଇଁ ଅପୂର୍ବ ପ୍ରତିଷ୍ଠା ଆଣିଦେଇ ପାରିଲା ।

ଏହି ସମସ୍ତ କାବ୍ୟର ସାଧାରଣ ଧର୍ମ ଓ କାବ୍ୟିକ ବୈଶିଷ୍ଟ୍ୟ ସମ୍ପୃକ୍ତ ପ୍ରଭାବିତ ବିଚାର ମାର୍ଗ ଅନୁସରିତ ଚମତ୍କାରିତା ମଧ୍ୟରେ ପ୍ରକାଶିତ ହୋଇଥିଲେ ମଧ୍ୟ ଉପେନ୍ଦ୍ରଙ୍କ ଜୀବନାନୁଭୂତିର ପ୍ରଭାବ ଓ ପ୍ରତିଫଳନ ମୁକ୍ତ ନୁହନ୍ତି । ଅବଶ୍ୟ ଉପେନ୍ଦ୍ର "ଅନୁଭୂତିରୁ ପ୍ରଖ୍ୟାତ ମାନସ ରଚନା" ବୋଲି କହି ଅପୂର୍ବ ସୃଷ୍ଟି-କ୍ଷମ କଳ୍ପନାର ମନୋହାରିତ୍ୱ ଓ ଶ୍ରେଷ୍ଠତ୍ୱକୁ ପ୍ରତିପାଦନ କରିଥିଲେ ମଧ୍ୟ ଏହା ଅନୁଭୂତିର ଭୂମିକାକୁ ଅସ୍ୱୀକାର ନ କରି ବରଂ ପ୍ରକାରାନ୍ତରରେ ଅନୁଭୂତିର

ଉପସ୍ଥିତ ଓ ଆଧ୍ୟାତ୍ମିକତ୍ୱକୁ ମାନ୍ୟତା ଦେଇଛି । ଅନୁଭୂତ ଅଧୀତଜ୍ଞାନ, ଅବବୋଧ ଓ କଳ୍ପନାରେ ରଞ୍ଜିତ ହୋଇ, କାବ୍ୟିକ ଚମତ୍କାରିତାରେ ଅନୁରଂଜିତ ହୋଇ ଓଡ଼ିଆ ଲୋକ ବ୍ୟବହାର କୁଶଳତା ରୂପରେ ଓ ସ୍ମରଣୀୟ ବକ୍ତବ୍ୟ ଭାବରେ ପ୍ରକାଶିତ ହୋଇଛି ।

କର୍ମ ଫଳର ପରିଣାମକୁ ସ୍ୱୀକାର କରିବାକୁ ଯାଇ ସେ 'ଯେ ଯାହା ଅର୍ଜିଲା ସେ ତାହା ଭୁଂଜଇ ଏଥି ଅଛି କେଉଁ ସଂଶୟ' ବୋଲି କହନ୍ତି । କାରଣ ସେପରି ପରିଣତି ତାଙ୍କର ଅଙ୍ଗେ ନିଭା କଥା । ମାତ୍ର ଅଭୀପ୍ସିତର ଲାଭରେ ଉଦ୍‌ଗତ ଆନନ୍ଦକୁ ସେ ପ୍ରକାଶିତ କରିଛନ୍ତି, 'ବାଂଛିତ ନିଧି ପ୍ରାପତ ହେଲି ଠାରେ କି ବଳ୍ପର ଆଉ ଅଛି ।' ସେହିପରି 'ଅମୃତ ଭୋଜନ ପାଇଁ ଶୁଦ୍ଧାମନ୍ତ୍ର କୋହି ଭୁଂଜିବ,' କାରଣ ତାହା ତ 'ପ୍ରାପ୍ତ ମାତ୍ରେଣ ଭକ୍ଷେତ' ବୋଲି ଲୋକଙ୍କର ବିଶ୍ୱାସ । ମାତ୍ର କାର୍ଯ୍ୟ ସିଦ୍ଧି ପାଇଁ ଆବଶ୍ୟକ ଧୈର୍ଯ୍ୟ । କାରଣ 'ଆତୁର ନ ପାଏ କାର୍ଯ୍ୟ କେଉଁ କାଳରେ' । ସେହିପରି ହାଟ ବଜାର ଚିତ୍ର ଠାରୁ ଆରମ୍ଭ କରି ବାଉଁଶ କେଳା, ସାପୁଆ କେଳା, ଶବର, ବଣିଆ, ଗଉଡ଼, ଗଉଡ଼ୁଣୀ, ମାଳୁଣୀ ଓ ସାଧାରଣ କୃଷକର ଦୁଃଖ, ଦୈନ୍ୟ, ଅଭାବ ଅସୁବିଧା ଓ ସାଧାରଣ ଜୀବନଧାରା ସମ୍ପର୍କିତ ବର୍ଣ୍ଣନା କିମ୍ବା ଉପମାଦି ଅଳଙ୍କାରିକ ପ୍ରୟୋଗ ମଧ୍ୟରେ ଉପେନ୍ଦ୍ରଙ୍କ ତତ୍ସଂପର୍କିତ ଜୀବନାନୁଭୂତକୁ ଅସ୍ୱୀକାର କରାଯାଇ ପାରିବ ନାହିଁ ।

ରସମୟ କାବ୍ୟ ଜଗତର ସ୍ରଷ୍ଟା କବି 'ଶୃଙ୍ଗାରଚେତ' ହୋଇଥାଏ । ଏଠି ମଧ୍ୟ ଦରବାରି ପରିବେଶ ଅନୁକୂଳ କାବ୍ୟ-ସୃଷ୍ଟି-ଲକ୍ଷ୍ୟ ପୂର୍ତ୍ତି ପାଇଁ ଶୃଙ୍ଗାର ରସ ପରିବେଷଣ କରିବାକୁ ଯାଇଥିବେ କବି । ଅବଶ୍ୟ 'ଦେହି ପଦ ପଲ୍ଲବ ମୁଦାରଂ' ପରି ପରମ୍ପରାଟିଏ ରହି ଆସିଥିଲା । ମାତ୍ର କବି ଚେତନା-ସର୍ଜନାକୁ ନିଜ ପାରିବାରିକ ଓ ବ୍ୟକ୍ତିଗତ ଜୀବନଧାରା ପ୍ରଭାବିତ କରିଥିବ । ସେ ହୁଏତ ସେଥିପାଇଁ ପୁରୁଷର ବହୁ ନାରୀ ସଂଭୋଗ ବିଳାସିତାର ଚିତ୍ର ଦେଇଛନ୍ତି । ଏପରିକି ସେ ନାରୀ ଚରିତ୍ର ମୁଖରେ ମଧ୍ୟ ପୁରୁଷର ଏହି ପ୍ରକୃତିର ସାଧାରଣ ସୁଲଭତାର କଥା କହିଛନ୍ତି—"ନ ଜାଣେଇ କି ମୁଁ ତୁମ୍ଭେ ନୃପତି କୁମାର, ଅନେକ ଯୁବତୀ ଆଶା ଅଛି ତୁମ୍ଭଠାର ।" (୭) ନାରୀ ରୂପ ବର୍ଣ୍ଣନା ବେଳେ ତାଙ୍କର ଲେଖନୀ ଉଭୟ ଦୃଶ୍ୟ ଓ ବସ୍ତ୍ରାବୃତ୍ତ ଅଙ୍ଗ ପ୍ରତ୍ୟଙ୍ଗର ବର୍ଣ୍ଣନା ଦେବାପାଇଁ ମଧ୍ୟ କୁଣ୍ଠିତ ହୋଇ ନାହିଁ । ନାରୀ ରୂପ ସୁଧା ବର୍ଣ୍ଣନାରେ ସେ ଶତମୁଖର । ରସ ପରିବେଷଣ କରୁ କରୁ, ଆନନ୍ଦର କଲ୍ଲୋଳ ସୃଷ୍ଟି କରୁ କରୁ, ନାରୀ ପୁରୁଷର

---

୭- ରସଲେଖା-୧୦/୨୧

ମିଳନ ବିରହ ପୁନର୍ମିଳନରେ ସ୍ୱାଦାନୁଭୂତି ଆଙ୍କି ଆଙ୍କି କବି ଏ ସବୁକୁ ଅସ୍ୱାଭାବିକ ଭାବି ପାରି ନ ଥାଇପାରେ । ସେ ତ ନାରୀକୁ ରାଜୈଶ୍ୱର୍ଯ୍ୟ, ଇନ୍ଦ୍ର ସମ୍ପତ୍ତି ଠାରୁ ମଧ୍ୟ ବଡ଼ ମନେ କରନ୍ତି । ତାଙ୍କ ସୃଷ୍ଟି ପୁରୁଷ ନାରୀର କିଙ୍କର ହେବାପାଇଁ ସଦା ଉନ୍ମୁଖ କାରଣ ତାଙ୍କ ନାରୀ ପୁରୁଷ ଉଭୟେ ଜନ୍ମ ଜନ୍ମାନ୍ତରର ସାଥୀ ପୁନଶ୍ଚ ପରଜୀବନରେ ମଧ୍ୟ ସେହି ବନ୍ଧନର ଅତୁଟତା କାମନା କରନ୍ତି ଉଭୟ 'ଟେକାକୁ ହେବ ର ରାଜ୍ୟଭ୍ରଷ୍ଟ' ଓ 'ଯୁବାକୁ ହେବ ପତ୍ନୀକଷ୍ଟ' ଜନିତ ଦାରୁଣ ଯନ୍ତ୍ରଣାର ତିକ୍ତତା ସେ ଅନୁଭୂତରେ ଆଣିଛନ୍ତି । କବିଙ୍କର ଅବତ୍ତିମାନରେ ବସ୍ତୁ ପ୍ରତି ଆକର୍ଷଣ ଏକ ସ୍ୱାଭାବିକ ମାନସିକ ପ୍ରକ୍ରିୟା । କବି ବ୍ୟକ୍ତି ଜୀବନରେ ନାରୀର ଅଙ୍ଗଚର୍ଚ୍ଚା, ସାନ୍ନିଧ୍ୟର ମାଦକତା ଉପଲବ୍ଧି କରିଛନ୍ତି । ପୁଣି ସେପରି ଅଧିକାରରୁ ସେ ପ୍ରବଞ୍ଚନା ଓ ପ୍ରତାରଣା ଫଳରେ ବଞ୍ଚିତ ହୋଇଛନ୍ତି । କବି ବ୍ୟବହୃତ 'ନୃଆ-ଅନ୍ଧ' ଉପମାନଟି କବିଙ୍କ କ୍ଷେତ୍ରରେ ମଧ୍ୟ ଏହି ପରିପ୍ରେକ୍ଷୀରେ ପ୍ରଯୁଜ୍ୟ । ମାନସିକ ସ୍ତରରେ ସେହି ଲବ୍ଧ-ସୁଖ ପ୍ରତି ଏହି ସ୍ୱଭାବସିଦ୍ଧ ଆକର୍ଷଣ ପତ୍ନୀ ପ୍ରାପ୍ତିରେ ଉପଶମିତ ହୋଇଥାଇପାରେ, ମାତ୍ର ତାହା ମଧ୍ୟ କ୍ଷଣସ୍ଥାୟୀ ତେଣୁ ସେ କଳ୍ପନାରେ ନିଜର ଇପ୍ସିତ ନାୟିକାର ମନ, ଦେହ ସବୁକୁ ଖୋଜିଛନ୍ତି । ସେ କଳ୍ପନା ପୁରାଣ ମଧ୍ୟକୁ ପ୍ରବେଶ କରି ନାହିଁ ବରଂ ମାନସ ଲୋକରୁ ରସଲୋଲୁପ ଭଳି ନାୟିକାଙ୍କୁ କବିଙ୍କ ସମ୍ମୁଖରେ ଉପସ୍ଥାପିତ କରାଇଛି । ସେ ନିଶ୍ଚୟ ବିଶ୍ୱାସ କରୁଥିଲେ ଯେ ସ୍ୱପ୍ନ ଦେଖି, ଜାଣିଥିବା ଲୋକର କିଛି ହିଁ ଅଭାବ ରହେ ନାହିଁ । ତେଣୁ ସେ ସ୍ୱପ୍ନକୁ ହିଁ ମାନସିକତାର ପ୍ରସୂତି ଓ ପୃଷ୍ଠଭୂମି ଭାବରେ ସ୍ୱୀକାର କରିଛନ୍ତି । ତେଣୁ 'ରାଜ୍ୟଭ୍ରଷ୍ଟ' ହେବାର ଦାରୁଣ ମାନସିକ ପୀଡ଼ନ ଏବଂ ପତ୍ନୀ ବିୟୋଗ ଜନିତ ମର୍ମାନ୍ତକ ବେଦନାରୁ ସେ ମୁକ୍ତ ହୋଇ ପାରିଛନ୍ତି ଏବଂ ଓଡ଼ିଆ କାବ୍ୟ ସାହିତ୍ୟ ରାଜ୍ୟରେ ସମ୍ରାଟ ଭାବରେ ଓ ପତ୍ନୀ ସାନ୍ନିଧ୍ୟ ଲବ୍ଧ ରସ ରାଜ୍ୟରେ ମଧ୍ୟ ଅବିସମ୍ବାଦିତ ସମ୍ରାଟ ଭାବରେ ପ୍ରତିଷ୍ଠିତ ହୋଇ ପାରିଛନ୍ତି । ତେଣୁ ତାଙ୍କ ଜୀବନର ଅପରନ୍ତ ଅଭାବ ଓ ଅସନ୍ତୋଷ ବୋଧ ଏପରି ଏକ ସାର୍ବଜନୀନ ସୁଖାନୁଭୂତିର ପ୍ରଶଂସାରେ, ଚିରନ୍ତନ ଆବେଦନଶୀଳତା ପ୍ରକାଶନରେ ତତ୍ପର ହୋଇ ଉଠିଥାଇପାରେ ।

କବିର ସୃଷ୍ଟି କ୍ରିୟା ଯେତେ ଆପଣାର ହେଲେ ମଧ୍ୟ ସୃଷ୍ଟି ପ୍ରକାଶନରେ ସାର୍ବଜନୀନ ହୋଇଯାଏ । ଜଗତ, ଜୀବନ ଓ ସମାଜ ପାଇଁ ଏହାର ସୃଷ୍ଟି । ତେଣୁ କାବ୍ୟର ଏହି ସାମଗ୍ରିକ ବ୍ୟାପାର ଓ ସର୍ବଜନୀନତା ଯୋଗୁଁ ଜୀବନର ସାଧାରଣ ଅପ୍ରାପ୍ତି, ଅସନ୍ତୋଷ, ଅଭାବ ବୋଧ, ପ୍ରବଞ୍ଚନା ଓ ପ୍ରତାରଣାର ଚିତ୍ର କାବ୍ୟକୁ ପୁଷ୍ଟିଳ କରେ ନାହିଁ । କବି ତେଣୁ ବ୍ୟକ୍ତି ଜୀବନର ଅଭାବ ବୋଧରେ କାବ୍ୟକୁ କ୍ଷତାକ୍ତ କରେନାହିଁ । ବରଂ ସେହି ଅପୂର୍ଣ୍ଣତା ମଧ୍ୟରେ ସେ ପୂର୍ଣ୍ଣତାର

ଅନୁସନ୍ଧାନ କରୁଥାଏ । ଆନନ୍ଦବୋଧର ମହନୀୟତାରେ ସେ ତାର ସୃଷ୍ଟିକୁ ପୂର୍ଣ୍ଣତମ କରିବାକୁ ପ୍ରୟାସ କରୁଥାଏ । ସେ ଯେପରିକି ଜୀବନର ଜୟଗାନ କରୁଥାଏ । ଦୁଃଖପିଷ୍ଟ ମଣିଷକୁ ପୁଣିଥରେ ସ୍ୱ ଦୁଃଖର ଆବର୍ତ୍ତ ମଧ୍ୟକୁ ଟାଣି ନେବାକୁ ନ ଚାହିଁ ସେ ଦୁଃଖ ଭୁଲି, ସୁଖମୟ ସଂସାର ସୃଷ୍ଟି କରି ଚାଲିଥାଏ । କବି ଉପେନ୍ଦ୍ର ଏହିପରି କବିଟିଏ । ସେ ତେଣୁ ବହୁନାରୀ ସମ୍ଭୋଗ ଚିତ୍ରର ପ୍ରାସଙ୍ଗିକ ଉପସ୍ଥାପନ ମଧ୍ୟରେ ଅଟକି ଯାଇନାହାନ୍ତି । ବରଂ ନାରୀ ପୁରୁଷର ଐକାନ୍ତିକ ପ୍ରେମର ମହତ୍ତ୍ୱ ଗାନ କରିଛନ୍ତି । ଏକ ନାରୀ, ଏକ ପୁରୁଷର ସୁମଧୁର ଦାମ୍ପତ୍ୟ ପ୍ରେମ ତାଙ୍କ ଦୃଷ୍ଟିରେ ଜୀବନର ସର୍ବାଧିକ ଲୋଭନୀୟ ଅଧ୍ୟାୟ । ପର ଦ୍ରବ୍ୟ ଓ ପରସ୍ତ୍ରୀ ହରଣ ଅପେକ୍ଷା ମରଣ ତାଙ୍କ ପକ୍ଷରେ ଅଧିକ ଶ୍ଲାଘ୍ୟ । ସ୍ୱାର୍ଥ ପାଇଁ ନାରୀର ସ୍ୱାମୀ ହତ୍ୟା ପରି ଜଘନ୍ୟ ବାସ୍ତବାନୁଭୂତ ସେଥିପାଇଁ ତାଙ୍କ ସୃଷ୍ଟିରେ ରୂପାନ୍ତରିତ ହୋଇଚି ଦାମ୍ପତ୍ୟ ଜୀବନର ପାରସ୍ପରିକ ଆନୁଗତ୍ୟ ଓ ଅନୁରକ୍ତିର ବିଶ୍ୱାସନୀୟତା ପ୍ରସ୍ତରରେ । କ୍ରୌଞ୍ଚର ଶୋକରେ ଦୁଃଖାଭିଭୂତ ବାଲ୍ମୀକି ଙ୍କର ନିଷାଦକୁ ଅଭିଶାପ ଦେଇ ପାରନ୍ତି ମାତ୍ର ନିଜର ଏହି ବ୍ୟକ୍ତିଗତ କାରୁଣ୍ୟକୁ କାବ୍ୟ ରୂପ ଦେଲାବେଳେ ଅସୁର ନିଧନ ରୂପକ ଅନୁରୂପ ନିଷ୍ଠୁର କର୍ମରେ ଶ୍ରୀରାମଙ୍କୁ ନିୟୋଜିତ କରିଦିଅନ୍ତି, କାରଣ ସୃଷ୍ଟିର ବୃହତ୍ତର ମଙ୍ଗଳ ବିଧାନ ପାଇଁ ଏହାର ଆବଶ୍ୟକତାକୁ ସେ ସନ୍ଦର୍ଶନ କରିପାରିଛନ୍ତି । ସେହିପରି ଉପେନ୍ଦ୍ରଙ୍କ ବ୍ୟକ୍ତିଗତଭାବ ସାମୂହିକତା ପ୍ରାପ୍ତ ହେଲାବେଳେ ସେଥିରୁ କେବଳ ଚିର ମଙ୍ଗଳର, ଚିର ଆନନ୍ଦର ନିସର୍ଗ ବାର୍ତ୍ତା ପ୍ରସରିତ ହୋଇ ତାଙ୍କର ସମଗ୍ର ସୃଷ୍ଟିକୁ ମହାନ କରି ତୋଳିଛି । ଏହି ପରିପ୍ରେକ୍ଷୀରେ ଉପେନ୍ଦ୍ର କାବ୍ୟ ପ୍ରତିଭା ଏବଂ ଏହି ପ୍ରତିଭା ପ୍ରକାଶର ଜୈତ୍ର ଯାତ୍ରା ଯେଉଁ 'ରସଲେଖା' ଠାରୁ ଆରମ୍ଭ ହୋଇଛି ତାହା ମଧ୍ୟ ଅବିସ୍ମରଣୀୟ ।

ଓଡ଼ିଆ ବିଭାଗ,
ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାବିଦ୍ୟାଳୟ
ଭୁବନେଶ୍ୱର

# ଉପେନ୍ଦ୍ରୀ ଶୃଙ୍ଖଳାର ଆଦ୍ୟ ଆଲେଖ୍ୟ - ରସଲେଖା

॥ ଡା: କିଶୋର ଚନ୍ଦ୍ର ମିଶ୍ର ॥

ଯୁଗ ପ୍ରବର୍ତ୍ତକ କବି ଉପେନ୍ଦ୍ର (୧୬୭୫ ଖ୍ରୀ: ଅ- ୧୭୩୦) ୪୨ଖାଧାରରେ ପରକୀୟା ପ୍ରୀତି ସମ୍ବଳିତ କୃତ୍ରିକାବ୍ୟ, ସ୍ୱକୀୟା ପ୍ରୀତି ଆଧାରିତ ପୌରାଣିକ, ରାଜବଂଶୀୟ ଓ କାଳ୍ପନିକ କାବ୍ୟ ତଥା ସଙ୍ଗୀତ, ଅଭିଧାନ ଓ ଅଳଙ୍କାର ଶାସ୍ତ୍ର ରଚନା କରି ଯାଇଛନ୍ତି । କିନ୍ତୁ ମୁଖ୍ୟତଃ ଉପେନ୍ଦ୍ର କାବ୍ୟର କବି ଭାବେ ସମ୍ମାନିତ । ଯୁଗାନୁରୋଧରେ କୃତ୍ରିକାବ୍ୟ କଳାକଉତୁକ, ଛାନ୍ଦଭୂଷଣ ଆଦି ରଚନା କରିଥିଲେ ସୁଦ୍ଧା ସ୍ୱକୀୟା ପ୍ରୀତି ଆଧାରିତ ପ୍ରେମ ସୁଧାନିଧି, ଲାବଣ୍ୟବତୀ, ସୁଭଦ୍ରା ପରିଣୟ, ବୈଦେହୀଶ ବିଳାସ, ଆଦି କାବ୍ୟରେ କବିଙ୍କ ଜୀବନାଦର୍ଶ ପ୍ରତିଫଳିତ । ଏ ସମସ୍ତ କାବ୍ୟାବଳୀରେ କବିଙ୍କ ସ୍ୱକୀୟ ଶୈଳୀର ପଦଚିହ୍ନ ସର୍ବତ୍ର ଅଙ୍କିତ ହୋଇଥିବା ପରିଲକ୍ଷିତ । ଅବଶ୍ୟ କବି ପ୍ରତିଭାର ଉନ୍ମେଷ, ବିକାଶ ଓ ପ୍ରୌଢ଼ତ୍ୱ ମଧ୍ୟରେ କେତେକ ଭିନ୍ନତା ଅନୁଭୂତ ହେବା ସ୍ୱାଭାବିକ, ତଥାପି ତାର ଅନ୍ତଃ ସ୍ୱରଟି ଏକ ଓ ଅଭିନ୍ନ । ପ୍ରତିଭାଧର ଉପେନ୍ଦ୍ରଙ୍କ ବିପୁଳ ସୃଷ୍ଟିରେ ଥିବା ରୀତି ବା ଶୃଙ୍ଖଳାର ଆଦ୍ୟ ଉନ୍ମେଷ "ରସଲେଖା" ଏହା ହିଁ ପ୍ରତିପାଦ୍ୟ ବିଷୟ ।

ଉପେନ୍ଦ୍ରଙ୍କ କେତେକ ବିଶିଷ୍ଟ କାବ୍ୟର ଆନୁପୂର୍ବିକତା ନିର୍ଣ୍ଣୟ ପ୍ରସଙ୍ଗରେ କାବ୍ୟାଦର୍ଶର ଉପସ୍ଥାପନା, ଖଳନିନ୍ଦା ଓ ସଜ୍ଜନ ପ୍ରଶଂସାରେ ନମ୍ରତାରୂ, ଦାମ୍ଭିକତା ମଙ୍ଗଳାଚରଣରେ କବିଙ୍କ ଧର୍ମୀୟ ଧାରଣା, କାବ୍ୟରେ ଅଳଂକାର ନିର୍ଦ୍ଦେଶ, ଉପମାର ବ୍ୟାପ୍ତି ଓ ପ୍ରକାଶ ଭଂଗୀ, ପ୍ରଯୁକ୍ତ ଉପମାନର ସଂଖ୍ୟା ଆଦି କେତେକ ବିଶିଷ୍ଟ ବିଷୟକୁ ଉପଜୀବ୍ୟ କରି ରସଲେଖାର ପରବର୍ତ୍ତୀ ପ୍ରକାଶକ ଭାବେ ରସିକ ହାରାବଳୀ, ପ୍ରେମସୁଧାନିଧି, ସୁଭଦ୍ରା ପରିଣୟ, ଲାବଣ୍ୟବତୀ, ବୈଦେହୀଶ ବିଳାସ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ନିର୍ଣ୍ଣୀତ ହୋଇଛି ।

(ଉପେନ୍ଦ୍ର ଭଂଜଙ୍କ କାବ୍ୟରେ ଉପମା : ଏକ ଅଧ୍ୟୟନ । ପୃ-୧୧୦)

ପ୍ରାକୃତ ଓଡ଼ିଆ ଭାଷାରେ ସଂସ୍କୃତ ମହାକାବ୍ୟ ଲକ୍ଷଣ ଅନୁସୃତ କାବ୍ୟ ରଚନା ପାଇଁ ଉପେନ୍ଦ୍ରଙ୍କ ବଳବତୀ ଇଚ୍ଛାର ଆଦ୍ୟ ପ୍ରକାଶନୀ ରସଲେଖା କାବ୍ୟ । କବି ପ୍ରତିଭାର ଆଦ୍ୟ ବାହକ ମଧ୍ୟ । ଏ କାବ୍ୟର ପରିସମାପ୍ତିରେ କବି ରଚନାର ସମୟ ସୂଚନା ଦେଇଛନ୍ତି—

ପ୍ରତାପସିଂହ ଗଜପତି, ଅଙ୍କ ସପ୍ତ ବଂଶପତି, ସୋମ ଦିନେ ଶେଷ ଏହୁ ଗୀତ ।
(୨୨-୧୭)

ଭାବବତୀ, ସୁବର୍ଣ୍ଣରେଖା ପ୍ରଭୃତି କେତେକ ଗ୍ରନ୍ଥ ରସଲେଖା ପୂର୍ବରୁ ରଚିତ । ସେ ଗୁଡ଼ିକ କବିଙ୍କ କାବ୍ୟ ରଚନାଭ୍ୟାସର ପରିଚୟ ଦିଅନ୍ତି ମାତ୍ର । କବିଙ୍କ ପ୍ରୌଢ଼ ରଚନା ଲାବଣ୍ୟବତୀ, ବୈଦେହୀଶ ବିଳାସ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ସଂସ୍କୃତ ମହାକାବ୍ୟ ଲକ୍ଷଣର ଯଥାର୍ଥ ସମନ୍ୱୟ ଦେଖିବାକୁ ମିଳେ । କିନ୍ତୁ ରସଲେଖା ଏହି ପର୍ଯ୍ୟାୟର ପ୍ରଥମ ରଚନା ହେତୁ ମହାକାବ୍ୟ ଲକ୍ଷଣର ପୂର୍ଣ୍ଣ ପ୍ରକାଶ ସମ୍ଭବ ହୋଇନାହିଁ ।

ସଂସ୍କୃତ ମହାକାବ୍ୟ ଲକ୍ଷଣ ବିଷୟରେ ଆଳଂକାରିକ ବିଶ୍ୱନାଥ କବିରାଜଙ୍କ ମତ ସର୍ବାଧିକ ଗ୍ରହଣ ଯୋଗ୍ୟ । ତାହା ଏତେ ପ୍ରସିଦ୍ଧ ଓ ଲୋକପ୍ରିୟ ଯେ, ତାହାକୁ ଯଥାଯଥ ଉପସ୍ଥାପନ ନକରି ସେଥିରେ ପ୍ରଦତ୍ତ ନିୟମ ଆଧାରରେ ରସଲେଖା କାବ୍ୟର ବିଚାର କରାଯାଇ ପାରେ ।

ଉପେନ୍ଦ୍ର ପ୍ରାକୃତ ଭାଷାରେ କାବ୍ୟ ରଚନା କରିଥିବାରୁ ଏଥିରେ ପ୍ରାକୃତ କାବ୍ୟ ନିୟମ ପୂର୍ଣ୍ଣତଃ ସଂରକ୍ଷିତ ।

**ସର୍ଗାତ୍ମକତା—** ସର୍ଗ ରୂପରେ ମହାକାବ୍ୟର ବିଷୟ ବିଭାଜନ ସଂସ୍କୃତ ମହାକାବ୍ୟ ପାଇଁ ଉଦ୍ଦିଷ୍ଟ । ପ୍ରାକୃତ କାବ୍ୟରେ ସର୍ଗ ପରିବର୍ତ୍ତେ ଛାନ୍ଦ, ଅଧ୍ୟାୟ, ଆଶ୍ୱାସ, ସ୍କନ୍ଧ ପ୍ରଭୃତି ଶବ୍ଦ ବ୍ୟବହାର କରାଯାଇପାରେ । ତେଣୁ ଉପେନ୍ଦ୍ର ଏ କାବ୍ୟକୁ ଛାନ୍ଦରେ ବିଭାଜନ କରିଛନ୍ତି ।

**ସର୍ଗସଂଖ୍ୟା-ପଦସଂଖ୍ୟା-ପ୍ରକୃତି—** ପ୍ରତ୍ୟେକ ମହାକାବ୍ୟର ସର୍ଗ ସଂଖ୍ୟା ଆଠରୁ ଅଧିକ ଓ ପ୍ରତ୍ୟେକ ସର୍ଗର ପଦସଂଖ୍ୟା ପଚାଶରୁ ଊଣା ହେବା ଉଚିତ । ଛାନ୍ଦ ଶେଷରେ ବୃତ୍ତ ପରିବର୍ତ୍ତନ ସଂସ୍କୃତ ମହାକାବ୍ୟ ପାଇଁ ଉଦ୍ଦିଷ୍ଟ । ପ୍ରାକୃତ ବା ଓଡ଼ିଆରେ ସମଗ୍ର ଛାନ୍ଦଟି ଏକ ବୃତ୍ତରେ ରଚିତ ହେବା ନିୟମାଧୀନ । ଏ ଦୃଷ୍ଟିରୁ ରସଲେଖାରେ ଛାନ୍ଦ ସଂଖ୍ୟାରେ ବ୍ୟତିକ୍ରମ ନାହିଁ । କିନ୍ତୁ ପଦ ସଂଖ୍ୟାରେ ସାମାନ୍ୟ ବ୍ୟତିକ୍ରମ ଦେଖାଯାଏ । ୨୨ ଛାନ୍ଦ ବିଶିଷ୍ଟ ଏ ଗ୍ରନ୍ଥରେ ୨ୟ,

ଏକାଦଶ, ତ୍ରୟୋଦଶ, ଷୋଡ଼ଶ, ସପ୍ତଦଶ, ଅଷ୍ଟାଦଶ, ଊନବିଂଶ, ବିଂଶ, ଏକବିଂଶ ଓ ଦ୍ୱାବିଂଶ ଛାନ୍ଦରେ ପଦସଂଖ୍ୟା ପଚାଶରୁ କମ ।

**ସର୍ଗ ଶେଷରେ ଆଗାମୀ ସର୍ଗସ୍ଥ ବିଷୟର ସୂଚନା—**
କବି ଏ ବିଷୟରେ ଅବହିତ ଥିଲେ ମୁଦ୍ଧା ପ୍ରଥମ, ଚତୁର୍ଥ, ପଞ୍ଚମ, ତ୍ରୟୋଦଶ, ଚତୁର୍ଦ୍ଦଶ ଓ ଏକବିଂଶ ଛାନ୍ଦ ଶେଷରେ ଆଗାମୀ ଛାନ୍ଦର ବିଷୟ ସୂଚନା ଦେଇଛନ୍ତି ।

**କାବ୍ୟର ନାୟକ-ନାୟିକା—** ଲକ୍ଷଣରେ ଉଲ୍ଲିଖିତ ନାୟକ-ନାୟିକା ସଦ୍‌ବଂଶଜ ହେବା ବିଧେୟ । କବି ଜନର ଆଦର୍ଶ ଚରିତ୍ର ସୃଷ୍ଟି ପାଇଁ ନାୟକ ନାୟିକାଙ୍କୁ ରାଜବଂଶରୁ ଗ୍ରହଣ କରିଛନ୍ତି । ଏ କାବ୍ୟରେ କପିଯାଞ୍ଚ ଋଷି ଓ ଶୈଳ ରାଜ କନ୍ୟା କଳ୍ପଲତା ଠାରୁ ଜାତ ରସଲେଖା ସହିତ ସୁଧାନିଧିପୁର ରାଜା ଭୂପତିଙ୍କ ପୁତ୍ର ବିଶ୍ୱଭୂଷଣର ମିଳନ ଚିତ୍ର ପ୍ରଦତ୍ତ । କିନ୍ତୁ ସେହି କପିଯାଞ୍ଚ ଯେ ଜଣେ ରାଜର୍ଷି ଏକଥା ପରେ ପ୍ରକାଶ କରି ନାୟକ ନାୟିକାଙ୍କୁ ରାଜ ବଂଶଜ ହେବା ପ୍ରତିପାଦନ କରିଛନ୍ତି ।

**କଥାବସ୍ତୁ—** କାବ୍ୟର କଥାବସ୍ତୁ ପୌରାଣିକ, ଐତିହାସିକ ବା କାଳ୍ପନିକ ହେଲେ ହେଁ ତାହା ସଜ୍ଜନାଶ୍ରୟୀ ହେବା ଦରକାର । ସେ ଦୃଷ୍ଟିରୁ ରସଲେଖାର କଥାବସ୍ତୁ କାଳ୍ପନିକ ହେଲେ ମଧ୍ୟ ରସୋଦୟବନ ଓ କପିଯାଞ୍ଚ ଋଷି ଆଦି ଉଲ୍ଲେଖ ମଧ୍ୟରେ କଥାକୁ ପୌରାଣିକ ରୂପଦେବା ଚେଷ୍ଟା ଅନ୍ତର୍ନିହିତ । ଏହି କଥାନକ ଲୋକୋକ୍ତିରୁ ଗୃହୀତ ହୋଇ ସଜ୍ଜନାଶ୍ରୟୀ ହୋଇ ପାରିଛି । ପରବର୍ତ୍ତୀ ସୃଷ୍ଟିରେ କବି ନାୟକ-ନାୟିକାର ଜନ୍ମାନ୍ତର କଥା ସଂଯୋଜନ କରି ତାହାକୁ ଦେବାଶ୍ରୟୀ କରିବା ସଙ୍ଗେ ସଙ୍ଗେ ଭାରତୀୟ ସାଂସ୍କୃତିକ ମର୍ଯ୍ୟାଦାକୁ ରୂପ ଦେଇଛନ୍ତି ।

> "ପୂର୍ବ ଜନ୍ମନି ଯା ବିଦ୍ୟା ପୂର୍ବ ଜନ୍ମନି ଯଦ୍ ଧନମ୍,
> ପୂର୍ବ ଜନ୍ମନି ଯା କନ୍ୟା ଅଗ୍ରେ ଧାବତି ଧାବତି ।"

**ଚତୁର୍ବର୍ଗ ଫଳପ୍ରାପ୍ତି—** ଉପେନ୍ଦ୍ରଙ୍କ କାବ୍ୟରାଜିର ପ୍ରତି ଛାନ୍ଦ ଶେଷରେ ଈଶ ବନ୍ଦନାରୁ ଧର୍ମଲାଭ, ଶୃଙ୍ଗାର ରସାତ୍ମକ ହେତୁ କାମଲାଭ, ଅର୍ଥଲାଭ ତଥା ମୋକ୍ଷ ପ୍ରାପ୍ତି ଇଙ୍ଗିତ ରହିଛି ।

**ମଙ୍ଗଳାଚରଣ—** କାବ୍ୟର ପ୍ରାରମ୍ଭ, ମଧ୍ୟ ଓ ଅନ୍ତରେ ଈଶ୍ୱର ସ୍ତୁତି ସଂଯୋଜନ କାବ୍ୟର ନିର୍ବିଘ୍ନ ପରିସମାପ୍ତି ପାଇଁ ଆବଶ୍ୟକ । ରସଲେଖାର ପ୍ରାରମ୍ଭ ଓ ପ୍ରତି ଛାନ୍ଦ ଶେଷରେ ହରିହର ସ୍ତୁତି କାବ୍ୟ ନିର୍ମାଣ ପରମ୍ପରାର ଦ୍ୟୋତକ ହୋଇ ପାରିଛି ।

**ସଜ୍ଜନ ପ୍ରଶଂସା ଓ ଖଳ ନିନ୍ଦା—** କାବ୍ୟରେ ସଜ୍ଜନ ପ୍ରଶଂସା ଓ ଖଳ ନିନ୍ଦା ସଂଯୋଜନ ପାଇଁ ନିର୍ଦ୍ଦେଶ ରହିଛି ।''କ୍ୱଚିତ୍ ନିନ୍ଦା ଖଲା ଦୀନାଂ ସତାଂ ଚ ଗୁଣ କୀର୍ତ୍ତନମ୍'' । ଏ କାବ୍ୟର ପ୍ରଥମ ଛାନ୍ଦରେ ଖଳ ନିନ୍ଦା (ନବମ ପଦ)· ଓ ସାଧୁସ୍ତୁତି (ଦଶମ ପଦ) କରି ପରମ୍ପରା ନିର୍ବାହ କରିଛନ୍ତି । କେବଳ ଏତିକି କୁହାଯାଇପାରେ, କବିଙ୍କ ପ୍ରତିଭା ବିକାଶ ସହିତ ଏହି ପରମ୍ପରା କ୍ରମେ ନମ୍ରତାରୁ ଦାମ୍ଭିକତା ଆଡ଼କୁ ଗତି କରିଛି ବା ପ୍ରକାରାନ୍ତରେ ଆତ୍ମ ପ୍ରତ୍ୟୟ ଅଭିମୁଖୀ ହୋଇ ପାରିଛି ।

**ବର୍ଣ୍ଣ୍ୟ ବିଷୟ—** ନାୟିକାର ସମସ୍ତ ଅଙ୍ଗ-ପ୍ରତ୍ୟଙ୍ଗର ବର୍ଣ୍ଣନା ସହିତ ପ୍ରାକୃତିକ ବିଭବର ଚିତ୍ରଣ ମହାକାବ୍ୟରେ ସ୍ଥାନିତ ହେବା ନିର୍ଦ୍ଦେଶ ରହିଛି । ସେ ଦୃଷ୍ଟିରୁ କାବ୍ୟ ନାୟିକାର ନଖ-ଶିଖ ବର୍ଣ୍ଣନା ସହିତ ନଗର, ଉପବନ, ପ୍ରଭାତ-ସନ୍ଧ୍ୟା ଓ ଗ୍ରୀଷ୍ମ-ହେମନ୍ତ ବ୍ୟତିତ ଅନ୍ୟ ଋତୁର ବର୍ଣ୍ଣନା ଉପଲବ୍ଧ । ସଖୀ ପରିହାସ ଓ ମଧୁଶଯ୍ୟା ବର୍ଣ୍ଣନା ଉପେନ୍ଦ୍ରଙ୍କ ପ୍ରତ୍ୟେକ କାବ୍ୟର ଏକ ଉଲ୍ଲେଖନୀୟ ବିଭବ । ଏ କାବ୍ୟରେ ପର୍ବତର ଉଲ୍ଲେଖ ଥିଲେ ମଧ୍ୟ ବର୍ଣ୍ଣନା ନାହିଁ ।

**ସମ୍ଭୋଗ ଓ ବିପ୍ରଲମ୍ଭ—** ଉପେନ୍ଦ୍ରଙ୍କ କାବ୍ୟ ଶୃଙ୍ଗାର ରସାତ୍ମକ ହେତୁ ସମ୍ଭୋଗ ଓ ବିପ୍ରଲମ୍ଭର ଅଭିବ୍ୟକ୍ତି ପାଇଁ ଯଥେଷ୍ଟ ଅବକାଶ ରହିଛି । ସେ ମଧ୍ୟରେ ବିପ୍ରଲମ୍ଭର ସମଧିକ ବର୍ଣ୍ଣନା ପାଠକ ହୃଦୟକୁ ଦ୍ରବୀଭୂତ କରେ । ନାୟିକା ଅପେକ୍ଷା ନାୟକର ବିରହ ବ୍ୟଥା ଅଧିକ ଚର୍ଚ୍ଚିତ । ତେଣୁ ଉପେନ୍ଦ୍ରଙ୍କୁ ସମ୍ଭୋଗ ବିଳାସୀ କବି କହିବା ଅପେକ୍ଷା ବିରହ ବିଧୁର କହିବା ଯୁକ୍ତିଯୁକ୍ତ ।

**ସ୍ୱର୍ଗୀୟ ପାତ୍ରର ଅବତାରଣା—** ରସଲେଖାରେ ନାରଦ, ଯୋଗିନୀ ପ୍ରଭୃତି ଚରିତ୍ର ଅବତାରଣା ପାଇଁ ଭୂମି ପ୍ରସ୍ତୁତ କରିଥିବାରୁ ମହାକାବ୍ୟ ଲକ୍ଷଣ ପ୍ରତି କବି ସଚେତନ ଥିବା ପରିଲକ୍ଷିତ ।

**କାବ୍ୟର ନାମ କରଣ—** ଲକ୍ଷଣରେ ନିର୍ଦ୍ଦେଶ ଅଛି ଯେ, କାବ୍ୟର ନାମ ଗର୍ଭିତାର୍ଥ ପ୍ରକାଶକ ବା ପ୍ରଧାନ ପାତ୍ରର ନାମରେ ନାମିତ ହେବା ଉଚିତ ।

କବି ନାୟିକାର ମହତ୍ତ୍ୱ ପ୍ରତିପାଦନ ଉଦ୍ଦେଶ୍ୟରେ କାଳ୍ପନିକ କାବ୍ୟ ଗୁଡ଼ିକୁ ସୃଷ୍ଟି କରିଥିବାରୁ ସର୍ବତ୍ର ନାୟିକାର ନାମ ନିର୍ଦ୍ଦେଶ କରି କାବ୍ୟର ନାମକୁ ଆକର୍ଷଣୀୟ ଓ ହୃଦ୍ୟ କରି ପାରିଛନ୍ତି । ରସଲେଖା କାବ୍ୟ ନାୟିକାର ମହତ୍ତ୍ୱ ଉଦ୍‌ଘୋଷଣା କରେ ।

**ରସଚର୍ଯ୍ୟା** — କାବ୍ୟ ଜୀବନର ପ୍ରତିଲିପି । ତେଣୁ ଜୀବନର ସାମଗ୍ରିକ ପ୍ରତିଫଳନ ବା ପରିଚର୍ଯ୍ୟା ଆବଶ୍ୟକ । କାବ୍ୟର ମୁଖ୍ୟ ଲକ୍ଷ୍ୟ ଆନନ୍ଦ ଦାନ । ତାହା କାବ୍ୟାତ୍ମା ରସର ଅଭିବ୍ୟକ୍ତିରେ ସାଧିତ ହୁଏ । ମହାକାବ୍ୟର ମୁଖ୍ୟ ରସ ଶୃଙ୍ଗାର, ବୀର, କରୁଣ ଓ ଶାନ୍ତ ମଧ୍ୟରୁ ଅନ୍ୟତମ ହେବା ବିଧେୟ । ଅନ୍ୟାନ୍ୟ ରସ ପରିପୋଷକ ଭାବେ ରହି କାବ୍ୟକୁ ପୂର୍ଣ୍ଣାଙ୍ଗ ରୂପ ଦେଇଥାଏ । ରସଲେଖା କାବ୍ୟର ମୁଖ୍ୟ ରସ ଶୃଙ୍ଗାର ଓ ପରିପୋଷକ ଭାବେ ଏଥିରେ ଈଶ ବନ୍ଦନାରେ ଶାନ୍ତ, ଦୁର୍ଗା ଓ ଋଷିଙ୍କ ଦ୍ୱାରା ନାୟକଙ୍କୁ ସ୍ଥାନାନ୍ତର କରିବା କ୍ରିୟାରେ ଅଦ୍‌ଭୁତ ଓ ପୁତ୍ରର ଅଦର୍ଶନରେ ରାଜା ଭଦ୍ରବ୍ରତଙ୍କ ମାନସିକ ବେଦନାର ଚିତ୍ରଣରେ କରୁଣ ରସର ପରିପାକ ହୋଇଛି । ସଖୀଙ୍କ ପରିହାସରେ ହାସ୍ୟର ଆଭାସ ମିଳେ । କିନ୍ତୁ ବୀର-ବୀଭତ୍ସ ବା ରୌଦ୍ର ପାଇଁ ପରିବେଶ ନାହିଁ ।

ସାମଗ୍ରିକ ଭାବେ ଲକ୍ଷ୍ୟ କଲେ, କବିଙ୍କ ପ୍ରୌଢ଼, ପ୍ରତିଭାରୁ ଉଦ୍‌ଭୂତ ଶ୍ରେଷ୍ଠ କାବ୍ୟ ସୃଷ୍ଟିରେ ମହାକାବ୍ୟର ସମସ୍ତ ଲକ୍ଷଣ ଯେପରି ପୂର୍ଣ୍ଣାଙ୍ଗ ଭାବରେ ପ୍ରକାଶିତ ତାହା ପ୍ରତିଭାର ଉନ୍ମେଷ କାଳରେ ସୃଷ୍ଟ ରସଲେଖାରେ ସମ୍ଭବ ନୁହେଁ । କିନ୍ତୁ ଅନୁଭୂତ ହୁଏ, ମହାକାବ୍ୟ ଲକ୍ଷଣ ଆଧାରିତ ଗ୍ରନ୍ଥ ସୃଷ୍ଟି ପାଇଁ କବିଙ୍କ ଆଗ୍ରହ ଓ ସଚେତନା ଅତି ସ୍ପଷ୍ଟ ।

ଏତଦ୍‌ବ୍ୟତୀତ ଉପେନ୍ଦ୍ରଙ୍କ କାବ୍ୟଶୈଳୀ ଯେଉଁ ସବୁ ବୈଶିଷ୍ଟ୍ୟ ଲାଗି ଆଲୋଚିତ ବା ଯେଉଁ ରଚନା ରୀତି ପାଇଁ କବି ବନ୍ଦିତ ବା ନିନ୍ଦିତ, ସେ ସମସ୍ତ ପ୍ରତିଭା ଉନ୍ମେଷ କାଳରେ ସୃଷ୍ଟ ରସଲେଖାରେ କେତେ ଦୂର ସଂରକ୍ଷିତ, ତାହାର ସମୀକ୍ଷା କରାଯାଇ ପାରେ ।

ଉପେନ୍ଦ୍ର ଓ ରାଧାନାଥଙ୍କୁ କେନ୍ଦ୍ର କରି ଇନ୍ଦ୍ରଧନୁ ଏବଂ ବିଜୁଳି ପତ୍ରିକା ମାଧ୍ୟମରେ ଆଜକୁ ଠିକ୍ ଶହେ ବର୍ଷ ତଳେ ଯେଉଁ ଆଲୋଚନାର ଶ୍ରୀ ଗଣେଶ ହୋଇଥିଲା, ତାହା ଆଜିଯାଏ ଜୀବନ୍ତ ଓ ଗତିଶୀଳ । ଏ ମଧ୍ୟରେ ଭଞ୍ଜଙ୍କ ସୃଷ୍ଟିକୁ ଆକ୍ଷେପ କରିଥିବା ବିଶିଷ୍ଟ ବ୍ୟକ୍ତି ହେଲେ ମନମୋହନ ଚକ୍ରବର୍ତ୍ତୀ, ବିଶ୍ୱନାଥ କର, ବିଜୟ ଚନ୍ଦ୍ର ମଜୁମଦାର, ମାୟାଧର ମାନସିଂହ, ନଟବର ସାମନ୍ତରାୟ ଓ

ଜାନକୀ ବଲ୍ଲଭ ମହାନ୍ତି । ଭଞ୍ଜଙ୍କ ସ୍ତାବକ ଭାବେ ମୁଖ୍ୟତଃ ନୀଳକଣ୍ଠ ଦାସ, ଆର୍ତ୍ତ ବଲ୍ଲଭ ମହାନ୍ତି, ଚିତ୍ତରଞ୍ଜନ ଚରଣ ପଟ୍ଟନାୟକ, ଜୟକୃଷ୍ଣ ମିଶ୍ର ଓ ଗୌରୀ କୁମାର ବ୍ରହ୍ମାଙ୍କୁ ଗ୍ରହଣ କରାଯାଇ ପାରେ । ସେମାନଙ୍କ ପ୍ରଦର୍ଶିତ ଦୋଷ-ଗୁଣର ଖଣ୍ଡନ ମଣ୍ଡନ ପରେ ଅବଶିଷ୍ଟ ରହୁଥିବା କେତେଗୋଟି କଥା ପ୍ରକାଶନ ଯୋଗ୍ୟ ମନେ ହୁଏ । ଉପେନ୍ଦ୍ରଙ୍କ କେତେକ କବିତା ଦୁର୍ବୋଧ, ଶବ୍ଦ କାଠିନ୍ୟରେ ଭାରାକ୍ରାନ୍ତ ଓ ଅଶ୍ଳୀଳ । ଯୁଗାନୁବୋଧରେ ପରକୀୟା ପ୍ରୀତି ସମ୍ବଳିତ କାବ୍ୟ ରଚନା କରିଥିଲେ ମଧ୍ୟ ସ୍ୱକୀୟା ପ୍ରୀତିର ଆଦର୍ଶ ପ୍ରତିଷ୍ଠା କରି ଯାଇଛନ୍ତି । ଓଡ଼ିଆ ଭାଷାକୁ ସଂସ୍କୃତ ସମକକ୍ଷ ମର୍ଯ୍ୟାଦା ପ୍ରଦାନ ଲକ୍ଷ୍ୟରେ ସଂସ୍କୃତ ଭଣ୍ଡାରରେ ଥିବା ସମସ୍ତ ଶବ୍ଦରାଜି ଓ ନୈଷଧ ପ୍ରୀତିକୁ ନିଜ କୃତିରେ ଗଚ୍ଛିତ କରିଛନ୍ତି । ଭଞ୍ଜୀୟ କବିତାର ସାଙ୍ଗୀତିକ ମାଧୁର୍ଯ୍ୟ ମୂର୍ଖଠାରୁ ପଣ୍ଡିତ ପର୍ଯ୍ୟନ୍ତ ସମସ୍ତଙ୍କୁ ମୁଗ୍ଧ ଚକିତ କରନ୍ତି । ଭଞ୍ଜୀୟ କବିତାରେ ବ୍ୟବହୃତ ଉପମା ଓ କବିତାର ଅର୍ଥଗୌରବ ମହତ୍ତ୍ୱପୂର୍ଣ୍ଣ ଇତ୍ୟାଦି । ଏ ସମସ୍ତ ଦୋଷ ଗୁଣକୁ ଦୃଷ୍ଟିରେ ରଖି ଆଲୋଚ୍ୟ କାବ୍ୟ ରସଲେଖାର ବିଚାର କରାଯାଇ ପାରେ ।

**ଦୁର୍ବୋଧ୍ୟ ଓ ଶବ୍ଦ କାଠିନ୍ୟ—** କବିତାଟି ଯେତେବେଳେ ଦୁର୍ବୋଧ ହୁଏ, ଯେତେବେଳେ କବିତାରୁ ପାଠକ ଭାବ ପ୍ରକାଶର ସୂତ୍ର ପାଇ ପାରେନା । ଅପ୍ରଚଳିତ, ଖଣ୍ଡିତ ବା ବିକୃତ ଶବ୍ଦ, ଅପ୍ରସିଦ୍ଧ ଉପମା ବା ଚିତ୍ରକଳ୍ପ, ଗୌଣାର୍ଥରେ ଶବ୍ଦର ପ୍ରୟୋଗ, ଅନ୍ତର୍ଲିପି, ବହିର୍ଲିପି, ଚ୍ୟୁତଦତ୍ତାକ୍ଷର ବା ଚିତ୍ରବନ୍ଧ, କାବ୍ୟକୁ ଦୁର୍ବୋଧ ବା ଶବ୍ଦ କାଠିନ୍ୟରେ ଭାରାକ୍ରାନ୍ତ କରି ପାଠକର ଅବବୋଧକୁ ବିଲମ୍ବିତ କରିଥାଏ ।

ଏ ଦୃଷ୍ଟିରୁ ବିଚାର କଲେ ରସଲେଖା ଏ ସମସ୍ତ ଦୋଷରୁ ସମ୍ପୂର୍ଣ୍ଣ ମୁକ୍ତ । କେବଳ ନାୟିକାର ପ୍ରେମ ପତ୍ରରେ ଗୋଟିଏ ସ୍ଥଳରେ ଅନ୍ତର୍ଲିପିର ପ୍ରୟୋଗ ରହିଛି । କାବ୍ୟ ନାୟିକା ରାଜକୁମାରୀ ଦୂତୀ ହସ୍ତରେ ପତ୍ର ପ୍ରେରଣ କରିଥିବାରୁ ସ୍ୱୀୟ ମନୋଭାବର ସଂଗୋପନ ପାଇଁ ଏହି ଚିତ୍ରକର୍ମର ପ୍ରୟୋଗ କରିଛି । କାବ୍ୟର ଅନ୍ୟ କୌଣସି ସ୍ଥାନରେ ଶବ୍ଦର ଅପପ୍ରୟୋଗ ହୋଇ ନାହିଁ । ବରଂ କୁହାଯାଇ-ପାରେ ଉପେନ୍ଦ୍ର ରସଲେଖା ପରବର୍ତ୍ତୀ ସୃଷ୍ଟିରେ ଶବ୍ଦର ଇନ୍ଦ୍ରଜାଲ ସୃଷ୍ଟି କରି ଏକାକ୍ଷର, ଦ୍ୱ୍ୟକ୍ଷର, ନିରୋଷ୍ଠକ, ସରୋଷ୍ଠକ, ଗୋମୂତ୍ର, ମେଷଯୁଦ୍ଧ, ଅବନା, ଅନୁଲୋମ, ବିଲୋମ ଓ ପଦ୍ମବନ୍ଧ, ରଥବନ୍ଧ, ସର୍ପବନ୍ଧ ଆଦି ସଂଯୋଜନ କରିଛନ୍ତି, ତାହାର ସାମାନ୍ୟତମ ସୂଚନା ଏଥିରେ ନାହିଁ । ବରଂ ଏ କାବ୍ୟ କବିଙ୍କ ରସଦୀପ୍ତ ହୃଦୟର ଅନବଦ୍ୟ ପ୍ରକାଶ ମାତ୍ର ।

**ଅଶ୍ଳୀଳ—** ଉପେନ୍ଦ୍ର ସାହିତ୍ୟକୁ କେତେକ ଆଲୋଚକ ଅଶ୍ଳୀଳ ଆଖ୍ୟା ଦେଇଛନ୍ତି । ବାସ୍ତବରେ ଅଶ୍ଳୀଳ ଏକ ଆପେକ୍ଷିକ ଶବ୍ଦ । ସ୍ଥାନ, କାଳ, ପାତ୍ର ଓ

ଭଙ୍ଗୀ ଭେଦରେ ଶ୍ଳୀଳ ଅଶ୍ଳୀଳରେ ଓ ଅଶ୍ଳୀଳ ଶ୍ଳୀଳରେ ପରିଣତ ହୁଏ । ତଥାପି ଯେଉଁ କବିତା ଗୁରୁ ଶିଷ୍ୟ-ଶିଷ୍ୟାଙ୍କୁ ପଢ଼ାଇବାରେ ସଙ୍କୋଚ କରନ୍ତି ବା ଯେଉଁ କବିତା ପିତା, ମାତା, ଭ୍ରାତା, ଭଗିନୀ, ବନ୍ଧୁ ଆଦିଙ୍କ ଏକତ୍ର ପାଠନ ଯୋଗ୍ୟ ନୁହେଁ, ତାହାକୁ ଅଶ୍ଳୀଳ କହିବା ସମୀଚୀନ । ଅବଶ୍ୟ ଆଲୋଚକମାନେ କହନ୍ତି— ଅନ୍ୟର ବାଣୀ ଉଦ୍ଧୃତରେ ଏବଂ ଅଶ୍ଳୀଳତାକୁ ଦ୍ୱ୍ୟର୍ଥକ ଶବ୍ଦର ଗଣ୍ଡିରେ ସ୍ଥାପନ କଲେ ତାହା ଅଶ୍ଳୀଳ ନୁହେଁ । ତଥାପି ନାୟିକାର ଗୁହ୍ୟାଙ୍ଗ ବର୍ଣ୍ଣନା, ରଜସ୍ୱଳା, ନାୟିକାର ଯୌନାଙ୍ଗର ଚିତ୍ର ପ୍ରଦାନ, ପ୍ରେମିକ-ପ୍ରେମିକାଙ୍କ ସଂଭୋଗର ଉନ୍ମୁକ୍ତ ଚିତ୍ର ପ୍ରଦାନ ଅଶ୍ଳୀଳ ମନେହେବା ସ୍ୱାଭାବିକ ।

ରସଲେଖା କାବ୍ୟର ଗୋଟିଏ ପଦରେ (୧୫-୩୧) ନାୟିକାର ଗୁହ୍ୟାଙ୍ଗ ବର୍ଣ୍ଣିତ । ତାହା ବିଚିତ୍ର ଉପମାରେ ଆବୃତ ହୋଇ ଶ୍ଳୀଳତା ପରିହାର କରି ନାହିଁ । ଏ କାବ୍ୟର ଚତୁର୍ଦ୍ଦଶ ଛାନ୍ଦରେ ବିବାହିତ ପତି-ପତ୍ନୀଙ୍କ ମଧୁଶଯ୍ୟାରେ ଅନୁଷ୍ଠିତ ରତିକ୍ରୀଡ଼ା ବର୍ଣ୍ଣନାରେ ଗଣ୍ଡ ଓ ଅଧର ଚୁମ୍ବନ,ରସନା ମିଳନ,ସ୍ତନ ମର୍ଦ୍ଦନ, ନଖ କ୍ଷତ,ଗଣ୍ଡରେ ଦନ୍ତାଘାତ, ଆଲିଙ୍ଗନ, ଜାନୁକକ୍ଷ ମୂଳରେ ନଖାଘାତ, ନାଭିରେ କନିଷ୍ଠାଙ୍ଗୁଳି ଚାଳନା, କୁଚଦ୍ୱୟ ଓ କର୍ଣ୍ଣରେ ରସନା ଚାଳନ,ତିଥି ପକ୍ଷ ଅନୁଯାୟୀ ଚନ୍ଦ୍ର ଚାଳନା,ନୀବିମୋଚନ ଆଦିର ଯେଉଁ ସୂଚନା ପ୍ରଦତ୍ତ ତାହାକୁ ଅଶ୍ଳୀଳ କହିବା ଅପେକ୍ଷା କାମ ଶାସ୍ତ୍ର ଅନୁମୋଦିତ ଶୃଂଗାର ଚିତ୍ର ପ୍ରଦାନରେ କବିଙ୍କ ଦକ୍ଷତା ପ୍ରକାଶିତ କହିବା ଯୁକ୍ତଯୁକ୍ତ ହେବ । ରସଲେଖା ଏକନିଷ୍ଠ ଦାମ୍ପତ୍ୟ ଜୀବନର ଆଲେଖ୍ୟ ବହନ କରେ ।

ଏତଦ୍‌ବ୍ୟତୀତ ଭଂଜୀୟ କାବ୍ୟ ନିର୍ମାଣ ଶୃଙ୍ଖଳାର ଅନ୍ୟ କେତେକ ଆଦ୍ୟ ଶଳ୍କ ଆବିଷ୍କାର କରାଯାଇପାରେ ।

**ଗୀତ ରଚନା ଅଭିଳାଷ**—କବି ରସିକ ପାଠକଙ୍କ ଚିତ୍ତ ବିନୋଦନ ପାଇଁ ରସଶାସ୍ତ୍ର ନିର୍ମାଣ କରିଥିବା ବହୁ ସ୍ଥଳରେ ସୂଚାଇ ଅଛନ୍ତି । ଏହି ରସପୂର୍ଣ୍ଣ କାବ୍ୟକୁ ଗୀତ, ଛାନ୍ଦ ଓ ଛାନ୍ଦଗୀତ ନାମରେ ନାମିତ କରିଛନ୍ତି—

କର ହେ ପୁଣ୍ୟଚିତ୍ତ ଗୀତ ରଚନା (୨-୨୩)
ରସ ବିଶେଷ ହୋଇ ହୃଦୟ ପୂରିଲା ବିଧାନ କରିବା ଛାନ୍ଦକୁ (୧୨-୨୬)
ଭଲ ଉପଇନ୍ଦ୍ର କହେ ଏ ଗୀତ (୧୮-୨୦)
ଏହି ଗୀତ ଦ୍ୱାବିଂଶତି ଛାନ୍ଦ (୨୨-୧୯)

କବି ପରବର୍ତ୍ତୀ ସୃଷ୍ଟିରେ ଏହି କଥା ହିଁ ବ୍ୟକ୍ତ କରିଛନ୍ତି—

ବିଚାରିଇ କରିବି ଉତ୍ତମ ଛାନ୍ଦ ଗୀତ ।
ଦ୍ୱିରସାର ଶୃଙ୍ଗାର ତହିଁରେ ହେବ ବ୍ୟକ୍ତ । (ଲ-ବ-୧-୭)

ରଚିବ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ଚରିତ
ସୁଜାତ ସୁମନା ପରି ହୋଇବ ଏ ଗୀତ (୧-୬୦)

**ପ୍ରଥମେ କାବ୍ୟ ନାୟିକାର ପରିଚୟ ପ୍ରଦାନ**— ଏ କାବ୍ୟରେ କାବ୍ୟ ନାୟିକା ରୂପଲେଖାର ଜନ୍ମ ବୃତ୍ତାନ୍ତ ପ୍ରଥମେ କବି ପ୍ରଦାନ କରିଛନ୍ତି । ପରେ କାବ୍ୟ ନାୟକର ପରିଚୟ ପ୍ରଦତ୍ତ । ସେହି ଯୁବତି ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ବୈଦେହୀଶ ବିଳାସ ଆଦିରେ ଅନୁସୃତ । ନାୟିକା ପ୍ରଧାନ କାବ୍ୟ ରଚନା ପ୍ରତି ମୋହ ହେତୁ କବି ଏପରି କରିଥିବା ସମ୍ଭବ ମନେହୁଏ ।

**ସୁକନ୍ୟା ପ୍ରାପ୍ତି ପାଇଁ ନାୟକର ଦେବୀ ଆରାଧନା** — ନାୟକ ପ୍ରଧାନ ସମାଜରେ ଉତ୍ତମ ନାୟିକା ପ୍ରାପ୍ତି ପାଇଁ ନାୟକର ଦେବୀ ଆରାଧନା କରିବା ଅଡ଼ୁଆ ଲାଗିପାରେ । ତେଣୁ କେତେକ ଆଲୋଚକ ଭଂଜଙ୍କ ଉପରେ ସୁଫୀ ମତବାଦର ପ୍ରଭାବ ଆବିଷ୍କାର କରିଛନ୍ତି । ଭାରତୀୟ ପରମ୍ପରାରୁ ଯେ କବି ଏ କଥା ଗ୍ରହଣ କରିଛନ୍ତି କହିବା ବାହୁଲ୍ୟ ମାତ୍ର ।

ଚଣ୍ଡୀ ସପ୍ତସତୀରେ ଭକ୍ତ ଦେବୀଙ୍କୁ ପ୍ରାର୍ଥନା କରି କହୁଛି—

"ଭାର୍ଯ୍ୟାଂ ମନୋରମାଂ ଦେହି ମନୋବୃତ୍ତ୍ୟନୁସାରିଣୀମ୍ ।
ଶ୍ରିୟଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥"

କବି ଭାରତୀୟ ସଂସ୍କୃତିର ଦାମ୍ପତ୍ୟ ହିସାବରେ ଚିନ୍ତା କରିଛନ୍ତି ଯେ, କନ୍ୟା ସୁନ୍ଦରୀ ଏବଂ ମନୋବୃତ୍ତି ଅନୁରୂପା ନହେଲେ ପାରିବାରିକ ଜୀବନ ସଂଯତ, ଶୃଙ୍ଖଳ ଓ ଗତିଶୀଳ ହେବା ସମ୍ଭବ ନୁହେଁ । ପରିବାର ହିଁ ଗ୍ରାମ-ସମାଜ ଓ ରାଷ୍ଟ୍ରର ପୁଂଜୀଭୂତ ଏକକ । ଏ କାବ୍ୟରେ ମଧ୍ୟ ନାୟକ ସୁକନ୍ୟା ପ୍ରାପ୍ତି ପାଇଁ ଦେବୀ ଅନୁଗ୍ରହ ଅଭିଳାଷୀ ହୋଇଛି—

ସେ ଶିବା ସେବାରେ ରତ ଜପ ଅନ୍ତେ ଦଣ୍ଡବତ,
କରି ସୁକନ୍ୟା ପ୍ରାପତି ମାଗଇ ନିତି ଏ । (୩-୨୦)

ଅନୁରୂପ ଚିନ୍ତା ପରବର୍ତ୍ତୀ ସୃଷ୍ଟି ଲାବଣ୍ୟବତୀରେ ମଧ୍ୟ ପ୍ରତିଫଳିତ ।

ତପ ତା ଅକଥନୀୟ ଦିବ୍ୟ ନାରୀ ଶ୍ରଦ୍ଧେ,
ପଞ୍ଚାଗ୍ନି ସ୍ଥାପନ କରେ ତପ ଋତୁ ମଧ୍ୟେ । (୧-୨୭)

**କବିଙ୍କ ସ୍ୱୀୟ ନାମ ନିର୍ଦ୍ଦେଶ** – ସମସ୍ତ କୃତିର ଛାନ୍ଦ ଶେଷରେ କବିଙ୍କ ନାମ ଉଦ୍‌ଘୋଷଣା ଦେଖିବାକୁ ମିଳେ । କେତେକରେ ପିତ.–ପିତାମହ, ବଂଶ ଆଦିର ଉଲ୍ଲେଖ ଅଛି । ସ୍ଥଳ ବିଶେଷରେ ନିଜକୁ ବୀରବର, ମଙ୍ଗରାଜ, ନୃପକୁମାର, ନୀଳକଣ୍ଠଙ୍କ ଜ୍ୟେଷ୍ଠ ପୁତ୍ର ଆଦି ବିଶେଷଣର ସୂଚନା ଦେଇଛନ୍ତି । ରସଲେଖାରେ କବି ଗୋଟିଏ ପଦରେ "ନୀଳକଣ୍ଠ ନୃପ ସୁତ" ତିନୋଟି ଛାନ୍ଦ ଶେଷରେ ଉପଇନ୍ଦ୍ର ଓ ବହୁ ପଦରେ ଉପଇନ୍ଦ୍ର ଭଂଜ ରୂପେ ନିଜ ନାମ ନିର୍ଦ୍ଦେଶ କରିଛନ୍ତି । ଏହା କେବଳ ଭଂଜୀୟ ଶୃଙ୍ଖଳା ନୁହେଁ; ପ୍ରାଚୀନ ଓ ମଧ୍ୟଯୁଗୀୟ ସୃଷ୍ଟିରେ ଛାନ୍ଦ ଶେଷରେ ରଚକ ନିଜ ନାମ ପ୍ରଦାନ କରୁଥିଲେ ।

**ନାୟିକାର ରୂପ ବର୍ଣ୍ଣନା**-- ଉପେନ୍ଦ୍ରଙ୍କ ନାୟିକା ପ୍ରଧାନ କାବ୍ୟରେ ନାରୀର ରୂପ ଚିତ୍ରଣ ପ୍ରାୟ ଅର୍ଦ୍ଧାଧିକ ସ୍ଥାନ ଅଧିକାର କରିଥିବା ଅନୁଭୂତ ହୁଏ । କବି କାବ୍ୟ ନାୟିକାର ରୂପ ଚିତ୍ର ନିଜ ମୁଖରେ, ନାୟକ ମୁଖରେ, ଦୂତ-ଦୂତୀଙ୍କ ମୁଖରେ ବାରମ୍ବାର ପ୍ରଦାନକରି ସୁଦ୍ଧା କ୍ଳାନ୍ତ ଅନୁଭବ କରିନାହାନ୍ତି । ଉପମାର ପୁନରାବୃତ୍ତି ଘଟିଛି । ବୋଧହୁଏ କବିଙ୍କ ଚିତ୍ରିତ ନାରୀର ମାଦକତା ମୂର୍ତ୍ତି କାନ୍ତି ବହୁ ରୂପରେ ଫୁଟାଇ ମଧ୍ୟ କବି ତୃପ୍ତି ଲଭି କରିପାରି ନାହାନ୍ତି । ତେଣୁ ତାଙ୍କର ମାନସ କନ୍ୟା ରସଲେଖା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ପରିଣତ ହୋଇ ମଧ୍ୟ ଅପୂର୍ଣ୍ଣ ।

**କାବ୍ୟାଦର୍ଶର ଉପସ୍ଥାପନା**— ରସଲେଖାରେ କାବ୍ୟାଦର୍ଶର ଆଦୌ ସୂଚନା ନାହିଁ । କେବଳ ସୁଜନ ମନୋରଞ୍ଜନ ହୋଇବ ଏ ଗୀତ (୧-୧୦) ଉଲ୍ଲେଖ ରହିଛି । କିନ୍ତୁ ପରବର୍ତ୍ତୀ କାବ୍ୟ ଗୁଡ଼ିକରେ କାବ୍ୟାଦର୍ଶର କ୍ରମ ବିକାଶ ଘଟିବା ସଙ୍ଗେସଙ୍ଗେ ଅଧିକ ସ୍ପଷ୍ଟ ଓ ମାର୍ଜିତ ହୋଇ ଭଂଜୀୟ ଆଦର୍ଶକୁ ପ୍ରତିଷ୍ଠା ଦେଇ ପାରିଛି ।

**ଧର୍ମୀୟ ଧାରଣା** – ରସଲେଖାରେ କବି ହରିହର ସ୍ତୁତି କରି ମଙ୍ଗଳାଚରଣ କରିଛନ୍ତି । କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ରାମତାରକ ମନ୍ତ୍ରରେ ସିଦ୍ଧି ଲଭି କରିଥିବା, ଓଡ଼ିଶାର ଆରାଧ୍ୟ ଦେବ ଜଗନ୍ନାଥଙ୍କ ବନ୍ଦନା ସହିତ ସୂର୍ଯ୍ୟ, ଦୁର୍ଗା, ଗଣେଶ ପ୍ରଭୃତିଙ୍କ ବନ୍ଦନା କରିଥିବା ଅନୁଭୂତ ହୁଏ । ମନେହୁଏ କବି ପଞ୍ଚଦେବତା ପୂଜକ ଥିଲେ ଓ ଜୀବନର ଶେଷ ପର୍ଯ୍ୟାୟରେ ସେ ଜଗନ୍ନାଥ ଓ ରାମଙ୍କ ଠାରେ ସର୍ବ ଦେବତାର ସମ୍ମିଳିତ ରୂପ ସନ୍ଦର୍ଶନ କରିଛନ୍ତି ।

**ବିଭିନ୍ନ ରାଗରେ ଛାନ୍ଦ ରଚନା**— କବି ଉପେନ୍ଦ୍ର ନିଜର ସମଗ୍ର ସୃଷ୍ଟିରେ ପ୍ରାୟ ୭୫ ପ୍ରକାର ଛାନ୍ଦ ବ୍ୟବହାର କରିଛନ୍ତି । ସେ ମଧ୍ୟରୁ ରସଲେଖାରେ

୨୨ ପ୍ରକାର ଛନ୍ଦ ବ୍ୟବହୃତ । ଅଷ୍ଟାଢ଼ ଶୁକ୍ରବାଣୀ, କଉଶିକ, କଳସା, କାଳୀ ପ୍ରଭୃତି କେତେକ ରାଗ ପରବର୍ତ୍ତୀ କାବ୍ୟରେ ମଧ୍ୟ ସଂଯୋଜିତ । ମଧ୍ୟ ଯୁଗରେ ବିଶ୍ୱନାଥ ଖୁଣ୍ଟିଆଙ୍କ ବ୍ୟତୀତ ଅନ୍ୟ କୌଣସି କବି ଏତେ ଅଧିକ ସଂଖ୍ୟକ ରାଗ ବ୍ୟବହାର କରି ନାହାନ୍ତି । ଉପେନ୍ଦ୍ରଙ୍କ ପ୍ରିୟ ବୃତ୍ତ କୌଶିକ, କାଳୀ, କଳସା ଗୌଡ଼ା, ଶଙ୍କରାଭରଣ ଆଦି ମଧ୍ୟରୁ କୌଶିକ, କାଳୀ . ଆଦି ରସଲେଖାକୁ ମାଧୁର୍ଯ୍ୟପୂର୍ଣ୍ଣ କରିପାରିଛି ।

**ଅଳଙ୍କାର ପ୍ରୟୋଗ—** ଶବ୍ଦ ଅର୍ଥାତ୍ମକ ଉଭୟବିଧ ଅଳଙ୍କାର ପ୍ରୟୋଗରେ ଉପେନ୍ଦ୍ର ଧୁରୀଣ । ଅଳଂକାର ଅଭିଜ୍ଞ ପାଠକ ଗୋଷ୍ଠୀକୁ ତାଙ୍କର କାବ୍ୟ ବିବେଚନା ପାଇଁ ଆହ୍ୱାନ ଏହାକୁ ସମର୍ଥନ କରେ ।

ନାନା ଶବଦରେ ଯେ ବିଚକ୍ଷଣ, ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହୁ କରୁ ଏ ଛାନ୍ଦ ବିବେଚନା ( କୋ. ବ୍ର. ସୁ. ୩–୧ )

**ଶବ୍ଦାଳଂକାର-**ଶବ୍ଦାଲଙ୍କାର ମଧ୍ୟରେ ଯମକ ଓ ଅନୁପ୍ରାସ ପ୍ରଧାନ । କବି ପରବର୍ତ୍ତୀ ସୃଷ୍ଟିରେ ବିଭିନ୍ନ ପ୍ରକାର ଯମକ ଯଥା-ଆଦ୍ୟ, ପ୍ରାନ୍ତ, ମଧ୍ୟ, ମାଳ, ଦ୍ୱିକ, ଦ୍ୱିପାଦ ଆଦି ବ୍ୟବହାର କରି ସାଂଗୀତିକ ମାଧୁର୍ଯ୍ୟ ଓ ପାଣ୍ଡିତ୍ୟ ପ୍ରଦର୍ଶନ କରିଛନ୍ତି । ଆଲୋଚ୍ୟ କାବ୍ୟର ଚତୁର୍ଥ ଛାନ୍ଦରେ ଦ୍ୱିପାଦ ଯମକ ରହିଛି ଓ ସମଗ୍ର ଏକାଦଶ ଛାନ୍ଦଟି ଯମକାଳଂକାରରେ ପୂର୍ଣ୍ଣ ।

କାବ୍ୟରେ ସର୍ବତ୍ର ଅନୁପ୍ରାସ ଅଳଂକାର ରହିଛି । କବିଙ୍କ ବନ୍ଧମାନ ପ୍ରତିଭା ପାଣ୍ଡିତ୍ୟ ଅଭିମୁଖୀ ହୋଇ ପୁନରୁକ୍ତ ବଦାଭାସ, ବକ୍ରୋକ୍ତି, ଶ୍ଳେଷ ପ୍ରଭୃତି ବହୁବିଧ ଶବ୍ଦାଳଂକାରରେ କାବ୍ୟଜଗତକୁ ଆଚ୍ଛନ୍ନ କରି ରଖିଛି ।

**ଅର୍ଥାଳଂକାର—**ଉପେନ୍ଦ୍ରଙ୍କ କାବ୍ୟ ଅର୍ଥାଳଂକାରରେ ପୂର୍ଣ୍ଣ । ସଂସ୍କୃତ ଅଳଂକାର ଗ୍ରନ୍ଥରେ ପ୍ରଦର୍ଶିତ ସମସ୍ତ ଅଳଂକାରକୁ ସେ ନିଜ ସୃଷ୍ଟିରେ ସଂଯୋଜନ କରିଛନ୍ତି । ସେ ମଧ୍ୟରେ ଉପମା ଗର୍ଭିତ ରୂପକ, ଦୃଷ୍ଟାନ୍ତ, ବ୍ୟତିରେକ, ଉତ୍ପ୍ରେକ୍ଷା ଆଦି ପ୍ରଧାନ ଭାବେ ଦୃଷ୍ଟି ଆକର୍ଷଣ କରେ । ଏହି ଅଳଂକାର ବିଶେଷର ସଂଯୋଜନ ଦକ୍ଷତା ଲକ୍ଷ୍ୟ କରି ଆଲୋଚକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଘୋଷଣା କରିଥିଲେ —

"ଉପମା ଭଂଜ ଖାରସ୍ୟ—"

ବାସ୍ତବରେ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ରଙ୍କ ସମକକ୍ଷ ଅଳଂକାର ପ୍ରିୟ କବି ବିରଳ । ଉପେନ୍ଦ୍ରଙ୍କ କାବ୍ୟ ନାୟିକା ଅଳଂକାରରେ ମନୋରମା, ଆଳଂକାରିକ ଭାମହ କହନ୍ତି—"ନ କାନ୍ତମପି ନିର୍ଭୂଷଂ ବିଭାତି ବନିତାମୁଖମ୍" । ଉପେନ୍ଦ୍ରଙ୍କ ପରବର୍ତ୍ତୀ ସୃଷ୍ଟିରେ ଅଳଂକାରର ଯେଉଁ ମନୋଜ୍ଞ ପ୍ରକାଶ ମିଳେ ତାର ଆଦ୍ୟ ସୌରଭ ରସଲେଖାରେ ପରିବ୍ୟାପ୍ତ । ଉଦାହରଣ-ସ୍ୱରୂପ—ଉତ୍ପ୍ରେକ୍ଷାଳଂକାର ମାଧ୍ୟମରେ ବ୍ୟଂଜିତ କାବ୍ୟ ନାୟିକାର କୁଚ ଶୋଭା ଲକ୍ଷ୍ୟ କରାଯାଇପାରେ ।

କିଏ କୃଷ୍ଣ ବାଳନୀଳା କନ୍ଦୁକ, କି ଏ ରତି ରଂଜନ ସମ୍ପୁଟକ ।
କିଏ ଲାବଣ୍ୟସର ଚକ୍ରବାକ, କି ଏ ନବ ସରସିଜ କୋରକ । (୫-୧୨)

ଏପରି ଉଦାହରଣରେ ସରସ, କୋମଳ ପଦାବଳୀ ଓ ଉପମାର ମାଧୂର୍ଯ୍ୟ ଉପଭୋଗ୍ୟ ।

**ପ୍ରେମ ପତ୍ର ସଂଯୋଜନ**— ଉପେନ୍ଦ୍ରଙ୍କ କାବ୍ୟରେ ମିଳନ ପୂର୍ବରୁ ଏବଂ ପରେ ନାୟକ-ନାୟିକାଙ୍କ ମଧ୍ୟରେ ପ୍ରେମ ପତ୍ର ବିନିମୟ ଏକ ଉଲ୍ଲେଖ ଯୋଗ୍ୟ ଭୂମିକା ଗ୍ରହଣ କରେ । ପରବର୍ତ୍ତୀ ସୃଷ୍ଟି ପ୍ରେମସୁଧାନିଧି, ଲାବଣ୍ୟବତୀ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ଏହାର ମାଧୂର୍ଯ୍ୟ ଉପଭୋଗ୍ୟ । କିନ୍ତୁ ରସଲେଖାରେ ଏହାର ଗୁରୁତ୍ୱ କମ୍ ମହତ୍ତ୍ୱପୂର୍ଣ୍ଣ ନୁହେ । ପ୍ରେମ ପତ୍ର ମଧ୍ୟରେ ଉଭୟଙ୍କ ଗୃହୀତୃପ୍ତତା, ନିଜକୁ ନଗଣ୍ୟ ଏବଂ ଅନ୍ୟକୁ ସର୍ବଗୁଣାଧାର ଭାବେ ପ୍ରକାଶ କରି କବି ସ୍ୱକୀୟ ଶୈଳୀର ଗୁରୁତା ପ୍ରଦର୍ଶନ କରିଛନ୍ତି ।

**ଭାରତୀୟ ଦେଶ ବିଶେଷର ନାମ ନିର୍ଦ୍ଦେଶ**— ଭଂଜୀୟ କାବ୍ୟ ଆଞ୍ଚଳିକ ସୀମାରେ ଆବଦ୍ଧ ନୁହେ । କବି ଉତ୍କଳ ଭିନ୍ନ ଅନ୍ୟ ପ୍ରଦେଶର ରାଜକନ୍ୟା ଓ ରାଜକୁମାରଙ୍କ ମିଳନ ସଂଘଟନ କରାଇ ସର୍ବଭାରତୀୟ ଚରିତ୍ରକୁ ନିଜ ସୃଷ୍ଟିରେ ଗର୍ଭିତ କରିଛନ୍ତି । କନ୍ୟା ଅନୁରୂପ ଜାମାତା ଅନୁସନ୍ଧାନରେ ରାଜାମାନେ ଚିତ୍ରପଟ ବିଭିନ୍ନ ଦେଶକୁ ପ୍ରେରଣ କରିଛନ୍ତି । ସେ ଅବସରରେ କବି ବିଭିନ୍ନ ଦେଶର ନାମଗତ ବୈଶିଷ୍ଟ୍ୟ ପ୍ରଦର୍ଶନ କରି ନିଜକୁ ସର୍ବଭାରତୀୟ କବି ଭାବେ ଦର୍ଶାଇ ଅଛନ୍ତି । ରସଲେଖାରେ ତାର ଆଦ୍ୟ ପ୍ରକାଶନ ଦେଖିବାକୁ ମିଳେ । ଏଥିରେ ନିଖୋଜ ନାୟକର ସନ୍ଧାନ ପାଇଁ ଦୂତ ପ୍ରେରଣରେ ଦେଶ ବିଶେଷର ନାମ ଉଟ୍ଟଂକିତ ।

**ନୈଷଧୀୟ ଶୈଳୀର ଅନୁବର୍ତ୍ତନ**— ଉପେନ୍ଦ୍ର ସଂସ୍କୃତ ସାହିତ୍ୟରେ ଅବଗାହନ କରି ଓଡ଼ିଆ ଭାଷାରେ ସଂସ୍କୃତି ଷଟ୍‌କାବ୍ୟ ଅନୁରୂପ କାବ୍ୟରଚନା

ଅଭିଳାଷ ପୋଷଣ କରିଥିବା ଲକ୍ଷ୍ୟ କରାଯାଏ । ସେ ମଧ୍ୟରେ ମହାକବି ଶ୍ରୀହର୍ଷଙ୍କ ନୈଷଧୀୟ ଚରିତ କବିଙ୍କୁ ବିଶେଷଭାବେ ଉଦ୍‌ବୁଦ୍ଧ କରିଛି । ସେ ଗ୍ରନ୍ଥକୁ ବାରମ୍ବାର ଅନୁଶୀଳନ କରି ତାର ରସ ସୌନ୍ଦର୍ଯ୍ୟ ଅଳଂକାର ଗାମ୍ଭୀର୍ଯ୍ୟ ଓ ପ୍ରକାଶ ଭଂଗୀକୁ ନିଜ ସୃଷ୍ଟିରେ ଗର୍ଭିତ କରିବା ଏକ ଗୌରବାବହ କର୍ମ ମନେ କରନ୍ତି । ତେଣୁ ସ୍ପଷ୍ଟ ଶବ୍ଦରେ ଘୋଷଣା କରିଛନ୍ତି—

"ଯେନ ନୈଷଧ ପରିସ୍ପେ—" ( କୋ . ବ୍ର. ସୁ. ୧୧–୩୦ )

ପ୍ରତିଭା ଉନ୍ମେଷର ପ୍ରାକ୍ କାଳରେ ଲିଖିତ ରସଲେଖାରେ ମଧ୍ୟ ନୈଷଧୀୟ ସୌନ୍ଦର୍ଯ୍ୟର ଅନୁବର୍ତ୍ତନ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ—

"ଜଣେ ବୋଇଲା ଏ କଥା ନ କହ ସଙ୍ଗାତ
ହୋଇଥିବ ଅବା ସେହୁ ଅତି ହିଁ କ୍ୱଥିତ ।
ବିକାଶ କରିଅ ସେହି କୃଷ୍ଣସାର ଗୋଟି,
କ୍ରମେ କ୍ରମେ ଯାଉ ଥିନା ମଣ୍ଡଳକୁ ଘୋଟି ।" (୮–୧୬)

ନୈଷଧୀୟ ଚରିତରେ କରାଯାଇଥିବା ବିରହିଣୀ କାବ୍ୟ ନାୟିକାର ଚନ୍ଦ୍ର ଉପାଳମ୍ଭରେ ଏହି ଭାବରେ ଗ୍ରସ୍ତା ଅନୁସନ୍ଧେୟ ।

ଶ୍ରବଣ ପୁର ତମାଳ ଦଳାଂକୁରଂ ଶଶି କୁଂରଙ୍ଗମୁଖେ ସଖି ନିକ୍ଷିପ
କିମପି ତୁନ୍ଦିଳିତଃ ସ୍ଥଗୟତ୍ୟମୁଂ ସପଦଦତେନ ତଦୃକ୍ଷ୍ୟସିମ କ୍ଷଣମ୍ । (୪–୫୬)

**ଉପମା ପ୍ରୟୋଗ**— ଉପେନ୍ଦ୍ରଙ୍କ ସମସ୍ତ ନାୟିକା ପ୍ରଧାନ କାବ୍ୟରେ ନାୟିର ପ୍ରତ୍ୟେକ ଅଙ୍ଗ-ପ୍ରତ୍ୟଙ୍ଗର ମନୋହର ଚିତ୍ରଣ ଦେଖିବାକୁ ମିଳେ । କବି ସେହି ଅଂଗର ରୂପ ଚିତ୍ର ପ୍ରଦାନ ପଦାର୍ଥ ପ୍ରକୃତି, ପଶୁ ପକ୍ଷୀ, ମାନବ ବ୍ୟବହାର୍ଯ୍ୟ ବସ୍ତୁ, ଲଳିତ କଳା ଓ କଳ୍ପନାରୁ ବହୁ ଉପମା ଆହରଣ କରିଛନ୍ତି । ରସଲେଖାରେ ପ୍ରଯୁକ୍ତ ଉପମା ମଧ୍ୟରୁ ବହୁ ଉପମା ପରବର୍ତ୍ତୀ ସୃଷ୍ଟିରେ ସଂଯୋଜିତ ଓ କେତେକ ଉପମା ପରିହାର କରି ନୂତନ ଉପମା ଗୃହୀତ । ନାୟିର ମୁଖ-ନେତ୍ର, କେଶ, ଭ୍ରୂଲତା, କୁଚ, ହାସ, ଅଧର, ରୋମାଳି ପ୍ରଭୃତି ବିଶିଷ୍ଟ ଆକର୍ଷକ ଅଂଗ ବହୁବିଧ ଉପମାରେ ଚର୍ଚ୍ଚିତ । ଏ କାବ୍ୟରେ କୁଚ ଓ ନେତ୍ର ବର୍ଣ୍ଣନା ଦୃଷ୍ଟି ଆକର୍ଷ କରେ । ନାୟକ-ନାୟିକାକୁ ଲୌହ ଚୁମ୍ବକ, ଚନ୍ଦ୍ରମା-ଚନ୍ଦ୍ରମଣି, ଚନ୍ଦ୍ର-ଚକୋର, କୁମୁଦ-ଚନ୍ଦ୍ର, ଅନଳ-ପତଙ୍ଗ, କାଞ୍ଚନ-କାଚ, ଭୃଙ୍ଗ-ମଧୁ, ସୂର୍ଯ୍ୟ-ପଦ୍ମ, ସେବକ – ପ୍ରଭୁ ଆଦି କହିବା ରୀତି ଉପେନ୍ଦ୍ରଙ୍କ ପ୍ରତ୍ୟେକ କାବ୍ୟରେ ବିଳସିତ ।

ବର୍ଣ୍ଣନା ସମତା—ରସଲେଖାରେ ହୋଇଥିବା ବର୍ଣ୍ଣନାର ଅନୁରୂପ ଓ ମୂଳ ବିଶେଷରେ ପ୍ରତିଭା ବିକାଶରେ ଉନ୍ନତ ପ୍ରକାଶ ଭଙ୍ଗୀ ଦେଖିବାକୁ ମିଳେ । ଏଥିରେ ଉଂଜଣଙ୍କ କାବ୍ୟ ଶୃଙ୍ଖଳାର ଆଦ୍ୟ ଆଲେଖ୍ୟ ରୂପେ ରସଲେଖାକୁ ଗ୍ରହଣ କରାଯାଇପାରେ ।

ଦୂରସ୍ଥ ନାୟିକା ଚନ୍ଦ୍ରାରେ ନାୟକର ମନୋଭାବ—

ରସଲେଖା—ଲଲାଟେ ଦେଉଛୁ ଚିତା ପାଦେ ଦେଉଛୁ ଅଲତା
ମୁକୁର ଦେଖାଉଅଛୁ ଅଗେ
ଏତେ ଦୂରେ ଥିଲେ ରହି ମାନସିକେ ଚନ୍ଦ୍ରମୁହିଁ
ନିତି ସେବା କରେ ଅନୁରାଗରେ ପ୍ରାଣବନ୍ଧୁ,
ତନ୍ତ୍ରରେ ନାମକରେ ଜପ, ନ ସରଇ ଯେ ଗୁଣ କଳାପରେ । (୨୨-୭)

ବୈ-ବିଳାସ—
ବେଣୀକରେ ମାନସିକେ କେଶ ବାନ୍ଧି ଅଲତା ଲେଖନ ପର୍ଯ୍ୟନ୍ତେ
ବିଗୃହ ମାନସ ମୁଁ ପ୍ରିୟାର ଦାସ ସେବା ବିଘ୍ନ ନୋହେ ଯେମନ୍ତେ
ବାଞ୍ଛବାହି ହେ, ବିସ୍ମରିବ ନାହିଁ ଏ ବାଣୀ
ବର୍ତ୍ତିନ ରତି ରତନ ଲେଖିଦେବ ଭେଟେ ତରୁଣୀ ଯେହ୍ନ ରଣୀ । (୨୯-୧୭)

ର-ଲେଖା—
ପାଦେ ଫିଙ୍ଗିଦେଲେ ତୁହି ଅଲତା ପରାଏ ମୁହିଁ
ଲଗି ରହିଥିବ ତୋ ଚିତ୍ତେ କଣ୍ଟିତେ କରୁଣା ହୋଇବାପାଇଁ । (୯-୨)

ପ୍ରେ-ସୁ—ରସେ ପ୍ରବକ ପ୍ରନା ସେବକ ମୁଁ ଯେ ଯାବକ ଦେବି,
ପଦ୍ମଚରଣ ମୋର ଶରଣ ରଙ୍ଗ କାରଣ ହେବ । (୧୦-୧୫)

ର-ଲେ—ଯେଉଁ ଆଖି ଦେଖି ନାହିଁ ବାଳା ବିବସନ,
ଆଖିରେ ନ ଲେଖି ଶିଖୀ ଚନ୍ଦ୍ରକ ସମାନ ।
ରତି ଉତ୍ସବ କିଙ୍କିଣୀ କଣି କଣି ଯେଉଁ
କର୍ଣ୍ଣ ଶୁଣି ନାହିଁ ବଳ ଉପମାକୁ ପାଉ,ଇତ୍ୟାଦି । (୧୦-୪୪)

ଲ-ବତୀ— କର ନାହିଁ ଯେ ଦର୍ଶନ ବାଳା ବିବସନ
ଅନ୍ଧ ସେହୁ ଜନ ଥାଇ ନିର୍ମଳ ନୟନ ।
ଯୋଷା ପରିହାସ ଭାଷା ଯେହୁ ନ ଶୁଣିଛି ।
କର୍ଣ୍ଣ ନୋହେ କୁହର ଯୁଗଳ ସେ ବହିଛି, ଇତ୍ୟାଦି । (୨୮-୩୭)

ରସଲେଖା—ଭ୍ରୂରୁ ଧନୁରେ ନେତ୍ର ଶରସନ୍ଧି, ମୋତେ ବ୍ୟର୍ଥେ ପକାଉ ଅଛୁ ବନ୍ଧି ।
(୫-୩୧)

ସୁ·ପ —ସନ୍ଧି ଭୂରୁ ଧନୁରେ ନେତ୍ରଶର, ସଲକ୍ଷେ ମୋ ହୃଦେ କଲୁ ପ୍ରହାର ।
(୧୧-୧୫)

ରତି ସହିତ ନାୟିକାର ତୁଳନାରେ—

ରସଲେଖା—ରତି ହୋଇ କଥାଏ ଅଛି ଜଗତେ,
ପ୍ରବେଶ ହୋଇଲା ତ ସୁକେଶୀ ଚିତ୍ତେ । (୨-୨୧)

କୋ-ବ୍ର-ସୁ—ରତିକେ ସମାନ ନୋହିବ ରତି
ଯତି କେ ଦେଖିଲେ ରଖିବେ ଧୃତି । (୨-୭୨)

କେଶ ବର୍ଣ୍ଣନାରେ—

ରସଲେଖା—ନୀଳେନ୍ଦ୍ରମଣି ଚିକ୍କଣ ଜଳଧର କଳା ପୁଣି
କାଳନ୍ଦୀ ବୀଚି କୁଟିଳ ବନ୍ଧି କୁନ୍ତଳ । (୩-୩୦)

ର-ହାବ୍ଧବଳୀ—କାଳନ୍ଦୀ ଜଳ ଜଳଦ ଠାରୁ ହିରି କଳା
ଭ୍ରମର ମାଳ ରୁଚିର କୁଟିଳ ହରଲା । (୧-୨୦)

ଜଘନ ବର୍ଣ୍ଣନାରେ—

ରସଲେଖା—କରୀଦନ୍ତ କୁନ୍ଦିଣ ସ୍ତମ୍ଭଶ୍ରେଣୀ କି କୁଙ୍କୁମ ଦେଇଛି ଧାତା ଲେପି ।
(୫-୧୯)

ର-ହା—କେଉଁ କୁନ୍ଦେ କୁନ୍ଦି ଦନ୍ତୀଦନ୍ତ ସ୍ତମ୍ଭ ଶ୍ରେଣି ଲେପିଛି କୁଙ୍କୁମ । (୯-୧୧)

ସୁ-ପ—ସଫଳ ହିନ ଦନ୍ତୀଦନ୍ତ ସ୍ତମ୍ଭକେ ଉପି ଲେପିଲା କୁଙ୍କୁମେ । (୨-୧୨)

ବୈ-ବି—ବାରଣ ଦନ୍ତ କୁନ୍ଦା ସ୍ତମ୍ଭ କି କୁଙ୍କୁମ ଲେପିତ । (୩-୪୪)

ଏହିପରି ବହୁ ଉଦାହରଣ ଦେଇ ପ୍ରତିପାଦନ କରାଯାଇପାରେ ଯେ, ଉପେନ୍ଦ୍ରୀ ଶୃଙ୍ଖଳାର ଆଦ୍ୟ ଆଲେଖ୍ୟ ରସଲେଖା । ଏହି କାବ୍ୟ ସରଳ-ସାବଲୀଳ କୋମଳ-କାନ୍ତ ପଦାବଳୀରେ ଲିଖିତ ଓ ଯେଉଁ ଦୋଷ ଲାଗି ଉପେନ୍ଦ୍ର ନିନ୍ଦିତ ତାହାର ସ୍ପର୍ଶ ଏ କାବ୍ୟରେ ନାହିଁ । କବିଙ୍କ ଯୌବନ ଧାପ୍ତ ପ୍ରତିଭା ବହୁ ଚମତ୍କାର ସୃଷ୍ଟି କରିଛି । କିନ୍ତୁ କବି ଯେଉଁଠି ଶବ୍ଦ ମୋହରୁ ନିଜକୁ ମୁକ୍ତ ରଖିଛନ୍ତି ସେଇଠି କବିଙ୍କ ସହଜା ପ୍ରତିଭାର ଦୀପ୍ତି ହୃଦୟ ହରଣୀ ହୋଇପାରିଛି । ରସଲେଖା ସେହି ସହଜା ପ୍ରତିଭାର ଅମୃତମୟ ପରପ୍ରକାଶ ମାତ୍ର ।



ଗୋଦାବରୀଶ ନଗର, ଦ୍ୱିତୀୟ ଲାଇନ୍
ବ୍ରହ୍ମପୁର-୭୬୦୦୦୧

# ରସଲେଖା-ସରସ କବି ପ୍ରତିଭାର ମନୋଜ୍ଞ ପ୍ରତିଲେଖ

॥ ଅଧ୍ୟାପକ ଶ୍ରୀ କାଳୀ ଚରଣ ରଥ ॥

---

**କାବ୍ୟ ସୃଷ୍ଟିର ପୃଷ୍ଠ ଦେଶରେ କବି-ମାନସ :**—ପ୍ରତ୍ୟେକ ପ୍ରତିଭାଧର କବି ସ୍ୱକୀୟ କାବ୍ୟ ସାଧନା କ୍ଷେତ୍ରରେ ନିଜସ୍ୱ କବି ମାନସର ପରିଚୟ ପ୍ରଦାନ କରିଥାନ୍ତି । ରସଲେଖା କାବ୍ୟ ସୃଷ୍ଟିର ପୃଷ୍ଠ ପଟରେ କବି ଉପେନ୍ଦ୍ର ଭଞ୍ଜଙ୍କ କବି-ମାନସ, ନିମ୍ନୋଦ୍ଧୃତ ପଂକ୍ତି ଗୁଡ଼ିକରୁ ବୁଝିହେବ । ଯଥା :—

"ନୀଳକଣ୍ଠ ନୃପସୁତ ଭଞ୍ଜ ହରିହର ।
ମାନସ ବଳାଇ କରିବାକୁ ଗୀତସାର ।" (୧/୭)

ଏବଂ

"ସୁଜନ ମନୋରଞ୍ଜନ ହୋଇବ ଏ ଗୀତ ।" (୧/୧୦)

ପୁଣି

"ସାଧୁ ଜନେ, ନ ଦେଖିବ ଥିଲେ ଏଥି ଦୋଷ ।
ରହସ୍ୟ ଚରିତ ପୂର୍ଣ୍ଣ ପୁଣି ରସ ହେ ।" (୨୨/୧୭)

ଉଦ୍ଧୃତାଂଶମାନଙ୍କ ପ୍ରତି ଦୃଷ୍ଟି ଦେଲେ ଜଣାଯାଏ ଯେ କବି ସୁଜନ ମନୋରଞ୍ଜନ ନିମିତ୍ତ ରସପୂର୍ଣ୍ଣ ଏକ ରହସ୍ୟ ଚରିତ ଅର୍ଥାତ୍ କାଳ୍ପନିକ ଶ୍ରେଷ୍ଠ କାବ୍ୟ (ଗୀତସାର) ରଚନା କରିବାପାଇଁ କୃତ ସଂକଳ୍ପ ହୋଇ ରସଲେଖା ନାମକ ଏହି କାବ୍ୟ ରଚନା କରିଥିଲେ । କବିଙ୍କ ଏହି ଉତ୍ତମ କାବ୍ୟତ୍ୱ ବୋଧ ତଥା ସହୃଦୟ ସଂବେଦ୍ୟ ସରସ କାବ୍ୟ କଳ୍ପନା, କବି-ପ୍ରତିଭାର ମହନୀୟ ସ୍ପର୍ଶ ଶକ୍ତି ବିନା ଅସମ୍ଭବ । ତେବେ ରସଲେଖା କାବ୍ୟର ଶ୍ରେଷ୍ଠତ୍ୱ ପ୍ରତିପାଦନ କ୍ଷେତ୍ରରେ କବି ପ୍ରତିଭାର ମହତ୍ତ୍ୱ ବିଶେଷ ପ୍ରଣିଧାନ ଯୋଗ୍ୟ ।

**କବି-ଗୃହୀତ କାବ୍ୟାଦର୍ଶରେ ଯୁଗାଦର୍ଶର ପ୍ରତିଫଳନ :**—ଉପେନ୍ଦ୍ର-କାବ୍ୟ-ସୃଷ୍ଟିର ପୃଷ୍ଠ ପଟରେ ପ୍ରାୟ ଦୁଇ ଶତାଧିକ ବର୍ଷ ପରିବ୍ୟାପ୍ତ ଓଡ଼ିଆ

ସାହିତ୍ୟ ସାଧନାର ପରଂପରା ପ୍ରଚଳିତ ଥିଲା । ଏହି ପ୍ରାକୃତ ସାହିତ୍ୟ ସାଧନାର ଅପ୍ରମାରମ୍ଭ ମୁଖ୍ୟତଃ ସଂସ୍କୃତ ଭାଷା ସାହିତ୍ୟ ଅନଭିଜ୍ଞ ସାଧାରଣ ଓଡ଼ିଆ ଜନତାର ଧାର୍ମିକ ଆଗ୍ରହ ଚରିତାର୍ଥ କରିବାପାଇଁ ଉଦ୍ଦିଷ୍ଟ । ଏଥିପାଇଁ ସଂସ୍କୃତ ପୁରାଣ ଶାସ୍ତ୍ରର ଅନୁସରଣରେ ଓଡ଼ିଆ ପୁରାଣ ସାହିତ୍ୟର ସୃଷ୍ଟି ପ୍ରଥମେ ହୋଇଥିଲା । ଏହି ପ୍ରାଥମିକ ଓଡ଼ିଆ ପୁରାଣ ସାହିତ୍ୟ, ସମସାମୟିକ ପେଶାଦାର ସଂସ୍କୃତ ପଣ୍ଡିତମାନଙ୍କ ଦ୍ୱାରା, ପ୍ରଚ୍ଛନ୍ନ ବିଲେପ ଭଙ୍ଗୀରେ ଅପମାନିତ ଏବଂ ଅବହେଳିତ ହୋଇଥିଲା । ଏହାର ପ୍ରମାଣ ଉପେନ୍ଦ୍ର ପୂର୍ବବର୍ତ୍ତୀ ଓଡ଼ିଆ ପୁରାଣ (ସାରଳାଙ୍କ ମହାଭାରତ, ବଳରାମଙ୍କ ରାମାୟଣ, ଜଗନ୍ନାଥଙ୍କ ଭାଗବତ) ମାନଙ୍କରେ ପ୍ରତିଫଳିତ। ସଂସ୍କୃତ ପଣ୍ଡିତଗଣ ଓଡ଼ିଆ ପ୍ରାକୃତ ଭାଷାର ଅସମୃଦ୍ଧତାର ଦୋହାଇ ଦେଇ ଏହି ପୁରାଣ ସାହିତ୍ୟରେ ପାଣ୍ଡିତ୍ୟ ବିଶୋଭିତ କାବ୍ୟ କଳାର ଅଭାବ ପ୍ରଦର୍ଶନ କଲେ । ଏହି ଆହ୍ୱାନର ବଶବର୍ତ୍ତୀ ହୋଇ କେତେକ ଜାତି ପ୍ରାଣ ଓଡ଼ିଆ କବି ପୁରାଣ ସାହିତ୍ୟ ବଦଳରେ ଛନ୍ଦୋବଦ୍ଧ କଳାତ୍ମକ କାବ୍ୟ ସୃଷ୍ଟି ଲାଗି ଲେଖନୀ ଚାଳନା କରିଥିବା ଦେଖାଯାଏ । କବି ଅର୍ଜୁନ ଦାସଙ୍କ ରାମ ବିଭା, କାର୍ତ୍ତିକ ଦାସଙ୍କ ରୁକ୍ମଣୀ ବିଭା, ଶିଶୁ ଶଙ୍କରଙ୍କ ଉଷା ଭିଲାଷ ଏବଂ ଦେବଦୁର୍ଲ୍ଲଭଙ୍କ ରହସ୍ୟ ମଞ୍ଜରୀ ଆଦି ପୌରାଣିକ କାବ୍ୟ ଏହି ପ୍ରଚେଷ୍ଟାର ନିଦର୍ଶନ । କିନ୍ତୁ ପରଶ୍ରୀକାତର ଓଡ଼ିଆ ଭାଷା ବିଦ୍ୱେଷୀ ପଣ୍ଡିତଗଣ ଏହି ସରଳ ସରସ କାବ୍ୟ କଳାର ମଧ୍ୟ ଅବମାନନା କରି ଏ ସବୁର ଅସାରତା ପ୍ରତିପାଦନ କରିବାକୁ ଲାଗିଲେ । ଏଥିପାଇଁ ସେମାନେ ସଂସ୍କୃତ କାବ୍ୟ ତତ୍ତ୍ୱ ପ୍ରବୋଧିତ, ପ୍ରଚଣ୍ଡ ପାଣ୍ଡିତ୍ୟ ବିମଣ୍ଡିତ, ଆଳଂକାରିକ କାବ୍ୟକଳାର ପ୍ରଦର୍ଶନ ଜନିତ ପ୍ରତିଯୋଗିତା କ୍ଷେତ୍ରରେ ନୈଷଧୀୟ କାବ୍ୟ କୌଶଳର ଶ୍ରେଷ୍ଠତା ଉଦାହରଣରୂପେ ଉପସ୍ଥାପନ କରୁଥିଲେ । ଏହି ଆହ୍ୱାନର ମୁକାବିଲା ନିମିତ୍ତ ଆମ ଭାଷା-ସାହିତ୍ୟ ସେତେବେଳେ ଏକ ବିଲକ୍ଷଣ ପ୍ରତିଭାଧର କବିର ଅପେକ୍ଷା ରଖିଥିଲା । ଏପରି ଅବସ୍ଥାରେ ସପ୍ତଦଶ ଶତାବ୍ଦୀର ଆଦ୍ୟଭାଗର କାବ୍ୟ ସାଧକ ଧନଞ୍ଜୟ ଭଞ୍ଜ ଏବଂ ଦୀନକୃଷ୍ଣ ଦାସଙ୍କ ରଚନା ବଳୀରେ ଏ ଧରଣର ପ୍ରତିଭା ଦୀପ୍ତ କାବ୍ୟ କଳାର ପ୍ରୟୋଗ କୌଶଳ ଦେଖିବାକୁ ମିଳେ । ମାତ୍ର ଏହି ଶତାବ୍ଦୀର ଶେଷଭାଗ ଏବଂ ଅଷ୍ଟାଦଶ ଶତାବ୍ଦୀର ଆଦ୍ୟ ଭାଗର କବି ଉପେନ୍ଦ୍ର ଭଞ୍ଜ ଏହି ଯୁଗାଦର୍ଶର ସର୍ବଶ୍ରେଷ୍ଠ ଯୁଗପୁରୁଷ ରୂପେ ଅବତୀର୍ଣ୍ଣ ହୋଇ ଓଡ଼ିଆ ଭାଷା ସାହିତ୍ୟକୁ ଯୁଗୋଚିତ ମର୍ଯ୍ୟାଦା ପ୍ରଦାନ କରିବାରେ ସଫଳ କଳାକାରର ଭୂମିକା ଗ୍ରହଣ କଲେ । ସଂସ୍କୃତ ପାଣ୍ଡିତ୍ୟ ପୂର୍ଣ୍ଣ ଆଳଙ୍କାରିକ କାବ୍ୟକଳାର ସମକକ୍ଷ ଓଡ଼ିଆ କାବ୍ୟ ସୃଷ୍ଟିର ଆବଶ୍ୟକତା ଥିଲା ସେହି ସମୟର ଯୁଗାଦର୍ଶ ଏବଂ ଉପେନ୍ଦ୍ର ସେହି ଆଦର୍ଶର ପରିପୂର୍ଣ୍ଣ ସଫଳତାର ପରିପ୍ରକାଶ ମାତ୍ର । ଏହି ଯୁଗାଦର୍ଶ ପ୍ରଣୋଦିତ କାବ୍ୟ-କୌଶଳ କବିଙ୍କ ପ୍ରତିଷ୍ଠିତ

କାବ୍ୟତ୍ରୟୀ (ଲାବଣ୍ୟବତୀ, ବୈଦେହୀଶ ବିଳାସ, ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ)ରେ ନିମ୍ନମତେ ପ୍ରଦତ୍ତ । ଯଥା—

(କ) "ମୂର୍ତ୍ତିମନ୍ତ କରି ମୃଦୁ ଗୀତ ବିସ୍ତରଇ,
ଏଣୁ କରିଥିବି ଅଳଂକାର ମୁକ୍ତ ହୋଇ
ପଦ ସରଳ ଧ୍ୱନିରେ ମାନସ ମୋହିବ ।
ଅର୍ଥୀଜନ ପ୍ରକରକୁ ଆନନ୍ଦ ହୋଇବ ଏ ।" (ଲା. ବ. ୧)

(ଖ) "ବିଚିତ୍ର କବିତ୍ୱ ମାର୍ଗେ ପ୍ରସରିଲା ବୁଦ୍ଧି ।
ବିରଚିଲି ରାମାୟଣ ଏ ପ୍ରେମା ବଢ଼ୁ ସିଦ୍ଧି ଯେ ।" (ବୈ. ବି. ୫୨;୫୧)

(ଗ) "ନାନା ଶବ୍ଦ ଅର୍ଥେ ଯେ ବିଚକ୍ଷଣ । ସେହୁ ଜାଣେ ଅଳଂକାର ଲକ୍ଷଣ ।
ସେହି କରୁ ଏ ଗ୍ରନ୍ଥ ବିଚେଚନା । ବାଲ୍ୟ ପୌଗଣ୍ଡ ଯୌବନ ରଚନା ।"
(କୋ. ବ୍ର. ସୁ ୭/୧)

(ଘ) "ଯେନ ନୈଷଧ ପଦ୍ୟଏ । ଉପେନ୍ଦ୍ର କହେ ବୁଧ ପ୍ରମୋଦ କରିଏ ।'
(କୋ. ବ୍ର. ସୁ ୧୧/୬୧)

ଏହି କାବ୍ୟାଦର୍ଶ ଅନୁସୃତ ପ୍ରୋଜ୍ଜ୍ୱଳ କବି ପ୍ରତିଭାର ଉନ୍ମେଷ କାଳର ପ୍ରାଥମିକ ପ୍ରଚେଷ୍ଟାର ସଫଳ ରୂପାୟନ ହେଉଛି ରସଲେଖା କାବ୍ୟ । ଅବଶ୍ୟ ଏହି କାବ୍ୟରେ କବି-ଗୃହୀତ କାବ୍ୟାଦର୍ଶର ବଳିଷ୍ଠ ଅଭିବ୍ୟକ୍ତିର ସ୍ପଷ୍ଟ ଚିତ୍ର ଅଙ୍କିତ ହୋଇନାହିଁ । କିନ୍ତୁ ଏଥିରେ ଉତ୍ତମ କାବ୍ୟକଳାର ପ୍ରତିଷ୍ଠା ନିମିତ୍ତ ସୃଷ୍ଟି ସଚେତନତାର ଅଭାବ ନାହିଁ କହିବା ସ୍ୱାଭାବିକ ମନେହେବ । ଅନୁଶୀଳିତ ପ୍ରବନ୍ଧର ଉପକ୍ରମରେ, କବି-ମାନସ-ବିଗ୍ରହ ପ୍ରସଙ୍ଗରେ, ଏହି ବିଷୟର ସୂଚନା ପ୍ରଦତ୍ତ । କବି ପ୍ରସ୍ତାବିତ ସେହି 'ସୁଜନ ମନୋରଞ୍ଜନ' ଅର୍ଥାତ୍ ସହୃଦୟ ହୃଦୟ ସମ୍ବେଦ୍ୟ ଏକ ଉତ୍ତମ କାବ୍ୟକଳା (ଗୀତସାର)ର ପ୍ରତିଷ୍ଠା ସକାଶେ କବି-ପ୍ରତିଭା-ମୂଲ୍ୟାୟନର ଆବଶ୍ୟକତା ଏକାନ୍ତ ଭାବେ ଅନିବାର୍ଯ୍ୟ ।

**ପ୍ରତିଭା ଶବ୍ଦର ବ୍ୟୁତ୍ପତ୍ତି ବିଚାର :—** ପ୍ରତିଭାର ମୂଳ ଶବ୍ଦ 'ଭା' ଅଟେ । ଏହାର ଅର୍ଥ ଜ୍ୟୋତି, ଦୀପ୍ତି, ଝଲକ ବା ଚମକ । ବିଭିନ୍ନ ଉପସର୍ଗର ସଂଯୋଗ ଦ୍ୱାରା ଏହା ଆଭା, ପ୍ରଭା, ବିଭା ଏବଂ ପ୍ରତିଭା ପ୍ରଭୃତିର ଶବ୍ଦ ରୂପ ଧାରଣ କରେ । ପ୍ରତି ଉପସର୍ଗର ସଂଯୋଗ ଦ୍ୱାରା ପ୍ରତିଭା ଶବ୍ଦର ଅର୍ଥ, ଜ୍ୟୋତି ବା ପ୍ରକାଶ ବିଶେଷ ରୂପେ ଗୃହୀତ । ଏହି ପ୍ରତିଭାର ସ୍ପର୍ଶ ଯେକୌଣସି ବସ୍ତୁକୁ ଉଦ୍‌ଭାସିତ ଅଥବା ଦୀପ୍ତିମନ୍ତ କରିଥାଏ । ପ୍ରାଚ୍ୟ କାବ୍ୟ ଶାସ୍ତ୍ରରେ ପ୍ରତିଭା ଶବ୍ଦର ବିଭିନ୍ନ ପାରିଭାଷିକ ଶବ୍ଦ ମାନଙ୍କ ମଧ୍ୟରେ ଏହି କମନୀୟ ଜ୍ୟୋତି ପ୍ରକାଶକ ଅର୍ଥ ନିହିତ ଥିବା ଅନୁଭବ ଗମ୍ୟ ।

**ପ୍ରାଚ୍ୟ କାବ୍ୟ ତତ୍ତ୍ୱରେ ପ୍ରତିଭାର ସ୍ଥାନ :**—ପ୍ରାଚ୍ୟ କାବ୍ୟତତ୍ତ୍ୱ ବିଶାରଦ ଗଣ ନିଜ ନିଜର କାବ୍ୟ ଲକ୍ଷଣ ପ୍ରତିପାଦନ କ୍ଷେତ୍ରରେ ବିଭିନ୍ନ ମତ ପୋଷଣ କରିଥିଲେ ମଧ୍ୟ ସେହି କବି-କର୍ମ-କୌଶଳର ଉତ୍କର୍ଷ ପ୍ରତିପାଦକ ଧର୍ମ ରୂପେ ପ୍ରତିଭାକୁ ମୁଖ୍ୟ ସ୍ଥାନ ଦେଇଥିବା ଦେଖାଯାଏ । ଏହି କାବ୍ୟ-ଶାସ୍ତ୍ର ପ୍ରଣେତା ମାନଙ୍କ ମଧ୍ୟରେ ଦଣ୍ଡୀ, ବାମନ, ରୁଦ୍ରଟ, ଅଭିନବଗୁପ୍ତ, କୁନ୍ତକ ଆଦି ଆଚାର୍ଯ୍ୟଗଣ ପ୍ରତିଭାର ପ୍ରତ୍ୟକ୍ଷ ଆଲୋଚନା କରିଯାଇଛନ୍ତି । ଅନ୍ୟ ଆଲଂକାରିକ ମାନଙ୍କ ଲେଖାରେ ମଧ୍ୟ ପ୍ରତିଭାର ବ୍ୟାଖ୍ୟା ବିଭିନ୍ନ ସ୍ଥଳରେ ସ୍ଥାନିତ ହୋଇଥିବା ଦେଖିବାକୁ ମିଳେ ।

ଆଚାର୍ଯ୍ୟ ଦଣ୍ଡୀଙ୍କ ମତରେ ପ୍ରତିଭା ବା ପ୍ରତିଭାନ, ପୂର୍ବ ବାସନା ଗୁଣାନୁବନ୍ଧ ଅଟେ । ଯଥା-'ପୂର୍ବ ବାସନା ଗୁଣାନୁବନ୍ଧ ପ୍ରତିଭାନମଦ୍ଭୁତମ୍' ।—(କାବ୍ୟାଦର୍ଶ) ଆଚାର୍ଯ୍ୟ ବାମନ ପ୍ରତିଭାକୁ କବିତ୍ୱର ବୀଜ ରୂପେ ସ୍ୱୀକାର କରି ଏହାକୁ ଜନ୍ମାନ୍ତର ଗତ ସଂସ୍କାର ବିଶେଷ ରୂପେ ଗ୍ରହଣ କରନ୍ତି । ଯଥା—'କବିତ୍ୱ ବୀଜମ୍ ପ୍ରତିଭାନମ୍ । × × × × ଜନ୍ମାନ୍ତର ସଂସ୍କାର ବିଶେଷଃ କଶ୍ଚିତ୍' । ଅଭିନବ ଗୁପ୍ତ ମଧ୍ୟ ଏହାକୁ ଏହି ଅର୍ଥରେ ମାନନ୍ତି—'ଅନାଦି ପ୍ରାକ୍ତନ ସଂସ୍କାର ପ୍ରତିଭାନ ମୟଃ' । (ଅଭିନବ ଭାରତୀ) । ସାଧାରଣତଃ ସଂସ୍କୃତ କାବ୍ୟ ଶାସ୍ତ୍ର ମାନଙ୍କରେ ପ୍ରତିଭାକୁ ସହଜାତର ମାନ୍ୟତା ପ୍ରଦାନ କରିଥିବା ଜଣାଯାଏ । ପରନ୍ତୁ ହେମଚନ୍ଦ୍ର ପ୍ରଭୃତି ଆଚାର୍ଯ୍ୟଗଣ ଏହି ପ୍ରତିଭାକୁ ଜନ୍ମଜାତ ଏବଂ କାରଣ ଜାତ, ଅର୍ଥାତ୍ ସହଜା ଓ ଆହାର୍ଯ୍ୟା ରୂପରେ ମାନ୍ୟତା ଦେଇଥିବା ଦେଖାଯାଏ ।

**ପ୍ରତିଭାର ସ୍ୱରୂପ ସମୀକ୍ଷା :**—ପ୍ରତିଭାର ଅନ୍ୟ ନାମ ଶକ୍ତି ମଧ୍ୟ ଅଟେ ଅର୍ଥାତ୍ ପ୍ରତିଭା ଏକ ପ୍ରକାର ମାନସିକ ଶକ୍ତି । ଆଚାର୍ଯ୍ୟ ଅଭିନବ ଗୁପ୍ତ ପ୍ରତିଭାର ବିଶେଷ ସ୍ୱରୂପ ପରିପ୍ରକାଶନ ଉଦ୍ଦେଶ୍ୟରେ କହନ୍ତି—'ପ୍ରଜ୍ଞା ନବ ନବୋନ୍ମେଷ ଶାଳିନୀ ପ୍ରତିଭା ମତା' । ଏହାର ଅର୍ଥ ନୂତନ ନୂତନ ସୃଷ୍ଟି କ୍ଷମତାଶାଳୀ ପ୍ରଜ୍ଞାର ନାମ ପ୍ରତିଭା ଅଟେ । ପୁଣି ଅଭିନବ ଗୁପ୍ତ ଭିନ୍ନ ପରିଭାଷା ଦ୍ୱାରା ପ୍ରତିଭାର ସଂଜ୍ଞା ନିରୂପଣ ଏପରି କରିଛନ୍ତି ।—ପ୍ରତିଭା ଅପୂର୍ବ ବସ୍ତୁ ନିର୍ମାଣ କ୍ଷମା ପ୍ରଜ୍ଞା' । ଅର୍ଥାତ୍ ଅପୂର୍ବ ରୂପର ସୃଷ୍ଟି କାରଣ ପ୍ରଜ୍ଞା ହିଁ ପ୍ରତିଭା । ଏହି ପ୍ରତିଭାର ଏକ ବିଶେଷ ରୂପ କବି ପ୍ରତିଭା ରୂପେ ବିବେଚିତ । ଯେଉଁ ପ୍ରତିଭା ଦ୍ୱାରା ସହୃଦୟ କବି ରସାବେଶ ପରିସ୍ଥିତିରେ କାବ୍ୟ ନିର୍ମାଣ କ୍ଷମତା ପ୍ରାପ୍ତ କରେ । —'ତସ୍ୟାଃ ବିଶେଷୋ ରସାବେଶ ବୈଶିଷ୍ଟ୍ୟ ସୌନ୍ଦର୍ଯ୍ୟ କାବ୍ୟ ନିର୍ମାଣ କ୍ଷମତ୍ୱମ୍' ।

(ଧ୍ୱନ୍ୟାଲୋଚନ) । ଅଭିନବ ଗୁପ୍ତଙ୍କ ବକ୍ତବ୍ୟର ସାରାଂଶ ଏପରି ନିର୍ଦ୍ଧାରଣ କରାଯାଇ ପାରେ । ୧. ପ୍ରତିଭା ପ୍ରଜ୍ଞାର ଏକ ରୂପ ଅଟେ । ୨. ଏହାର କାର୍ଯ୍ୟ ଅପୂର୍ବ ଏବଂ ନବ ନବ ରୂପର ରଚନା କରିବା । ୩. ପ୍ରତିଭାର ଏକ ବିଶେଷ ରୂପ କବି ପ୍ରତିଭା; ଯାହାଦ୍ୱାରା ରସିକ କବି କାବ୍ୟ ନିର୍ମାଣ କ୍ଷେତ୍ରରେ ସାମର୍ଥ୍ୟ ଲାଭ କରେ । ଏହାର ଅର୍ଥ ସାମାନ୍ୟ-ରୂପ-ସୃଜନ-କ୍ଷମ ଶକ୍ତିକୁ ସାମାନ୍ୟ ପ୍ରତିଭା ଏବଂ ରସାତ୍ମକ ରୂପର ସୃଷ୍ଟିକାରିଣୀ ଶକ୍ତିକୁ କବି ପ୍ରତିଭା କୁହାଯାଏ । ଏହି କବି ପ୍ରତିଭା କାବ୍ୟ ବସ୍ତୁ ବା ପଦାର୍ଥ ରଚନା ସ୍ଥଳରେ ସହଜା ଓ ଆହାର୍ଯ୍ୟା ଭେଦରେ ଦ୍ୱିଧା ବିଭକ୍ତ । କାବ୍ୟ ବସ୍ତୁର ସୌନ୍ଦର୍ଯ୍ୟ ସମ୍ପାଦନ କବି-କୌଶଳ ଜନ୍ୟ ଅଟେ । ଏପରିକି ଯେଉଁ ପଦାର୍ଥ ସ୍ୱଭାବତଃ ରମଣୀୟ ଏବଂ ଆହ୍ଲାଦକାରୀ ଅଟେ, ସେହି ବିଷୟ ସୁକୁମାର ସ୍ୱଭାବ ବିଶିଷ୍ଟ କବିଙ୍କ ପାଇଁ ଅଧିକ ଉପଯୁକ୍ତ, କାବ୍ୟ ବିଷୟ ହୋଇଥାଏ । ଏହି ସ୍ୱଭାବ ସଙ୍ଗତ ବସ୍ତୁ ବର୍ଣ୍ଣନା ପରିପାଟୀକୁ ସହଜ ପ୍ରତିଭା କୁହାଯାଏ ।

ଆହାର୍ଯ୍ୟା ପ୍ରତିଭାର ଅର୍ଥ ନିପୁଣତା ତଥା ଶିକ୍ଷାଭ୍ୟାସ ଦ୍ୱାରା ସୃଷ୍ଟ କୁଶଳତା । ଏହାର ରୂପ ସହଜ ବସ୍ତୁ ଠାରୁ ଭିନ୍ନ ଅଟେ । କାରଣ ସହଜ ବସ୍ତୁ ଯେଉଁଠାରେ ପ୍ରଧାନତଃ ପ୍ରକୃତ ଏବଂ ସ୍ୱାଭାବିକ ହୁଏ—ଏହାର ଧର୍ମ ସହଜାତ ହୋଇଥାଏ । କିନ୍ତୁ ଆହାର୍ଯ୍ୟ, ବସ୍ତୁ କବି କୌଶଳ ଜନ୍ୟ, ଅନ୍ୟ ରୂପରେ କହିଲେ ଏହା ଉତ୍ପାଦ୍ୟ ଅଟେ । ଆଧୁନିକ ସମୀକ୍ଷା ଶାସ୍ତ୍ରାନୁସାରେ ଏହାକୁ କାଳ୍ପନିକ ମଧ୍ୟ କୁହାଯାଏ ।

ରସଲେଖା କାବ୍ୟରେ କବି ଉପେନ୍ଦ୍ର ଭଞ୍ଜଙ୍କ ପ୍ରତିଭା ବିଚାର ପାଇଁ ଏହି ନ୍ୟାତିଦୀର୍ଘ ଉପକ୍ରମର ଉପାଦେୟତା ଅପ୍ରାସଙ୍ଗିକ ବିବେଚିତ ହେବନାହିଁ । ଆଲୋଚିତ କାବ୍ୟର ସରସ କଥାବସ୍ତୁ ପରିକଳ୍ପନା, ମନୋଜ୍ଞ ପ୍ରକୃତିର ଚିତ୍ର ରଚନା, ଏବଂ ଆଲଂକାରିକ ଚମତ୍କାରିତାର ଉପସ୍ଥାପନାଦ୍ୱରେ କବି ପ୍ରତିଭାର ମହନୀୟତା, ପ୍ରଣିଧାନ ଯୋଗ୍ୟ ।

**କଥାବସ୍ତୁ :—** କବିଙ୍କ ଭାଷାରେ ରସଲେଖା ଏକ 'ରହସ୍ୟ ଚରିତ', ଅର୍ଥାତ୍ ଏହି କଥାବସ୍ତୁ ବିଶେଷ ଭାବରେ କୌତୁକୋଦ୍ଦୀପକ ତଥା କାଳ୍ପନିକ ଅଟେ । କବି ସମଗ୍ର କଥା ବସ୍ତୁକୁ ନ୍ୟାତିଦୀର୍ଘ ୨୨ ଟି ଛାନ୍ଦରେ ବର୍ଣ୍ଣନା କରିଛନ୍ତି । ପାରମ୍ପରିକ ରୀତିରେ କାବ୍ୟାରମ୍ଭରେ ହରିହର ସ୍ତୁତି ରୂପକ ମଙ୍ଗଳାଚରଣ, ପରେ ଉତ୍ତମ କାବ୍ୟ (ଗୀତ ସାର) ରଚନାର ଅଭିଳାଷ ପୋଷଣ, ଖଳ ନିନ୍ଦା ଓ ସାଧୁ

ସ୍ଥିତିର ଉଲ୍ଲେଖ କରି, ସୁଜନ ମନୋରଞ୍ଜନ କାଗ୍ଯ କାବ୍ୟ କଥା ବସ୍ତୁର ପରିବେଷଣ କରିଛନ୍ତି ।

ଗୈ୍ରଳଦେଶ ନିକଟସ୍ଥ ମଳୟଗିରି ନିକଟରେ ରସୋଦୟ ନାମକ ଏକ ବନ । ସେହି ସ୍ୱନାମ ଧନ୍ୟ ବନଭୂମିର ପରିବେଶ ବିଶେଷ ଭାବେ ରସୋଦ୍ଦୀପକ (ଶୃଙ୍ଗାର ରସ) ହୋଇଥିବା ଯୋଗୁଁ ମହା ଋଦ୍ଧ୍ୱରେ ତା ଯୋଗୀ ଜନମାନଙ୍କ ମନରେ କାମଚେଷ୍ଟା ଜାଗ୍ରତ କରେ । ନୈମିଷାରଣ୍ୟ ସ୍ଥିତ କମ୍ପିପାଞ୍ଜ ଋଷିଙ୍କ ସାତଶତ ପଞ୍ଚଶ ଶିଷ୍ୟ ସେହି ବନରେ ପ୍ରବେଶ କରନ୍ତେ ମାରଶରରେ ଜର୍ଜରିତ ହୋଇ ବିଭିନ୍ନ ଉପାୟରେ ପତ୍ନୀ ଗ୍ରହଣ ପୂର୍ବକ ଦାମ୍ପତ୍ୟ ଜୀବନ ସେଠାରେ ଯାପନ କରନ୍ତି । ବାରବର୍ଷ କାଳ ଅପେକ୍ଷା ପରେ, କମ୍ପିପାଞ୍ଜ ଋଷି ଶିଷ୍ୟାନ୍ୱେଷଣରେ ଆସି ସେହି ବିପିନରେ ପ୍ରବେଶ କରନ୍ତେ ସେ ମଧ୍ୟ ଅଲଂଘନୀୟ ପଞ୍ଚ ବାଣ ବାଣରେ ବିଦ୍ଧ ହୋଇ ସୁରତ କାମନାରେ, ଗୈ୍ରଳ ଦେଶାଧିପତିଙ୍କ କନ୍ୟା କଳ୍ପଲତା ସହିତ ବୈବାହିକ ଜୀବନ ଅତିବାହିତ କରିବା ଫଳରେ-'ବିଧିର ସ୍ୱପ୍ନେ ସେପରି ରାମା ନାହିଁ ଦେଖା', ସଦ୍‌ଗୁଣ୍ୟ କନ୍ୟା ରତ୍ନ ରସଲେଖାର ଜନ୍ମସମ୍ଭବ ହେଲା । କପିପାଞ୍ଜ ଋଷି ସ୍ୱକନ୍ୟାର ଲାଳନ ପାଳନ ନିମନ୍ତେ ଆଠ ଜଣ ସଖୀ ନିଯୁକ୍ତ କଲେ । ( ୧ମ ଛାନ୍ଦ )

ଋଷି କନ୍ୟା ରସଲେଖା କାଳକ୍ରମେ ବାଲ୍ୟ ପୌଗଣ୍ଡ ଓ ବୟଃସନ୍ଧି ଅତିକ୍ରମକରି 'ବଳକ୍ଷ ପକ୍ଷ ତଥି ଲକ୍ଷ୍ୟ ବହିଲା । ଯୌବନ ଶଶୀକଳାର ବୃଦ୍ଧି ହେଲା ଯେ ।' ଏପରି ଯୌବନ କାଳୀନ ଶୋଭା ସମ୍ପଦରେ ରସଲେଖାର ତନୁଶ୍ରୀ ବିମଣ୍ଡିତ ହେବା ଫଳରେ ଯେଉଁ ଅତୁଳନୀୟ ସୌନ୍ଦର୍ଯ୍ୟର ଉଦଭାସନ ହେଲା, ତାହା 'ବଚନେ କହିବାକୁ ଉପମା ନାହିଁ । ତାହାକୁ ସମ ହୋଇ ଜଗତେ ସେହି ।' ଏତିକବେଳେ ବିକଶିତ ଯୌବନା ଋଷି କନ୍ୟାର—'ଫୁଲ୍ଲ କୁସୁମେ ଗନ୍ଧି ମତ୍ତ ଭ୍ରମର । ମନରେ ଜାତ ହୁଏ ଆନ ବିକାର ।' ( ୨ୟ ଛାନ୍ଦ )

ମଳୟ ଗିରିର ଉତ୍ତର ଦିଗରେ ସୁଧାନିଧିପୁର ବିଦ୍ୟମାନ । ସେ ରାଜ୍ୟର ରାଜା ଜୟବ୍ରତ । ରାଣୀ ଇନ୍ଦ୍ରାବତୀଙ୍କ ଗର୍ଭ ସିନ୍ଧୁ ଜନିତ କୁମୁଦବନ୍ଧୁ ଏବଂ ବିଶ୍ୱ କେତନ ସମାନ ମହାଶୋଭନ ପୁତ୍ର ବିଶ୍ୱଭୂତି । ସେ 'ସର୍ବ ବିଦ୍ୟା ବିଚକ୍ଷଣ ଓ ନିଜ ଜନ ରକ୍ଷଣ' ଦକ୍ଷତା ଅର୍ଜନ କରନ୍ତେ ରାଜା ତାଙ୍କ ପାଇଁ କନ୍ୟା ରତ୍ନ ଖୋଜିବାର ବ୍ୟବସ୍ଥା କଲେ । କିନ୍ତୁ ରାଜକୁମାର ସୁକନ୍ୟା ପ୍ରାପ୍ତି ଲକ୍ଷ୍ୟରେ ଗୌରୀ ଉପାସନାରେ ନିମଜ୍ଜିତ ହେଲେ । ତାହାର ଫଳ ସ୍ୱରୂପ—'ଦେଖିଲି

ଦିନେ ସ୍ୱପନେ, ଯାଅ ରସୋଦୟ ବନେ । ରାଜ ଋଷିର କୁମାରୀ, ଅତି ସୁନ୍ଦରୀ ଏ ତାହାଙ୍କୁ ସେ ଠାଇଲେ ଦେଖ, ମନେ ରଖ ନେନ୍ତେ ଲେଖ, ଗୃହ ଉପାୟରେ ଲଭ, ହେଉତ ଶୁଭ ଏ" ଯୁବରାଜ ବିଶ୍ୱଭୂତ ସ୍ୱପ୍ନରୁ ଉଠି ବନ ଜାଣି ନଥିବା ଯୋଗୁଁ ରସୋଦୟ ବନକୁ ଯାତ୍ରା କରିବାର ଅକ୍ଷମତା ପ୍ରକାଶ କରି କଳ୍ପିତା ନାୟିକାର ସମ୍ଭାବ୍ୟ ରୂପକଳ୍ପନାରେ ବିମୋହିତ ହେଲେ । ଏହାଦେଖି ଅମ୍ବିକା ମାୟା ରଚନା କରି, ବିଶ୍ୱଭୂତର ଶୟନ କାଳରେ, ଦିନେ କରି ଧରି, ରଜନୀର ତୃତୀୟ ପ୍ରହରରେ, ତାଙ୍କୁ ନେଇ ରସୋଦୟ ବନରେ ଛାଡ଼ି ଦେଇ ଆସିଲେ । ପ୍ରଭାତରେ ନିଦ୍ରା ଭଙ୍ଗନ୍ତେ—'ଦେଖିଲା କୁମର ତହିଁ, ସେ ଅଣିଲା ସଙ୍ଗେ ନାହିଁ, ଦୁର୍ଗା ଦୁର୍ଗା କରେ ଧ୍ୟାନ ହୋଇ ଚ୍ଛନ୍ନ ଏ ।' ଏହି ସମୟରେ ପ୍ରାତଃ କର୍ମରେ ଜଗତ ଋଷି କନ୍ୟାଙ୍କ ଦର୍ଶନରେ ରାଜପୁତ୍ର ନିଜ କଳ୍ପିତ ସୁକନ୍ୟାର ସନ୍ଧାନ ନକରିପାରି ଅପେକ୍ଷାରତ । (୩ୟ ଛାନ୍ଦ)

ସମୟ ବସନ୍ତ ଋତୁ । ସେ ଦିନ ଫାଲ୍‌ଗୁନ ମାସର କୃଷ୍ଣ ଚତୁର୍ଦ୍ଦଶୀ ଅର୍ଥାତ୍ ଶିବରାତ୍ରି । ଶିବ ପୂଜନ ଉଦ୍ଦେଶ୍ୟରେ ରସଲେଖା ନିଜ ସଖୀଙ୍କ ମେଳରେ ଫୁଲ ତୋଳିବା ପାଇଁ ସେହି ବନଭୂମିରେ ପ୍ରବେଶ କଲେ । ସେମାନଙ୍କ ଯୌବନ ସୁଲଭ ହର୍ଷୋତ୍ଫୁଲ୍ଲ ଛଳୋକ୍ତି ପୂର୍ଣ୍ଣ କଥୋପକଥନ, ଅନତି ଦୂରରେ ଅପେକ୍ଷା-ରତ ରାଜକୁମାରଙ୍କୁ ବିମୋହିତ କଲା । ଏପରି ସମୟରେ ବିଶ୍ୱଭୂତ ଉପସ୍ଥିତ—

'କାମ କଳ୍ପତରୁ ତରୁଣୀ ମଣି ପୂର୍ଣ୍ଣି ଦେଖିଲା ।
ଅଣିମାଦି ସୁଖ ଆଣି ସେ ପୁଂସ ପାଣିରେ ଦେଲା । (୪ର୍ଥ ଛାନ୍ଦ)

ଅଭିଳଷିତ ପ୍ରେମିକାର ଦର୍ଶନ ସୌଭାଗ୍ୟ ଲାଭ ଫଳରେ ପ୍ରେମିକ ହୃଦୟର ଭାବସମୁଦ୍ରରେ ପ୍ରେମିକାର ମନୋମୁଗ୍ଧକାରୀ ଶୋଭା ସମ୍ପଦ ଯେଉଁ ଅବର୍ଣ୍ଣନୀୟ ଉଦ୍‌ବେଳନ ସୃଷ୍ଟି କରେ, ତାହା ରସଲେଖାର ଦର୍ଶନ ମାତ୍ରେ ବିଶ୍ୱଭୂତର ହୃଦୟରେ ସମ୍ଭବ ହେଲା । ପ୍ରେମିକା ଗତ ପ୍ରାଣ ବିଶ୍ୱଭୂତ ସତୃଷ୍ଣ ନୟନରେ ପ୍ରେମିକାର ଆଗମନ ପଥକୁ ଅପେକ୍ଷା କରିଥିବା ସମୟରେ ସର୍ଖୀ ସହଚରୀଙ୍କ ଗହଳରୁ ଅଲଗା ହୋଇ ଫୁଲ ତୋଳିବା ଅବସ୍ଥାରେ—

'ଯାଉଁ କଣ୍ଠା ସେବତୀ ଲତା ତଳେ ।
ଅଛୁ ରସିକ ତହିଁ ଆସି ମିଳେ ।
ଫୁଲ ତୋଳନ୍ତେ ବଢାଉ ଶ୍ରୀକର ।
ପୁଂସେ ପଡ଼ିଲା ନୟନ ତାହାର ।

ବୋଲିହେ ନ ମୂକ ପରାଏ ଜଡ଼ିଲା ।
ଚାହିଁ ନ ଚାହିଁଲ ପ୍ରାୟେ ରହିଲା ।’’

ଏପରି ଅବସ୍ଥା ସୃଷ୍ଟି ହୁଅନ୍ତେ ରାଜକୁମାର ରସଲେଖାର ମର୍ମ ଆକର୍ଷଣ ପାଇଁ ସବିନୟ ଚାଟୂକ୍ତି ରଚନା କରିବା ସମୟରେ, ସଖୀ ସୁଶୀଳା ସେଠାରେ ପ୍ରବେଶ କରି ରସଲେଖାର ପ୍ରେମାତୁର ଭାବ ଲକ୍ଷ୍ୟକରେ ଏବଂ ମାତାଙ୍କ ଡ଼ାକରା ବୋଲି ଜଣାଇ, ଋଷିକନ୍ୟାଙ୍କୁ ସଙ୍ଗରେ ଧରି ସେଠାରୁ ପଳାୟନ କରେ । ପରସ୍ପର ପ୍ରୀତି ପାଗଳ ପ୍ରେମିକ ପ୍ରେମିକାଙ୍କ ହୃଦୟ କେଦାରରେ ବିଚ୍ଛେଦ ଦୁଃଖର ବୀଜ ଅଙ୍କୁରିତ ହୁଏ । (୫ମ ଛାନ୍ଦ)

ପ୍ରେମିକ ଶିଶୁଭୂତର ବିରହାନୁଭୂତ ଜନିତ ବିଗଳିତା ନାୟିକା ରସଲେଖା ଅଳିଙ୍ଗନୀୟ ଅନୁଚିନ୍ତା । ସମଦଶାପନ୍ନ କାବ୍ୟ ନାୟକର ଏଥିପାଇଁ ପ୍ରେମ ପତ୍ର ଲିଖନ । ଏହି ପତ୍ରିକାକୁ ସୀମନ୍ତ ସ୍ଥାନରେ ରଖି ସେହି ବନ ଭୂମିରେ ଶୟନ । ରସଲେଖାର ସଖୀଙ୍କ ଦ୍ୱାରା ତାହା ଗ୍ରହଣ ଏବଂ ନାୟକ ପ୍ରତି ଅନାତୁର ଜୀବନ ଯାପନ ଲାଗି ନିର୍ଦ୍ଦେଶ ପ୍ରଦାନ । (୬ଷ୍ଠ ଛାନ୍ଦ)

ପ୍ରିୟ ବିରହ ବିଧୁରା ପ୍ରେମିକା ପ୍ରିୟାର ଦୁଃସହ ବିରହ ବର୍ଣ୍ଣନାରେ ପ୍ରେମିକର ସଗୁଣ ରୂପ ମାଧୁର୍ଯ୍ୟ କୀର୍ତ୍ତନ । ଏପରି ପରିସ୍ଥିତିରେ ସଖୀଙ୍କ ମୁଖରେ ପ୍ରେମିକ କରାଙ୍କିତ ପ୍ରେମ ପତ୍ର ଶ୍ରବଣ । ଏହାପରେ ପ୍ରେମିକାର ସହୃଦୟ ହୃଦୟ ସଂବେଦ୍ୟ ବିରହ ଅବସ୍ଥାର ମନୋଜ୍ଞ ଭାବଚିତ୍ରର ପ୍ରତିଫଳନ । (୭ମ ଛାନ୍ଦ)

କାମଜ୍ୱର ଜର୍ଜରିତା ଅସହ୍ୟ ବିଚ୍ଛେଦ ବେଦନା ଦର୍ଶନରେ ସହଚରୀ ଗଣଙ୍କ ପ୍ରାର୍ଥନା-‘ଶୁଣି ସବେ ଉତ୍ସୁକ ଏ ଲାଭ ବେଗେ ପଢ଼, ବୋଲି ହରି ହରେ ଏକା ବେଳେ କଲେ ସ୍ତୁତି’ । (୮ମ ଛାନ୍ଦ)

ଏହି ସମୟରେ ନିଶାର୍ଦ୍ଧରେ ରାଜକୁମାରଙ୍କ ପ୍ରିୟା ବିରହ ଗୀତ ଶୁଣି ରସ-ଲେଖାର ସଖୀ ଆନନ୍ଦିତ ମନରେ ଋଷିକନ୍ୟାଙ୍କ ନିକଟରେ ଯାଇ ପ୍ରକାଶ କଲେ- ‘ଯେଣସେ ଯେତେ ସୁନ୍ଦର, ତେତିକି ଗୁଣ ମନ୍ଦର, ବଡ଼ ପ୍ରୀତ ବନ୍ତ ମହା ଅନୁରାଗୀ, ସ୍ୱର୍ଣ୍ଣିନରେନ୍ଦ୍ର କୁମାର । ଆହା ପାଇଲି କି ଦୁଃଖ, ବନେ ବାସ କଲି ଦେଖ, କି କରି ବୋଧିବା, ଆପେ ବୋଧି ହେବା, ନ ମାରୁ ଫୁଲ ବିଶିଖ ।’ ଏପରି ଭାବନାରେ ପ୍ରୀତି-ସ୍ୱୀକାରପତ୍ର ପ୍ରଦାନ କରିବା ପାଇଁ ନାୟିକାର ସମ୍ମତି ପ୍ରକାଶ । (୯ମ ଛାନ୍ଦ)

ତା’ପର ଦିନ ପ୍ରଭାତ ହୁଅନ୍ତେ ରସଲେଖାର ସ୍ୱୀକାର ପତ୍ରନେଇ ସଖୀ ପ୍ରେମଶୀଳା ଓ ସୁଶୀଳାଙ୍କ ବନଭୂମିରେ ପ୍ରବେଶ । ସେ ଦୁହିଁଙ୍କର ସରୋବର ମଧ୍ୟରେ

ପଦ୍ମ ତୋଳିବା ଅବସ୍ଥାରେ ରସଲେଖାର ଦୁଃସହ ବିରହ ବର୍ଣ୍ଣନାର କଥା ଉପସ୍ଥାପିତ । ଏହି କଥା ଶୁଣି ରାଜକୁମାର ନିଜକୁ ସମଦଶାପନ୍ନ କହି ପଦ୍ମ କାଢ଼ି ଦୁଇଟି ମାଗିବାରେ ପ୍ରେମଶୀଳା— 'ଶୁଣିଲେଖ ଥିବା ପଦ୍ମ ଦେଲି ସଂଶୟ କରେ'। ବଶୀଭୂତ ପଦ୍ମକୋଷ ମଧ୍ୟରୁ ରସଲେଖାର ପ୍ରୀତି ଲେଖ ଆବିଷ୍କାର କରି 'ମୁଦ ଫିଟାଇ ପଢ଼ିଲି ଅନୁରାଗ ଖୋଲେ ।' ପ୍ରେମ ପତ୍ରର ସାରାଂଶ 'ନାହିଁ ଗତି ତୁମ୍ଭ ବିନୁ ରସଦାୟିକାର । କି ରୂପେ କରିବ ତାହି ବେଗିକରି କର'। ଏହା ବୁଝିବା ପରେ ନାୟକ ସବିଶେଷ ଆନନ୍ଦ ଲଭ କଲେ । (୧୦ମ ଛାନ୍ଦ)

ଅଶୋକ ବନରେ ଅଶୋକ ମନରେ ରାଜକୁମାର ସଖୀ ସୁଶୀଳାଙ୍କ ନିକଟରେ ରସଲେଖା ପ୍ରତି ଅନୁରାଗ ରଞ୍ଜିତ ମନୋଭାବ ପ୍ରକାଶ କଲେ । ଏପରି ସେହି ପୂର୍ଣ୍ଣ ବଚନ ଶ୍ରବଣ କରି ସଖୀ-– 'ଯୋଗ ହେବା ଯୋଗ ହୋଇବ ଦୁହିଁଙ୍କ ଏଭଲେ ନାରଦ ଯତି'। ବୋଲି କହି ରସଲେଖା ନିକଟକୁ ଯାତ୍ରା କଲେ ।

(୧୧ଶ ଛାନ୍ଦ)

'ସୁରୁଷ ରତନ ଯତନ ବଚନ ରଚନ ଯେତେ କରିଥିଲି । ରଜନୀ ରଜନୀ କର ହାସୀ ପିକଭାଷୀ ଛାମୁରେ ଜଣାଇଲି ।' ନାୟକର ଅନୁରାଗ ସମ୍ବାଦ ଶ୍ରବଣ କରି ନାୟିକାର ଅଶେଷ ଆନନ୍ଦ ଅନୁଭବ । ରସଲେଖା–ପ୍ରୀତି–ଆସକ୍ତ ରାଜକୁମାର 'ନିକଟେ ଘନରସ ବୃଷ୍ଟି ହୋଇବ ଏ ଭରସା' ରଖି 'କିନ୍ନର, ଜଣକ ସଙ୍ଗେ ହୋଇ ମିତ । ହାରି ଦିନ ମନ ମାନସେ ଭାବଇ ରସସିନ୍ଧୁ ବନ୍ଧୁ ନିରତ ।' ଏତିକ ବେଳେ- 'ନାରଦ ଶରଦ କୁନ୍ତଳା ନୃପଜା ମହୀ ଆରତିକୁ ଜାଣିଲେ । ବିଶ୍ୱକର୍ମା ଠାରୁ ତ୍ରିଲୋକ ଲେଖା ପଟ ଦେଇ ଯୋଗିନୀ ପେଷିଲେ'। ସେହି ଯୋଗିନୀ— 'ରାଜର୍ଷି ପାଶେ ହୋଇଲି ବୋଇଲି ସେ ପ୍ରେରିତ ମୁଁ ନାରଦରେ । ସୃଷ୍ଟି ଯାକ ଦୃଷ୍ଟି ରହିଲାଟି ପୁଷ୍ଟି ହୋଇଟେ କୁମାରୀ ଉପରେ । ଏଥିରେ, ମନ୍ଦ ଉପୁଜିବ ହେ ଯେନ । ଦେଖାଇ ଏ ପଟ ଯାହାରେ ଲୋଭିଷ୍ଟ ତାହାରେ କର ପରଦାନ ।' ଏହା ଶୁଣି ରାଜର୍ଷି ଆନନ୍ଦ ମନରେ ବୃନ୍ଦାଦାସୀ ସହ ଯୋଗିନୀଙ୍କୁ, ରସଲେଖା ନିକଟକୁ ପଠାଇ ଦେଲେ । ଯୋଗିନୀ ରସଲେଖା ସମ୍ମୁଖରେ ତ୍ରିପୁର ସ୍ଥିତ ଦେବ, ଦାନବ ଏବଂ ମାନବାଦିଙ୍କ ଚିତ୍ରପଟ ପ୍ରଦର୍ଶନ କରି କହିଲେ— 'ଦେଖ ସୁଧାନିଧି ପୁର ନରେଶ ଏ ସୁତକୁ ଟୀକା ଦେଇଅଛୁ । ପ୍ରତ୍ୟକ୍ଷ କୁମାର ଶୋଭନକୁ ମାର ରସକୁ କୁମାରୀ ଜନ୍ମିଛୁ । ବାଲାରେ । ଏ ସକଳ ଗୁଣ ନିଧାନ । କାମ କପଟିଏ ମୋହନ କରଣେ ସାକ୍ଷାତରେ ମଧୁସୂଦନ । ଏହି ଚିତ୍ରପଟ

ଦର୍ଶନରେ ରୂପଲେଖାର ମନ ବିମୁଗ୍‌ଧ ହେବାର ଜାଣି ଯୋଗିନୀ କହିଲେ- 'ବାଳାରେ, ଆଉ ଦେଖାଇ କି ହୋଇବ । ସୃଷ୍ଟି ସ୍ଥାନରେ ଦୃଷ୍ଟି କାହିଁ ନ ଦେଲୁ ଜାଣିଲୁ ଏହା ଠାରେ ଭାବ ।' ଏହାପରେ ଯୋଗିନୀ 'ଏତେ ବୋଲି ଗଲା ତାତଙ୍କୁ କହିଲା ଏ ପୁଂସେ ବଶ ତୋ କୁମାରୀ ।' ଏହି କଥା ଶୁଣି ଋଷି କପିଳାଙ୍କ ବିଚାର କରି କହିଲେ- 'ଆଗ କରି ଗୃହ ପ୍ରବେଶ କରିବ କି କରି ।' 'ନାରଦ, ଏକାଳେ ହୋଇଲେ ପ୍ରବେଶ । ବୋଇଲେ ତାଙ୍କୁ ଏକା କରି ଆଣିବ ମନରୁ ସଂଶୟ ବିନାଶ ।' ପରିଶେଷରେ ନାରଦ ନିଜେ ବିଶ୍ୱଭୂତଙ୍କୁ ବର ରୂପରେ ଆଣି ରୂପଲେଖା ସହିତ ବିବାହ କାର୍ଯ୍ୟ ସମ୍ପାଦନ କଲେ । (୧୨ଶ ଛାନ୍ଦ)

ଅପରାହ୍ନ ସନ୍ଧ୍ୟା । ନବ ବିବାହିତା ରୂପଲେଖାର ମଧୁଶଯ୍ୟାପୁର ଗମନର ଉଦ୍ଦେଶ୍ୟରେ ସଖୀମାନଙ୍କ ଦ୍ୱାରା ବେଶ ରଚନା କାଳରେ ଅଳଂକାର ବିଭୂଷିତା ପ୍ରିୟ ସଖୀର ଅତୁଳନୀୟ ଶୋଭା ଦର୍ଶନ କରି—'ଦଣ୍ଡେ ଯାଏ କଲେ ଏହି ବିଚାର । କାଣ୍ଡେ କାଣ୍ଡେ ମାରେ କୁସୁମ ଶର । ଖଣ୍ଡେ ଅନାଇଲେ ବରୁଣ ଦେଖେ । ଗଣ୍ଡେ ତାର ପ୍ରେମ ରାଜ୍ୟ ଉଦ୍ଭବେ ଯେ । ଏହି ସମୟରେ ଆଳି ଯେ । ମଧୁଶଯ୍ୟାପୁର ମଣ୍ଡନେ ଗମିଲେ ବାଳାବେଶ କରିସାରି ଯେ ।' ତାପରେ ମିଳନାନୁରାଗ ବର୍ଦ୍ଧନକାରୀ ରଜନୀ ଦ୍ୱିତୀୟ ବୟୋବୃଦ୍ଧି ବେଳରେ ରାଜକୁମାରଙ୍କୁ ସଖୀମାନେ ଜଣାଇଲେ—'ଅବଧାନ ହେଉ କେଳି ସଦନକୁ ଶ୍ରୀମୁଖରେ କହିଲେ ତହିଁ ଯେ' । ଏହାଶୁଣି—'କୁମର ବିଜୟ ହରଷ ହୋଇ । ପଲକେ ମଧୁଶଯ୍ୟା ପୁରେ ଯାଇ ।' (୧୩ଶ ଛାନ୍ଦ) ସଖୀଙ୍କ ସରସ ସମ୍ଭୋଗ ଉପଦେଶ ଶୁଣୁଶୁଣୁ ରୂପଲେଖା ମଧୁଚନ୍ଦ୍ରିକା ଗୃହ ମଧ୍ୟରେ ପ୍ରବେଶ କଲେ । ଗାର୍ହସ୍ଥ୍ୟ ଜୀବନର ପରମ ଉପଭୋଗ୍ୟ 'ସେ ରାତି କି ରହେ ରସେ ସାରିଲେ ଦମ୍ପତି । ନିଦ୍ରା ହୋଇ ଆସିନାହିଁ ବେନି ନେତ୍ର ଜଡି ଯେ ।' (୧୪ଶ ଛାନ୍ଦ)

ଏପରି ସାତ ଦିନ ମହା ଆନନ୍ଦରେ ଅତିବାହିତ ହେବାପରେ 'ଅଷ୍ଟମୀ ନିଶା ଅଷ୍ଟମ ଦଶା ହେବାକୁ ତତପର' । 'ଏଦିନ କେହି ସାରିବ ମୁହିଁ କହିଲି କି ବିଚାର । ସୁଗନ୍ଧ ବିନୁ ସୁଗନ୍ଧ ଅନୁ ସରିଲେ ନ ଦିଶଇ । ଆଜ ଦିନକ ନେବ ଅନେକ ଉପମା ଅଙ୍ଗେ ଦେଇ ।' ପ୍ରେମିକ ପତି ନିକଟରେ ପ୍ରେମିକା ପତ୍ନୀର ଦିନକ ପାଇଁ ହେଲେ ମଧ୍ୟ ଦୂରେଇ ରହିବା ଯେ କି ଭଳି ଅସହ୍ୟ, ସେହି ଅବିସ୍ମରଣୀୟ ପ୍ରେମଭାବର ହୃଦୟହାରିଣୀ କାନ୍ତାନୁଚିନ୍ତାରେ ଏହି ଛାନ୍ଦଟି ରଚିଛି । ଏହି ଅଷ୍ଟମ ଦିନଟିର ଅବସାନ ପରେ 'ଉତ୍ତମ ବେଳେ ଯୁବତୀ ମିଳେ

ପାଦରେ ହୋଇ ବଶ । ଯେତେବେଳେ ଯୁବତ୍ୱଙ୍କ ରଙ୍କ ରତନ ହଜଇ ପୁନଃ ପାଇଲ୍ ପର ତୁଷ୍ଟ । କୋଳେ ବସାଇ କହେ ରସାଇ ଦେଦନ ଯେତେ କଷ୍ଟ ।' ( ୧୫ଶ ଛାନ୍ଦ )

ଏପରି ନବଦମ୍ପତିଙ୍କ ପ୍ରୀତି ବର୍ଦ୍ଧନ ଅବସରରେ ରସିକ ପତି ବସ୍ତୁଭୂତ ନନକୁ ଭାଗ୍ୟବାନ ମନେକରି, ବିଯୋଗୀ ମନ ଦହନକାରୀ ବର୍ଷା, ଶୀତ ଏବଂ ବସନ୍ତ ଋତୁକୁ ଉପଭୋଗ କରିବାରେ, ନବ ଯୁବତୀ ରସଲେଖାର ଯାହାଧି ଯୋଗୁଁ ଭୟଭୀତ ନହୋଇ ଧରଙ୍ଗରେ, ଦାମ୍ପତ୍ୟଲୀଳା ରଚନା କରୁକରୁ ଏକ ବର୍ଷ ଅତିବାହିତ ଯେ କପରି ହୋଇଗଲା, ଜାଣିପାରିଲେ ନାହିଁ । (୧୬ଶ ଛାନ୍ଦ)

ଏଣେ ଏକ ବର୍ଷ ବ୍ୟାପୀ ପୁତ୍ର ବିଚ୍ଛେଦ ଦୁଃଖରେ ସୁଧାନିଧି ନୃପତି ବ୍ୟାକୁଳ ହୋଇ ଗୁପ୍ତଚରଙ୍କୁ ଦୂତ ପ୍ରେରଣ କଲେ । ଚତୁର୍ଦ୍ଦିଗ ଅନ୍ୱେଷଣ ପରେ ଗୁପ୍ତଚରଗଣ 'ଲେଉଟି କହିଲେ ନରପତି ପାଶେ ଶୁଣ ହେ କଳବର୍ଣ୍ଣେଶ୍ୱର । ଘୋର ବନଟିରେ ଦେଶ ଆଦି କରି କାହିଁ ନ ଦେଖିଲୁ କୁମର ।' ଏହି କଥା ଶୁଣି ରାଜନ ସନ୍ତାପ ସାଗରରେ ନିମଜ୍ଜିତ ହେଲେ । ଏହି ସମୟରେ ଚାତୁର୍ମାସ୍ୟ ବ୍ରତ ପାଳନ ଅଭିପ୍ରାୟରେ ନିଶାକର ଋଷିଙ୍କର ସେହି ରାଜ୍ୟକୁ ଆଗମନ ହେଲା । ରାଜା— 'ଆତଙ୍କ ହୋଇ କୁମାର ହଜିଲାର କହିଲା ତାଙ୍କ ସନ୍ନିଧାନେ' । 'ଲଗ୍ନ ବଳରେ । ସେ ସମସ୍ତ କଥା ଜାଣିଲେ । ସେଦିନ ନିଶିଅନ୍ତେ ରାକ୍ଷସ ପକ୍ଷେ ଶଯ୍ୟନୁ କୁମର ହରିଲେ ।' ରାଜପୁତ୍ର ନିଦ୍ରା ତ୍ୟାଗ କରନ୍ତେ ରସଲେଖାର ବିଚ୍ଛେଦ ଦୁଃଖରେ କାତର ହେଲେ । କିନ୍ତୁ ପିତା ମାତା ପୁତ୍ରକୁ ଦେଖି ସନ୍ତୋଷ ଲାଭ କଲେ । ମାତ୍ର, ରସୋଦୟ ବନ ଭୂମିରେ ରସଲେଖା ମଧ୍ୟ ପତି ବିଚ୍ଛେଦ ବେଦନାରେ ବିମର୍ଦ୍ଦିତା ହେଲେ । ( ୧୭ଶ ଛାନ୍ଦ ) ପତ୍ନୀ ବିରହ ବିଧୁର ରାଜକୁମାରଙ୍କ ବର୍ଷା ଋତୁରେ ମର୍ମନ୍ତୁଦ ବିରହ ମୂର୍ଚ୍ଛନା । ( ୧୮ଶ ଛାନ୍ଦ ) ଏହି ବର୍ଷା କାଳରେ—'ନେତ ନାଗର ବର, ତୁହି ନବ ମୁଦିର, ପ୍ରିୟା ପାଶକୁ ଦୂତ କରେ । ଯେନ ବିଳମ୍ବ ମୋର ବେଗେ ଗମନ କର, କହିବ ବାନ୍ଧବୀ ତୁମ୍ଭରେ । ହେ ନବଘନ । ତା'ପାଇଁ ହେଲ ଦନୁ ଭିନ୍ନ, ସରଇ ନାହିଁ ନିଶି ଦିନ ।' ମେଘଦୂତ ମାଧ୍ୟମରେ ରାଜକୁମାରଙ୍କ ପ୍ରିୟା ନିକଟକୁ ଅତୀତ ପ୍ରୀତି-ସ୍ମରଣ-ସୂଚକ ସନ୍ଦେଶ ପ୍ରେରଣ । (୧୯ଶ ଛାନ୍ଦ) ଏ ପଟେ କାବ୍ୟ ନାୟିକା ରସଲେଖାର ଅକଥନୀୟ ବିରହ ଯନ୍ତ୍ରଣା । ପରିଶେଷରେ ଜଣେ ସନ୍ନ୍ୟାସୀଙ୍କ ହାତରେ, ରସଲେଖା ବିନୟ ପତ୍ରିକା ଦେଇ ସ୍ୱକାନ୍ତ ନିକଟକୁ ପ୍ରେରଣ କଲେ । (୨୦ଶ ଛାନ୍ଦ)

ଯୁବରାଜ ବିଶ୍ୱଭୂତିଙ୍କ ଅସହ୍ୟ ବିରହ ବେଦନାର ଅନ୍ତ ନାହିଁ । ଏହା ଦେଖି ମିତ୍ରଗଣ ରାଜାଙ୍କ ସମ୍ମୁଖରେ ନିବେଦନ କଲେ । ଦୁର୍ଗାଙ୍କ ଆଶୀର୍ବାଦ ଫଳରେ ରାଜକୁମାରଙ୍କ ରସୋଦୟ ବନ ଗମନ, ସେଠାରେ ଋଷିକନ୍ୟା ଦର୍ଶନ ଜନିତ ଫଳ ପ୍ରତି ଅନୁରାଗ ବର୍ଦ୍ଧନ ଏବଂ ରସଲେଖାଙ୍କ ସହିତ ନାରଦ କର୍ତ୍ତୃକ ବିବାହାଦି ପ୍ରସଙ୍ଗ ରାଜା ଶ୍ରବଣ କଲେ । ଏହି କଥା ରାଜା ନିଶାକର ଋଷିଙ୍କୁ ଜଣାଇ ସମାଧାନର ସୂତ୍ର ବାହାର କରିବା ପାଇଁ ଅନୁରୋଧ କଲେ । ନିଶାକର ଋଷିଙ୍କ ମୁଖରୁ ଋଷି କପିସାଞ୍ଜ, ସିନ୍ଧୁ ଦେଶ ନରେଶ ଜୟସନ୍ଧଙ୍କ ବଂଶରେ ଜନ୍ମଲାଭ କରିଥିବା ଶୁଣି ପ୍ରମୋଦିତ ହେଲେ । ଏହାପରେ ରସଲେଖାଙ୍କୁ ପୁତ୍ର ବଧୂ ରୂପେ ନିଜ ରାଜ୍ୟକୁ ଆଣିବା ପାଇଁ ମନ୍ତ୍ରୀଙ୍କୁ ପଠାଇଲେ । ରାଜକୁମାର ଏହା ଜାଣି ମନ୍ତ୍ରୀ ନନ୍ଦନ ହାତରେ ପ୍ରିୟା ନିକଟକୁ ପ୍ରେମ ପତ୍ରିକା ପ୍ରେରଣ କଲେ । ମନ୍ତ୍ରୀ ଏବଂ ମନ୍ତ୍ରୀ ନନ୍ଦନ ରସୋଦୟ ବନଭୂମିରେ ରାଜର୍ଷି କପିସାଞ୍ଜଙ୍କୁ ସାକ୍ଷାତ କରି ସମସ୍ତ କଥା ବର୍ଣ୍ଣନା କରନ୍ତେ, ଉଭୟ ବନ୍ଧୁଦ୍ୱୟ ପାଣରେ ଆମୋଦିତ ହେଲେ । (୨୯ଶ ଛାନ୍ଦ)

ରସଲେଖା ପ୍ରିୟ ପତିଙ୍କ ପ୍ରେମ ପତ୍ର ପାଠକରି ଅଶେଷ ଆନନ୍ଦ ଅନୁଭବ କଲେ । ଏପରି ପରିସ୍ଥିତିରେ ବନ୍ଧୁ ବାନ୍ଧବଙ୍କ ସହିତ ମାତା ପିତାଙ୍କ ନିକଟରୁ ବିଦାୟନେଇ ରାଜର୍ଷି ନନ୍ଦନା ରସଲେଖା—'ସୁଧାନିଧି ପୁରେ ଯାଇ, ମହା ସମାରୋହେ ତହିଁ, ସନ୍ଧିରେ ଉତ୍ସବ ଭିଆଇଲେ ।' ସୁଧାନିଧି ପୁରରେ ପତି ପତ୍ନୀଙ୍କ ପୁନଃମିଳନ ବର୍ଣ୍ଣନାରେ କାବ୍ୟ କଥାବସ୍ତୁର ପରିସମାପ୍ତି । (୨୨ଶ ଛାନ୍ଦ)

**ରସାନୁକୂଳ କଥାବସ୍ତୁର ପ୍ରଜ୍ଞାଦୀପ୍ତ ନୂତନତା:**–ପ୍ରତିଭା ଶବ୍ଦର ଅର୍ଥାନୁଯାୟୀ ଏହି କାବ୍ୟ କଥାବସ୍ତୁ ପରିକଳ୍ପନାର ମନୋଜ୍ଞତା ପ୍ରଣିଧାନ ଯୋଗ୍ୟ । ସାଧାରଣତଃ କାବ୍ୟ, କଥ ବସ୍ତୁର ଗଠନ କଳା, ସରସ ଘଟଣା ପ୍ରଧାନ, ସ୍ଥାନ, କାଳ ଓ ପାତ୍ରାଦିର ନାଟକୀୟ ସଂସ୍ଥାପନ ଦ୍ୱାରା ଆନନ୍ଦ ଦାୟକ ହୋଇଥାଏ । ସମୀକ୍ଷିତ ଶୃଙ୍ଗାର ରସପ୍ରଧାନ କାବ୍ୟର କଥାବସ୍ତୁକୁ ରସାନୁକୂଳ କରି ଗଢି ତୋଳିବାରେ କବିଙ୍କ ନିର୍ବାଚିତ ସ୍ଥାନ ଦୁଇଟିର ମହତ୍ୱ ଅନୁଭବନୀୟ । ପ୍ରଥମଟି ରସୋଦୟ ବନ ଏବଂ ଅନ୍ୟଟି ସୁଧାନିଧି ନାମକ ନଗର । କାମରସ ସୃଷ୍ଟି କରି-ବାରେ ଅନ୍ୱର୍ଥ, ରସୋଦୟ ବନଭୂମିର ଋଷିକନ୍ୟା ରସଲେଖା ଏବଂ ଚନ୍ଦ୍ରକାନ୍ତିର ସମୃଦ୍ଧିର ପୀଠସ୍ଥଳୀ ସୁଧାନିଧି ନଗରର ରାଜ ପୁତ୍ର ବିଶ୍ୱଭୂତି, ଏହି କାବ୍ୟର ନାୟିକା ଓ ନାୟକ । ଆଦ୍ୟ ଯୌବନ ସଂସର୍ଗରେ ଉଭୟଙ୍କ ମନରେ କାମଲାଳସା ଜାଗ୍ରତ ହେବା ସ୍ୱାଭାବିକ । ଏପରି ଅବସ୍ଥାରେ ଉଭୟ ହୃଦୟରେ ସମୟୋଚିତ ମଧୁମୟ ବସନ୍ତର ରାଜତ୍ୱ ବିଶେଷଭାବେ ଉପଭୋଗ୍ୟ । ଯୁବରାଜଙ୍କ ସୁକନ୍ୟା ପ୍ରାପ୍ତି ନିମିତ୍ତ ଗୌରୀ ଉପାସନା । ତା'ର ଫଳ ସ୍ୱରୂପ ଦୁର୍ଗାଙ୍କ ସ୍ୱପ୍ନ ସଙ୍କେତ ପ୍ରଦାନ ଏବଂ

କିଛିଦିନ ପରେ ନିଦ୍ରିତା ଅବସ୍ଥାରେ ତାଙ୍କର ଦ୍ୱାରା ରତ୍ନୋଦୟ ବନରେ ପ୍ରବେଶ । ସଖୀ ବେଷ୍ଟିତା ରସଲେଖାର କୁସୁମ ଚୟନ କାଳରେ, ସେହି ବନଭୂମିରେ ଅପେକ୍ଷାରତ ଯୁବରାଜଙ୍କ ସହିତ ଏକାନ୍ତରେ ମିଳନ । ଯୁବରାଜଙ୍କ ପ୍ରେମ ନିବେଦନ । ରସଲେଖାଙ୍କ ପ୍ରେମାତୁର ଅବସ୍ଥା ଅବଲୋକନ କରି, ସଖୀଙ୍କ ଦ୍ୱାରା ମାତାଙ୍କ ଡ଼ାକରା କହି, ସେଠାରୁ ଋଷି କନ୍ୟାଙ୍କୁ ନେଇ ସ୍ୱଗୃହ ପ୍ରତ୍ୟାବର୍ତ୍ତନ । ରାଜ କୁମାର ଏବଂ ଋଷି କନ୍ୟାଙ୍କ ପୂର୍ବରାଗ ଏବଂ ମାନ ସମ୍ବଳିତ ବିରହ ବେଦନାର ଅନୁଭବ । ବିରହିଣୀ ରସଲେଖାର ଅସହ୍ୟ ଦୁଃଖ ଦେଖି ସଖୀଙ୍କ ବନ ଗମନ । ସମଦଶାପନ୍ନ ବିଶ୍ୱଭୂତିର ବିରହ ସଙ୍ଗୀତ ଶୁଣି, ସେ ଯେ ରାଜପୁତ୍ର, ରସଲେଖା ନିକଟରେ ସଖୀଙ୍କ ଦ୍ୱାରା ଏହି ତଥ୍ୟର ଉଦ୍‌ଘାଟନ । ଉଭୟଙ୍କ ମଧ୍ୟରେ ପ୍ରେମ ପତ୍ର ବିନିମୟ ଏବଂ ପ୍ରୀତିଭାବର ପରିବର୍ଦ୍ଧନ । ଇତ୍ୟବସରରେ ନାରଦ କର୍ତ୍ତୃକ ଯୋଗିନୀଙ୍କ ଦ୍ୱାରା କପିଞ୍ଜଳଙ୍କ ନିକଟରେ କନ୍ୟାର ବିବାହ ସମୟର ସୂଚନା ଉପସ୍ଥାପନ ଏବଂ ଚିତ୍ରପଟ ପ୍ରଦର୍ଶନ । ତ୍ରିଲୋକର ଚିତ୍ରପଟ ମଧ୍ୟରୁ, ରସଲେଖାର ମନ ଅଭିଳଷିତ ପ୍ରେମିକ ବିଶ୍ୱଭୂତି ପ୍ରତି ଆକୃଷ୍ଟ ହେବାର ଜାଣି ନାରଦଙ୍କ ସାହାଯ୍ୟରେ ଉଭୟଙ୍କ ବିବାହ କାର୍ଯ୍ୟ ସମ୍ପାଦନ । ଏହି ସମସ୍ତ ଘଟଣା ପ୍ରବାହ, ବିଶେଷଭାବେ ଦ୍ୱନ୍ଦ୍ୱ ଜଡ଼ିତ ଅବସ୍ଥା, ପ୍ରତି କ୍ଷେତ୍ରରେ ସୃଷ୍ଟି କରି, ସାମାଜିକ ମନରେ ରସାନୁକୂଳ ଉତ୍କଣ୍ଠା ଉଦ୍ରେକ କରିବାରେ ସଫଳ ହୋଇ, ବେଶ ନାଟକୀୟତା ସୃଷ୍ଟି କରିଛି । ଏଠାରେ ଶ୍ରୃଙ୍ଗାରିକ ଦ୍ୱନ୍ଦ୍ୱ ରୂପେ ଋଷି କନ୍ୟା ପ୍ରତି ରାଜପୁତ୍ରର ପ୍ରୀତି ଲାଳସା ଏବଂ ବନଭୂମିରେ ଦୂତୀଙ୍କ ଦ୍ୱାରା ଉଭୟଙ୍କ ମିଳନର ଆକସ୍ମିକତା ପରେ ପରେ ସଖୀଙ୍କ ଦ୍ୱାରା ରସଲେଖାର ସ୍ୱଗୃହ ପ୍ରତ୍ୟାବର୍ତ୍ତନ ବର୍ଣ୍ଣନା ଅତ୍ୟନ୍ତ କୌତୂହଳ ଉଦ୍ଦୀପକ ଅଟେ । ପୁଣି ଏଥିଯୋଗୁଁ, ନାୟକ ନାୟିକାଙ୍କ ଅନୁରାଗ ବର୍ଦ୍ଧନ ଜନିତ ବିପ୍ରଲମ୍ଭ ଶୃଙ୍ଗାରାନୁକୂଳ ବିରହାନୁଭୂତିର ଅନ୍ତରଙ୍ଗନ ଅବସ୍ଥା ସହୃଦୟ ହୃଦୟକୁ ବିମୋହିତ କରି, ସେମାନଙ୍କ ମିଳନ କାମନାରେ ଆତୁରତା ପ୍ରକାଶ କରେ । ଏତିକିବେଳେ, ଲୋକ ବିଶ୍ୱାସର ଆଧାରରେ, ଅସମ୍ଭବ ସମ୍ଭବ କାରଣ କ୍ଷମ ଦୈବୀଶକ୍ତିର ଆଶ୍ରୟ ନେଇ, ନାରଦ ଏବଂ ଯୋଗିନୀଙ୍କ ସାହାଯ୍ୟରେ ବିବାହ କାର୍ଯ୍ୟ ସମ୍ପାଦନ କରି, କବି କିଛି ସମୟ ପାଇଁ ଘଟଣା ପ୍ରବାହ ଜନିତ ଅନିଶ୍ଚିତତା ରୂପକ ଉତ୍କଣ୍ଠାର ସମାଧାନ କରିଛନ୍ତି । କିନ୍ତୁ ଅପର ପକ୍ଷରେ ସୁଧାନିଧି ପୁରାଧୀଶ ପୁତ୍ର ବିଚ୍ଛେଦ ଯୋଗୁଁ ମ୍ରିୟମାଣ । ଏପରି ସମୟରେ ନିଶାକର ଋଷିଙ୍କ ଚତୁର୍ମାସ୍ୟା ବ୍ରତ ପାଳନ ଲାଗି ସେହି ରାଜ୍ୟକୁ ଆଗମନ । ରାଜାଙ୍କ ପୁତ୍ର ବିଚ୍ଛେଦ ଦୁଃଖ ଶୁଣିକରି, ସେ ଧ୍ୟାନ ବଳରେ ସମସ୍ତ କଥା ଅବଗତ ହୋଇ ରାକ୍ଷସ ଦ୍ୱାରା ରାଜକୁମାରଙ୍କୁ ସ୍ୱରାଜ୍ୟକୁ ଫେରାଇ ଆଣିବାରେ ରାଜାରାଣୀଙ୍କ ଆନନ୍ଦ ଲାଭ । କିନ୍ତୁ ଆକସ୍ମିକ ବିଚ୍ଛେଦ ଯୋଗୁଁ ରାଜକୁମାର ଏବଂ ଋଷି କନ୍ୟାଙ୍କ ପ୍ରବାସ ଜନିତ

ବିପ୍ରଲମ୍ଭ ଶୃଙ୍ଗାର ରସର ସଂଯୋଗରେ କାରୁଣ୍ୟ ରଚନା ବିଶେଷ ଭାବେ ହୃଦୟ ଦ୍ରାବକ, କବିତ୍ୱ ବାହୁଲ୍ୟ ମାତ୍ର । ଋଷି କନ୍ୟା-ପ୍ରୀତି-ପାଗଳ ରାଜକୁମାରର ଅସହ୍ୟ ବେଦନା ଶ୍ରବଣ କରି ରାଜାଙ୍କର ନିଶାକର ଋଷିଙ୍କୁ ଏହାର ପ୍ରତି ବିଧାନ ପାଇଁ ପ୍ରାର୍ଥନା । ନିଶାକରଙ୍କ ମୁଖରୁ କପିଯାଙ୍କ ଭବିଷ୍ୟ ଅଛନ୍ତି ଜାଣି ରାଜାଙ୍କ ସନ୍ତୋଷ ଲାଭ । ଏହାପରେ ରାଜା ମନ୍ତ୍ରୀଙ୍କୁ ପଠାଇ, ରାଜର୍ଷି କପିଯାଙ୍କଙ୍କ ସହିତ ବନ୍ଧୁତା ସ୍ଥାପନ କରି, ରସଲେଖାଙ୍କୁ ମହା ସମାରୋହରେ ସ୍ୱରାଜ୍ୟକୁ ଆଣି ପୁତ୍ର ବଧୂର ସମ୍ମାନ ପ୍ରଦାନ କରିବାରେ ନାୟକ ନାୟିକାଙ୍କ ପୁନର୍ମିଳନ ବର୍ଣ୍ଣନାରେ କାବ୍ୟର ସୁଖାନ୍ତକ ପରିସମାପ୍ତି ।

ଏହି ସରସ କଥାବସ୍ତୁର ଗଠନ କଳା, ସ୍ଥାନ, କାଳ ଏବଂ ପାତ୍ରାଦିର ସ୍ୱାଭାବିକ ସଙ୍ଗତି ବର୍ଣ୍ଣନା ଅର୍ଥାତ୍ ଘଟଣା ପ୍ରବାହର ନାଟକୀୟତା, ପାତ୍ରୋଚିତ ସଂଳାପ ଧର୍ମୀ କଥନଭଙ୍ଗୀ ଏବଂ ରସାନୁକୂଳ ପ୍ରାକୃତିକ ପରିବେଶର ସଂଯୋଜନା ଦ୍ୱାରା ରୁଚିମନ୍ତ ହୋଇ କବି ପ୍ରତିଭାର ପରିଚାୟକ ହୋଇପାରିଛି । ଏହି କାବ୍ୟର ପ୍ରକୃତି ଚିତ୍ର ଏବଂ ଆଲଙ୍କାରିକ ସୌନ୍ଦର୍ଯ୍ୟ ମୂଲ୍ୟାୟନ କ୍ଷେତ୍ରରେ ମନୋହର କବି ପ୍ରତିଭା ପ୍ରଣିଧାନ ଯୋଗ୍ୟ ।

**ପ୍ରକୃତି ଚିତ୍ରଣରେ କବି ପ୍ରତିଭାର ମୁଦ୍ରାଙ୍କନ—** ରସଲେଖା କାବ୍ୟରେ କବି ଉପେନ୍ଦ୍ର ସ୍ଥାନୀୟ ପ୍ରକୃତ ରୂପେ ରସୋଦୟ ବନ ଏବଂ ସୁଧାନିଧି-ପୁରର ବର୍ଣ୍ଣନା କରିଛନ୍ତି । ଗତିଶୀଳ କଥାବସ୍ତୁର କାଳୋଚିତ ପ୍ରକୃତି ରୂପରେ ଗ୍ରୀଷ୍ମ, ଗ୍ରୀଷ୍ମ, ବର୍ଷା, ଶୀତ ଏବଂ ବସନ୍ତ ଋତୁ ବର୍ଣ୍ଣନା ଚିତ୍ରିତ ହୋଇଛି । ପ୍ରଥମେ କାବ୍ୟର ମୁଖ୍ୟ ରସ ଶୃଙ୍ଗାରାନୁକୂଳ କଥାବସ୍ତୁର ଭିତ୍ତିଭୂମି ପ୍ରସ୍ତୁତ କରିବାରେ ରସୋଦୟ ବନଭୂମି ପରିକଳ୍ପନାର ସାର୍ଥକତା ବିଶ୍ଳେଷ - -

"ସୁଜନ ମନୋରଞ୍ଜନ ହୋଇବ ଏ ଗୀତ । ରସୋଦୟ ନାମେ ବନ ଧରାରେ ଉଦିତ । ଗୌଳ ଦେଶ ନିକଟେ ମଳୟ ଗିରି ପାଶେ । ମହାଭର୍ତ୍ତ୍ରେତା ଯେବେ ସେ ବସିଲେ ପଶେ । କାମଚେଷ୍ଟା ଜାତ ହୋଇ ଲୋଡ଼ଇ ଯୁବତୀ । ଅଭ କେଉଁ ଜନ ଅବା ନୋହିବ ଅଗତି" । (୧/୧୦-୧୨)

ଏଠାରେ ରସୋଦୟ ବନଭୂମିର ପ୍ରାକୃତିକ ଶୋଭା ବର୍ଣ୍ଣିତ ହୋଇ ନ ଥିଲେ ମଧ୍ୟ ସେଇ ବନଭୂମି ଯେ କାବ୍ୟାଶ୍ରିତ ମୁଖ୍ୟ ରସର ସ୍ଥାୟୀ ଭାବ ରତି ଲାଳସାର ପ୍ରକୃଷ୍ଟ ଉଦ୍ଦୀପନ ସ୍ଥଳ ରୂପରେ ଚିହ୍ନିତ ହେବାରେ କମ୍ ତାତ୍ପର୍ଯ୍ୟ ପୂର୍ଣ୍ଣ ନୁହେଁ । ଏହି ବନଭୂମିର ପୁଷ୍ପ ସୌନ୍ଦର୍ଯ୍ୟ (୪/୧୧-୨୬), ସଖୀମାନଙ୍କ ସହିତ

ରସଲେଖାର କୁସୁମ ଚୟନ ପ୍ରସଙ୍ଗରେ ଚିତ୍ତାକର୍ଷକ ଅଟେ । ଏହି ଚିତ୍ରୋକ୍ତ ଗର୍ଭକ ସୁମନ ସଚୟନ କଳା ଉଦ୍ୟାନସ୍ଥିତ ବିବିଧ ପୁଷ୍ପ ସୌନ୍ଦର୍ଯ୍ୟକୁ ଉଦ୍‌ଭାସିତ କରିବା ସଙ୍ଗେ ସଙ୍ଗେ କବି ପ୍ରତିଭାଦୀପ୍ତ କାବ୍ୟ କଳାର ଉତ୍ପାଦ୍ୟ ଲାବଣ୍ୟ ପ୍ରଚ୍ଛର କରେ । ଏହି ଧରଣର ମନୋଜ୍ଞ କବି ପ୍ରତିଭା, ପରବର୍ତ୍ତୀ ସମୟରେ କବିଙ୍କ ପ୍ରତିଷ୍ଠିତ କାବ୍ୟ ଦ୍ୱୟ 'ଲାବଣ୍ୟବତୀ' ଏବଂ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ସମ୍ୟକ୍ ରୂପେ ଉଦ୍‌ଭାସିତ ହୋଇ କବି କୀର୍ତ୍ତିର ମହନୀୟତା ପ୍ରଚ୍ଛର କରେ ।

ସୁଧାନିଧି ପୁରର ବର୍ଣ୍ଣନା;—

"ଏଥି ଅନ୍ତେ ଶୁଣ ନରେ ମଳୟଚିର ଉତ୍ତରେ
ସୁଧାନିଧି ନାମେ ପୁର କି ମନୋହର ଏ ।
ଧବଳ ବର୍ଣ୍ଣେ ଆକାଶେ ସେ ସୁଧାନିଧି ପ୍ରକାଶେ ।
ବିଦେଶୀ ମନ କୁମୁଦ କରେ ପ୍ରମୋଦ ଏ ।
ଅତି ଯତନେ ପବନ, ହୋଇଲେ ନେତ୍ର ପତନ,
ରହଇ ତହିଁରେ ଲାଗି ହୋଇଣ ରାଗୀ ଏ ।
ଅନାଇ ସେଉଁ ବଡ଼ିମା ହରି ଦର୍ପର ବଡ଼ିମା
ହରି ପଡ଼ିବାରୁ ଡ଼ରି ଗମନ୍ତି ଫେରି ଏ ।" (୩/୧-୫)

ଭକ୍ତ କାବ୍ୟ ରସିକ ଗଣ କବିଙ୍କ ପ୍ରତିଭା ଦୀପ୍ତ ଅନ୍ୟ ବିଶିଷ୍ଟ କାବ୍ୟ ମାନଙ୍କ ମଧ୍ୟରେ ଏପରି ସମୃଦ୍ଧିଶାଳୀ ନଗର ପ୍ରକୃତିର ଉତ୍ତରୋତ୍ତର ଚମତ୍କାରିତା ଅବଶ୍ୟ ଲକ୍ଷ କରିଥିବେ ।

**ପ୍ରଭାତ ବର୍ଣ୍ଣନା**— ଆଲୋଚିତ କାବ୍ୟର (୩/୩୫-୩୬, ୧୦/୧-୪ ଏବଂ ୧୪/୫୫-୫୭) କେତୋଟି ସ୍ଥାନରେ ଏହି ସମସ୍ତ ସୂଚନାତ୍ମକ ପ୍ରକୃତିର ପ୍ରତି ଛବି ଅଙ୍କିତ । ଯେତେବେଳେ କାବ୍ୟ ନାୟକ ବିଶ୍ୱଭୂତିଙ୍କୁ ଦୁର୍ଗାଦେବୀ ରସୋଦୟ ବନସ୍ଥଳୀରେ ଛାଡ଼ି ଦେଇଗଲେ ସେତେବେଳେ —

"ରଟିଲେ କୁକୁକୁଟମାନେ କହି ହୋଇଲେ ବିତାନେ
ଭୃଙ୍ଗଙ୍କେ ବିଟପୀ କୋଡ଼ ପଦ୍ମରେ ଛାଡ଼ ଏ ।
ଦ୍ୱିଜ ସମାନ ନିନାଦ ଭଙ୍ଗାଇଲେ ଦ୍ୱିଜ ନିଦ
ସେ ବିପିନେ ବ୍ରହ୍ମହରି ଶବଦ ପରି ଏ ।" (୩/୩୫-୩୬)

ପୁଣି ବିରହ ବିଧୁରା ରସଲେଖା ସଖୀମାନଙ୍କ ହାତରେ ପ୍ରେମାତୁର କାବ୍ୟ ନାୟକ ନିକଟକୁ ପ୍ରେମପତ୍ର ପଠାଇବା କାଳରେ ବିଷୟାନୁକୂଳ ପ୍ରଭାତ ବର୍ଣ୍ଣନା

(୧୦/୧-୪) ଏବଂ ନାୟକ ନାୟିକାଙ୍କ ଦାମ୍ପତ୍ୟ ଜୀବନ ଯାପନ ଜନିତ ସମ୍ଭୋଗ ଲୀଳାର ପରିଶେଷ ପର୍ଯ୍ୟାୟରେ ଉପଗତ ଉଷା ପ୍ରକୃତି (୧୪/୫୫-୫୭) ବିକଶିତ କବି ପ୍ରତିଭାର ରମଣୀୟତା ଧାରଣ କରେ ।

ରଜନୀ ଚିତ୍ରଣ—ସମୀକ୍ଷିତ କାବ୍ୟର ମଧ୍ୟଶଯ୍ୟା ଗୃହ ବିମଣ୍ଡନ କାଳରେ ଦୂତୀ ରୂପରେ ରଜନୀ ପ୍ରକୃତିର ମନୋଜ୍ଞ ପରିକଳ୍ପନା, ବିଶେଷଭାବେ ଚିତ୍ତାକର୍ଷକ ଅଟେ । ଯଥା :—

"ପ୍ରବେଶ ହୋଇଲା ରଜନୀ ଦୂତୀ, ଶ୍ୟାମାକୁ ନେବାକୁ ପୁରୁଷ କତି ।
ପ୍ରଥମରୁ ନୀଳାମ୍ବର ଆଶ୍ରିତ । ତମ କସ୍ତୁରୀ ହୋଇ ବିଲେପିତ ଯେ ।
ପାଚ ଫଳ ଲଜ୍ଜା ହୃତ ଯେ ।
ନେତ୍ର ପଦ୍ମିନୀ କି ମୁଦ୍ରିତ କରାଇ ଅନ୍ଧକାର କରି ନେତ୍ର ଯେ ।
ଅଭିସାରିଏ ହୋଇଲେ ପ୍ରବେଶ, ବିଟପୀ କୁଳଟା ପାଶେ ପ୍ରବେଶ ।
ବାସକ ସଜ୍ଜା ଏ ବାସ ମଣ୍ଡିଲେ, ବିରହିଣୀମାନେ ମନ୍ମଥ ଖଣ୍ଡିଲେ ଯେ ।
ଏମନ୍ତ ସମୟ ଦେଖି ସେ ।
ପୁରୁଷ ବିଗ୍ରହରେ କେତେବେଳେ ଆସି ବସିବ ଚନ୍ଦ୍ରମା ମୁଖୀ ଯେ ।"
(୧୩/୧୬-୧୭)

ଅଲୋଚିତ କାବ୍ୟର ବିଭିନ୍ନ ସ୍ଥାନରେ ଚର୍ଚ୍ଚିତ ଋତୁ ଚିତ୍ରର ମାଧୁର୍ଯ୍ୟ ପ୍ରତିଭା ପ୍ରତ୍ୟୋଦିତ କବି ଶକ୍ତିର ପରିଚାୟକ ହୁଏ । କାବ୍ୟ ପ୍ରାରମ୍ଭରେ ବସନ୍ତ ଋତୁର ସୂଚନା (୧/୧୩-୧୪) ରହିଥିଲେ ମଧ୍ୟ ୪ର୍ଥ ଛାନ୍ଦର ଆଦ୍ୟ ଭାଗରେ ପ୍ରିୟା ମିଳନ-ପ୍ରୟାସୀ କାବ୍ୟ ନାୟକର ଅପେକ୍ଷା କାଳରେ, ଉଦ୍ୟୋଦ୍ୟ ବନଭୂମିରେ, ବାସନ୍ତୀ ପ୍ରକୃତିର ବର୍ଣ୍ଣନା ଅତ୍ୟନ୍ତ ଉପଭୋଗ୍ୟ । ଯଥା :—

"ସୁରଭି ସମ ସେ ହୋଇଛୁ ଅତି ସୁରଭି ହୋଇ ।
ଆଉ ସୁରଭି ଏ ବକୁଳ ଧରି ଅଛନ୍ତି ତହିଁ ।
ପିକ କୁହୁକୁହୁ କରେ ଯେ ତରୁ ଡାଳରେ ବସି ।
କାମ କୁହୁ ଯୋଚି ଯାଇଛୁ କାମ ଚିତ୍ତରେ ଆସି ।
ମଧୁମତ୍ତ ହୋଇ ମଧୁପ କରୁଅଛନ୍ତି ସ୍ୱନ ।
ମାର ପ୍ରହାରିଛୁ ହରେ କି ଲୋହ୍ନ ବାଟୁଳି ମାନ ।
ବହୁ ଅଛୁ ମନ୍ଦ ପବନ ଦହୁଅଛୁ ବିଦେଶୀ ।
ଦକ୍ଷିଣୁ ଆସିଛୁ ଯେଣୁ ଏ ଅଛି ବଦନେ ପଶି ।" (୪/୧-୪)

ଏହି ସ୍ୱାଭାବିକ ସଂଗତି ବସନ୍ତ ପ୍ରକୃତିର ବର୍ଣ୍ଣନ, ସହଜ କବି ପ୍ରତିଭାର ପରିଚୟ ପ୍ରଦାନ କରେ । ଏହି କାବ୍ୟର ଷୋଡ଼ଶ ଛାନ୍ଦରେ କାବ୍ୟ ନାୟକର ସମ୍ଭୋଗ ସୁଖ ବର୍ଣ୍ଣନା ପ୍ରସଙ୍ଗରେ ବର୍ଷା, ଶୀତ ଓ ବସନ୍ତ ଋତୁ ଚିତ୍ରର ମାର୍ମିକ ବର୍ଣ୍ଣନା ଭଙ୍ଗୀରେ କବି ପ୍ରତିଭାର ସୁସ୍ପଷ୍ଟ ପ୍ରତିଛବି ବହନକରେ । ଆଲୋଚିତ କାବ୍ୟର ପ୍ରବାସ ଜନିତ ବିରହ ବର୍ଣ୍ଣନା ପ୍ରସଙ୍ଗରେ ଭାବୋଦ୍ଦୀପକ ବର୍ଷା ଋତୁର ଉପମା ଭିତ୍ତିକ ରମଣୀୟ ଚିତ୍ର କପିର ସହୃଦୟ ହୃଦୟଦ୍ରାବକ ହୋଇଅଛି ଦେଖନ୍ତୁ । ଯଥା :—

ଜଳଦ ଶାର୍ଦ୍ଦୂଳ ପରି ଆସିଲା । ମୃଗ ଥିଲ କି ଚନ୍ଦ୍ରକୁ ଗ୍ରାସିଲା ।
ଅଶେଷ ମୃଗ କଳାସକୁ ଦେଖି । ଚିରି କି ଦେଇ ହୋଇଲା ସୁଖୀ ।
ବାଜି ରାଜି ଗୃହି । ରବି ମଣ୍ଡଳକୁ ଛାଡ଼ିଲା ନାହିଁ ।
ପୁଣି ସେ ପ୍ରଜ୍ୱଳିତ ପିଶାଚୀ ପରାଏ । ମନ୍ତ୍ରୁ ବିଜୁ ଅଧ ମୁଖେ ଦେଖାଏ ।
ଏକ ଚିତ୍ତ ଯେହ୍ନେ ଦକା ବହିଲା । କାଳିକା ସେ କର୍ମ ଭୟ ନୋହିଲା ।
ବିଦେଶେ ଯେ ଥିଲେ । ବନ୍ଦୀ ହୋଇଲେହିଁ ଏଚିନ୍ତା କଲେ ।
ଅନଙ୍ଗ ରାଜା ସାହା ତାକୁ ପାଇ । ଛତ୍ରୁ ଛନ୍ଦକୁ ଧରିରେ ଧରାଇ ।
ଇନ୍ଦ୍ର କୋଦଣ୍ଡ ଜଳଧାରା ଶର । ବଳରେ କଲା କାମୀକି କାତର ।
କି କହିବା ତହିଁ । ନପୁଂସକ ମତ ହୋଇଲେ ସହିଁ ।" (୧୮/୧-୩)

**ଆଲଂକାରିକ ପ୍ରତିଭା** :— ଅଲଂକାର, କାବ୍ୟାଙ୍ଗନାର ଶାରୀରିକ ଶୋଭା ସଂପାଦନ କାରୀ ଧର୍ମ ରୂପେ ବିବେଚିତ । ଶବ୍ଦ, ଚିତ୍ର ଏବଂ ଅର୍ଥ ଭେଦରେ ଏହି ଅଲଂକାର ତ୍ରିବିଧ । ରସଲେଖା କାବ୍ୟର ଆଲଂକାରିକ ସୌନ୍ଦର୍ଯ୍ୟ ପ୍ରତିପାଦନ କ୍ଷେତ୍ରରେ, ଉପେନ୍ଦ୍ର ଭଂଜଙ୍କ ସହଜାତ ଓ ଆହାର୍ଯ୍ୟ କବି ପ୍ରତିଭାର ମନୋହାରିତା ପ୍ରଣିଧାନ ଯୋଗ୍ୟ ।

**ଶବ୍ଦାଲଂକାର-ଚାତୁର୍ଯ୍ୟ** :— ଏହି ଅଲଂକାର କାବ୍ୟର ଶ୍ରୁତି ମାଧୁର୍ଯ୍ୟ ପରିବର୍ଦ୍ଧନ କରିଥାଏ । ଆଲଂକାରିକମାନଙ୍କ ମତରେ ଏହା ଅନୁପ୍ରାସ, ଯମକ ଏବଂ ଯମକାଭାସ ନାମରେ ପରିଚିତ । ବକ୍ରୋକ୍ତି ଜୀବିତକାର କୁନ୍ତକ ଏହାକୁ ବର୍ଣ୍ଣ-ବିନ୍ୟାସ-ବକ୍ରତା ରୂପରେ ନାମିତ କରିଛନ୍ତି । ଆଲୋଚିତ କାବ୍ୟାଙ୍ଗନାର ଶାରୀରିକ ସୌନ୍ଦର୍ଯ୍ୟ ପରିବର୍ଦ୍ଧନରେ ଏହି ଅଲଂକାରର ଚମତ୍କାରିତା ଲକ୍ଷଣୀୟ ।

**ଅନୁପ୍ରାସ** :— ବାକ୍ୟର ବର୍ଣ୍ଣର ସୁଷମ ପୁନରାବୃତ୍ତି ଦ୍ୱାରା ଏହି ଅଲଂକାର ସିଦ୍ଧ ହୁଏ । ପ୍ରିୟ ବିରହ ବିଧୁରା ରସଲେଖାଙ୍କ ଯୋଗିନୀଙ୍କ ଚିତ୍ରପଟ

ପ୍ରଦର୍ଶନ କାଳରେ ଭାବାନୁସାରୀ ବର୍ଣ୍ଣନାର ପ୍ରଚ୍ଛଦରେ ଏହି ଆଳଂକାରିକ ସୌନ୍ଦର୍ଯ୍ୟ ଅନୁରଣିତ । ଯଥା :—

"ଦେଖରେ ତରୁଣ ବୟସୀ ଅରୁଣ ଅଧରୀ ଅରୁଣ ବରଣ ।
ଉଦୟ ଅଚଳ ସପତ୍ନି କମଳ କମଳ ପଦ ବିଚକ୍ଷଣ ।
ବାଳାରେ । ଦେଖ ଏ ଯମ ପବନକୁ ।
ଜଗତ ପ୍ରାଣଦାନକାରୀ ଏ ମନ୍ଦ ଗତ ହାର ନାରୀ ମନକୁ ।" (୧୨/୭)

ଏଠାରେ ର, ଣ, ମ, ଲ ଓ ନ ଆଦି ବ୍ୟଞ୍ଜନ ବର୍ଣ୍ଣର ପୁନରାବୃତ୍ତି ଜନିତ ରମଣୀୟତା କର୍ଣ୍ଣ ମନ ରସାୟନକାରୀ ଅଟେ । ଏହି କାବ୍ୟର ୧୨ଶ, ୧୯ଶ ଏବଂ ୨୨ଶ ଗ୍ରନ୍ଥ ରଚନାରେ ଅନୁପ୍ରାସ ଅଳଂକାର ବିନ୍ୟାସର ମାଧୁର୍ଯ୍ୟ ଲୀଳା ଲକ୍ଷଣୀୟ ।

**ଯମକ** :– ଏକାଧିକ ବ୍ୟଞ୍ଜନ ବର୍ଣ୍ଣ ଦ୍ୱାରା ଗଠିତ ସମୁଚ୍ଚାରିତ ଶବ୍ଦ ଭିନ୍ନ ଅର୍ଥରେ ପୁନରାବୃତ୍ତ ହେଲେ ଯମକ ଅଳଂକାର ହୁଏ । କାବ୍ୟର ମଙ୍ଗଳା ଚରଣରେ ହରିହର ସ୍ତୁତି ଏବଂ ଏକାଦଶ ଗ୍ରନ୍ଥ ବର୍ଣ୍ଣିତ, ରସଲେଖାର ସଖୀ ନିକଟରେ ବିଶ୍ୱଭୂତର ପ୍ରିୟା ପ୍ରୀତି ନିବେଦନ, ଏହି ଅଳଂକାର ରଚନାର ପ୍ରକୃଷ୍ଟ ଦୃଷ୍ଟାନ୍ତ । ଏଠାରେ ହରିହରାତ୍ମକ ସ୍ତୁତି ଉଦ୍ଧାର ହେଲା ।

"ଜୟ ମକର କୁଣ୍ଡଳ କୁଣ୍ଡଳ କୁଣ୍ଡଳ । ଘନସାର ଶ୍ୟାମଘନ ସାରକାନ୍ତି ଝଳ ।
ଜୟ ତ୍ରିପୁର ମୋହନ ତ୍ରିପୁର ଦହନ । ଖଗ ପୁଂଗବ ବାହନ ପୁଙ୍ଗବବାହନ ।
ଜୟ ଗ୍ରୀମୀକରାକୃତ ବାସ କୃତ୍ତିବାସ । ପଞ୍ଚାସ୍ୟଜାତ ବିକ୍ରମ ଯେ ପୁଣି ପଞ୍ଚାସ୍ୟ ।
ଜୟ କମଳଦଳ ଲୋଚନ ତ୍ରିଲୋଚନ । ମାର ଜାର କୁମାର
କୁମାର ଯା ନନ୍ଦନ ।" (୧/୧-୪)

ଏଠାରେ କୁଣ୍ଡଳ = କୁଣ୍ଡଳଧାରୀ ଓ ସର୍ପ, ତ୍ରିପୁର = ତ୍ରିପୁର ଓ ତନ୍ନାମକ ଅସୁର, ପୁଙ୍ଗବ = ଶ୍ରେଷ୍ଠ ଓ ବୃଷଭ, ପଂଚାସ୍ୟ = ସିଂହ ଏବଂ ପଞ୍ଚମୁଖ, କୁମାର = ପୁତ୍ର ଏବଂ କାର୍ତ୍ତିକେୟ ଅର୍ଥରେ ପ୍ରଯୁକ୍ତ ।

**ଶ୍ଳେଷ** — ବ୍ୟବହୃତ ଏକ ଶବ୍ଦ ଏକାଧିକ ଅର୍ଥରେ ପ୍ରଯୁକ୍ତ ହେଲେ ଏହି ଅଳଂକାର ହୁଏ । ଏହି ଅଳଂକାର ରଚନାରେ କବି ସିଦ୍ଧହସ୍ତ ହୋଇଥିଲେ ହେଁ, ଏହି ପ୍ରାଥମିକ ସ୍ତରର କାବ୍ୟରେ, ଏହାର ବାହୁଲ୍ୟ ଦେଖାଯାଏ ନାହିଁ । ଅଷ୍ଟମ ଗ୍ରନ୍ଥର ଦ୍ୱିତୀୟ ପାଦରେ ଶ୍ଳେଷ ଭିତ୍ତିକ ଉତ୍ପାଦ୍ୟ ଲାବଣ୍ୟ ଏପରି ବର୍ଣ୍ଣିତ । ଯଥା—

"ଚକ୍ରୀ ଜାଗ୍ରତରେ ଥିଲେ ସୁଧା ଜନ୍ମାର ।
ଭୋଗ୍ୟ କି ନୋହିଲ ତମ ଭୋଗୀମାନଙ୍କର ।
ନବୀନ ବୟସୀ ଆମ୍ଭେ ନୋହୁ ତୋର ଜାଣ ।
ନପାରିବୁ କାର୍ଯ୍ୟ ପୂରଣକୁ ରଖ ପ୍ରାଣ ।"

ବ୍ୟବହୃତ 'ଚକ୍ରୀ' ଶବ୍ଦ ଏଠାରେ କୃଷ୍ଣ ଏବଂ ସର୍ପ ଅର୍ଥରେ ପ୍ରଯୁକ୍ତ ହୋଇ ଏହି ଅଳଙ୍କାରର ସୌନ୍ଦର୍ଯ୍ୟ ବୃଦ୍ଧି କରେ । ପୁଣି ଏହି କାବ୍ୟର ଦଶମ ଛାନ୍ଦର ବାଇଶି ପଦ ଶ୍ଳେଷାଳଙ୍କାରର ଅନ୍ୟତମ ଦୃଷ୍ଟାନ୍ତ ।

**ଚିତ୍ରାଳଙ୍କାର:—** ଚିତ୍ରାତ୍ମକତା ଏହି ଅଳଙ୍କାରର ଧର୍ମ । ଅନ୍ତର୍ଲପି, ବହିର୍ଲପି, ଚ୍ୟୁତାକ୍ଷର, ଦତ୍ତାକ୍ଷର, ସର୍ବୋଷ୍ଠକ, ନିରୋଷ୍ଠକ, ଶୃଙ୍ଖଳା, ଗୋମୂତ୍ର, ମେଷଯୁଦ୍ଧ, ସିଂହାବଲୋକନ ଏବଂ ନାଗାଦି ନାନା ଚିତ୍ର ବନ୍ଧ ରଚନାରେ ଏହି ଅଳଙ୍କାର ଚିହ୍ନିତ । ଏହି ଅଳଙ୍କାର କାବ୍ୟ ଗୌରବ ପ୍ରତିଷ୍ଠାର ପରିପନ୍ଥୀ ହେଲେ ହେଁ, କବି ଉପେନ୍ଦ୍ର ଯୁଗାଦର୍ଶର ଅନୁରୋଧରେ, ନିଜର ପ୍ରତିଷ୍ଠିତ କାବ୍ୟ ମାନଙ୍କରେ ଏହି ଅଳଙ୍କାର ପ୍ରୟୋଗ କୁଶଳତାକୁ ପ୍ରାଧାନ୍ୟ ଦେଇଥିବା ଦେଖାଯାଏ । କିନ୍ତୁ ଆଲୋଚିତ କାବ୍ୟରେ ଏହି ଅଳଙ୍କାର ଗତ ସୌନ୍ଦର୍ଯ୍ୟ ଏକମାତ୍ର 'ଅନ୍ତର୍ଲପି' ରଚନାରେ ସୀମିତ ଥିବା ଜଣାଯାଏ । ରସଲେଖାର ପ୍ରଥମ ପ୍ରେମପତ୍ର (୧୦/୨୨ -୨୮)ର ପ୍ରତିପାଦର ୨ୟ ଏବଂ ୫ମ ବର୍ଣ୍ଣର କ୍ରମାନୁଯାୟୀ ପାଠ ଦ୍ୱାରା ନାୟିକା ମନର ଗୋପନୀୟ ଅନ୍ତର୍ଭାବକୁ ଅନୁଭବ କରିବା ସହଜ ହୁଏ । ଯଥା ବର୍ଣ୍ଣିତ ଅନ୍ତର୍ଲପିଟି ହେଲା—

"ନାହିଁ ଗତି ତୁମ୍ଭ ବିନା ରସ ଦାନ୍ତିକାର ।
କି ରୂପେ କରିବ ଯାହି ଭେଟ କରଜର ।" (୧୦/୬୮)

**ଅର୍ଥାଳଙ୍କାର:—** ଏହି ଅଳଙ୍କାର ଅର୍ଥ ସୌନ୍ଦର୍ଯ୍ୟ ସୃଷ୍ଟିର ସହାୟକ । ଏହା କାବ୍ୟ ବର୍ଣ୍ଣିତ ରସାନୁକୂଳ ବସ୍ତୁ ଅଥବା ପଦାର୍ଥର ଭାବ ମାଧୁର୍ଯ୍ୟ ସୃଷ୍ଟି କରେ । ଉପମା, ରୂପକ, ବ୍ୟତିରେକ, ଉତ୍ପ୍ରେକ୍ଷା, ଅନନ୍ୱୟ, ବକ୍ରୋକ୍ତି ଏବଂ ସ୍ୱଭାବୋକ୍ତି ଭେଦରେ ଏହି ଅଳଙ୍କାର ସୂଚିତ । ସମୀକ୍ଷିତ କାବ୍ୟ ଏକ ଉପମା ପ୍ରଧାନ କବିକର୍ମ ରୂପରେ ବିଭୂଷିତ । 'ଉପମା ଭଙ୍ଗି ବୀରସ୍ୟ ତଥୈବ ଗୃର୍ଥ ଗୌରବମ୍'- ଏହି ଉକ୍ତିର ଯଥାର୍ଥତା, ଅନୁସୃତ ଅଳଙ୍କାର ବିଶ୍ୱର କ୍ଷେତ୍ରରେ ଅନୁଭବନୀୟ ।

**ଉପମା:—** ଉପମେୟ ଓ ଉପମାନର ସାଦୃଶ୍ୟ କଥନ ଦ୍ୱାରା ଏହି ଅଳଙ୍କାର ପ୍ରତିଷ୍ଠିତ । ଆଲୋଚିତ କାବ୍ୟର ବହୁସ୍ଥଳରେ ଏହି ଆଲଙ୍କାରକ

ସୌନ୍ଦର୍ଯ୍ୟ ଅବଲୀଳାକ୍ରମେ ଉଦ୍‌ଭାସିତ, କହିବା ବାହୁଲ୍ୟ ମାତ୍ର । କାବ୍ୟ ନାୟକ ସହିତ ନାୟିକାର ପ୍ରଥମ ମିଳନ ବର୍ଣ୍ଣନାରେ ପ୍ରଦତ୍ତ ଉପମାଟି ଉପଭୋଗ୍ୟ—

"ଫଳ ତୋଳନେ ବଢ଼ାଉ ଶ୍ରୀକର । ସ୍ପର୍ଶେ ପଡ଼ିଲା ନୟନ ତାହାର ।
ଲୌହେ ଚୁମ୍ବକ ପରାଏ ଜଡ଼ିଲା । ଗୃହି ନ ଗୃହିଲା ପ୍ରାୟେ ରହିଲା ।"
(୫/୧୭-୧୮)

ଏଠାରେ ଉପମେୟ ନାୟକ ନାୟିକାଙ୍କୁ ଉପମାନ ଲୌହ ଚୁମ୍ବକ ସହିତ ତୁଳନା କରାଯିବା ଯଥାର୍ଥ ଅଟେ । ପୁଣି ପ୍ରେମିକ ନିକଟରୁ ପ୍ରେମିକାର ପ୍ରତ୍ୟାଗମନ କାଳୀନ ଅବସ୍ଥାର ଭାବ ଚିତ୍ରଣରେ ଏହି ଅଳଙ୍କାରର ମାଧୁର୍ଯ୍ୟ (୫/୩୭ –୩୮) ଅବଶ୍ୟ ଉପଭୋଗ୍ୟ ।

ରୂପକ:— ଉପମେୟ ଏବଂ ଉପମାନର ଏ ଭେଦ କଳ୍ପନାକୁ ରୂପକାଳଙ୍କାର କୁହାଯାଏ । ପୂର୍ବ ଉଦ୍ଧୃତ ରଜନୀ ପ୍ରକୃତି ଚିତ୍ରଣରେ, ରାତ୍ରିଦେବୀଙ୍କୁ ଦୂତରୂପକ ଅଭେଦ ପରିକଳ୍ପନାରେ, ଏହି ଅଳଙ୍କାରର ଚମତ୍କାରିତା ପ୍ରଦର୍ଶିତ । ଏହି ଅଳଙ୍କାରର ଅନ୍ୟ ଏକ ଦୃଷ୍ଟାନ୍ତ—

"ଦ୍ୱିଜରାଜ ନାଶୁଁ ଦ୍ୱିଜେ ଗଲେ ସ୍ଥାନକର ।
ରବ ପ୍ରୀତି ପାଇବା ସକାଶୁଁ ଆଶା ନାରୀ ଯେ ।
ବିଦେଶୀ ବନ୍ଧୁଙ୍କ ଦଶା ପଦ୍ମ ଲଭିଥିଲେ ।
ଆକାଶ ସମୁଦ୍ରରେ ଦେଖି ପ୍ରଫୁଲ୍ଲ ହୋଇଲେ ଯେ ।" (୧୦/୩-୪)

ଏଠାରେ ଉପମେୟ ଆକାଶ ସହିତ ଉପମାନ ସମୁଦ୍ରର ଅଭେଦ କଳ୍ପନା କରାଯାଇଛି ।

ବ୍ୟତିରେକ:— ଉପମାନ ଠାରୁ ଉପମେୟର ଆଧିକ୍ୟ ବର୍ଣ୍ଣନା ଦ୍ୱାରା ଏହି ଅଳଙ୍କାର ପ୍ରତିଷ୍ଠିତ । ଯଥା :—

"ମଧ୍ୟକୁ ସମ ମଧ୍ୟ ଭୁବନେ କାହିଁ, ସିଂହ ଜିଣିଲା ଅତି କ୍ଷୀଣତା ବହି ।
ମନ୍ଥର ଗତି ଦେଖି ହଂସ ନିକର, ମୃଣାଳ ବିଷ ବୋଲି କଲେ ଆହାର ।"
(୨/୧୩)

ଏଠାରେ ରସଲେଖାର କ୍ଷୀଣ କଟୀ ଏବଂ ମନ୍ଥର ଗତି ରୂପକ ଉପମେୟର ଆଧିକ୍ୟ, ସିଂହ କଟୀ ଏବଂ ମରାଳ ଗତି ଉପମାନ କ୍ଷେତ୍ରରେ ପ୍ରଦର୍ଶିତ ହେବାରେ ଏହି ଅଳଙ୍କାର ସିଦ୍ଧ ହେଲା ।

**ଉତ୍ପ୍ରେକ୍ଷା:—** ପ୍ରକୃତ ବସ୍ତୁ ସହିତ ଅପ୍ରକୃତ ବସ୍ତୁର ସମ୍ଭାବନା କରାଗଲେ ଉତ୍ପ୍ରେକ୍ଷାଲଙ୍କାର ହୁଏ । ଆଲୋଚିତ କାବ୍ୟର ପଞ୍ଚମ ଛାନ୍ଦ ସ୍ଥିତ ନେତ୍ର, ସ୍ତନ ଏବଂ ଜାନୁ ବର୍ଣ୍ଣନା କ୍ରମରେ ଏହି ଅଲଙ୍କାର ଉଦ୍ଭାସିତ । ସେଥିରୁ ନେତ୍ର ବର୍ଣ୍ଣନାଟି ଉପସ୍ଥାପିତ କରାଯାଉଛି:—

"ତହିଁ ନୟନ ଗଢନ ଅନାଇ । ହୋଇ ଅଗାଢ ମତିରେ ଭାଳଇ ।
କିଏ କୁରଙ୍ଗ କଅବା ତୁରଙ୍ଗ । ଏଣି ଚେଳିକି କରୁଛି ସୁରଙ୍ଗ ।
କିଏ ନବ ବିକଚ ପଦ୍ମଦଳ । ପଡ଼ି କାଳିନ୍ଦୀ ଜଳେ ଚଳ ହେଲ ।
କିଏ ଶୋଭା ସିନ୍ଧୁରୁ ଅବତରି । ହୁଏ ତରଳ ଗରଳ ଲହରୀ ।
କିଏ ଗଙ୍ଗା କଲ୍ଲୋଳ ବାତ ଯୋଗେ । ଫୁଲ ଉତ୍ପଳ ଚଳେ ଦୁଇ ଭାଗେ ।
କିଏ ସୁଧା ମନ୍ଦିରେ କରେ ନାଟ । ବାଦ ଆରମ୍ଭି କେଳି ଖଞ୍ଜରୀଟ ।"
(୫/୫-୭)

**ଅନନ୍ୱୟ:—** ଏକ ପଦାର୍ଥ ଉପମେୟ ଓ ଉପମାନ ରୂପେ ବର୍ଣ୍ଣିତ ହେଲେ ଏହି ଅଲଙ୍କାର ହୁଏ । ରସଲେଖାର ଅସାମାନ୍ୟ ସୌନ୍ଦର୍ଯ୍ୟ ବର୍ଣ୍ଣନା ପାଇଁ ଏହି ଅଲଙ୍କାର ପ୍ରୟୋଗ ହୃଦୟାବର୍ଜକ ଅଟେ । ଯଥା:—

"ବଚନେ କହିବାକୁ ଉପମା ନାହିଁ । ତାହାକୁ ସମହୋଇ ଜଗତେ ସେହି ।"
(୨/୧୮)

**ବକ୍ରୋକ୍ତି—**ବକ୍ତାର ଉକ୍ତି ଶ୍ରୋତା ଦ୍ୱାରା ଅନ୍ୟ ଅର୍ଥରେ ଗୃହୀତ ହେଲେ ଏହି ଅଳଂକାର ହୋଇଥାଏ । ସମୀକ୍ଷିତ କାବ୍ୟର (୪ର୍ଥ ଛାନ୍ଦର ୧୧ରୁ ୨୫ ପଦ) ସଖୀଙ୍କ ପୁଷ୍ପ ଚୟନ ପ୍ରସଙ୍ଗ ଏବଂ ବିରହିଣୀ ରସଲେଖାର ପ୍ରେମ ବିକାର ଜନିତ ଚନ୍ଦ୍ର ଏବଂ ମଳୟାନିଳର ନିନ୍ଦାଗାନ ବୃତ୍ତାନ୍ତ (୮/୮–୧୫ ଏବଂ ୧୭–୧୮ ପଦ) ଏହି ଅଳଂକାର ରଚନାର ଚମତ୍କାରିତା ସୃଷ୍ଟି କରେ । ସେଥିମଧ୍ୟରୁ ନିନ୍ଦାର କେତୋଟି ପଦ ଏଠାରେ ଦିଆଗଲା :—

"ସଖୀଏ ବୋଇଲେ ଯାହା ବିଗୃହୁଛୁ ଆଜ ।
ସେ ନୁହଇ ଉଦୟ ହୋଇଛି ଦ୍ୱିଜରାଜ ।
ଶୁଣି ତରୁଣୀ ବୋଇଲେ ଦେବି ଜୀବ ଦାନ ।
ଦକ୍ଷିଣାକୁ ଅଛି ଅଙ୍ଗେ ଅଳଂକାର ମାନ ।

ଚନ୍ଦ୍ର ବୋଲି ଆଉ ଜଣେ କହେ କେଉଁ ସଖୀ ।
ପୂର୍ଣ୍ଣ କର ତେବେ ଏ ସନ୍ତାପ ଶାନ୍ତ ପାଇଁ ।
ବିଧୁ ଏତ ଜଣେ ବୋଲିବାର ବୋଲେ ଶୁଣି ।
ବାଳିକାଙ୍କୁ ଅବଳା ବଧିବା ଅଛୁ ଜାଣି ।"

(୮/୮-୧୦)

ଏଠାରେ ସଖୀଙ୍କ ମୁଖରେ ଉଚ୍ଚାରିତ ଚନ୍ଦ୍ର ପର୍ଯ୍ୟାୟବାଚୀ ଶବ୍ଦ ଦ୍ୱିଜରାଜ, ଚନ୍ଦ୍ର ଏବଂ ବିଧୁ ଶ୍ରୋତା ରସଲେଖା ଦ୍ୱାରା ଶ୍ରେଷ୍ଠ ବ୍ରାହ୍ମଣ, କର୍ପୂର ଏବଂ ଶ୍ରୀକୃଷ୍ଣ (ବିଷ୍ଣୁ) ରୂପକ ଅନ୍ୟ ଅର୍ଥରେ ଗୃହୀତ ।

**ସ୍ୱଭାବୋକ୍ତି** :—ଜାତି, ଦ୍ରବ୍ୟ, କ୍ରିୟା ଏବଂ ଗୁଣାଦିର ସ୍ୱଭାବ ସଂଗତ ଚମତ୍କାରିତା ବର୍ଣ୍ଣିତ ହେଲେ ଏହି ଅଳଂକାର ହୁଏ । ପ୍ରକୃତି ଚିତ୍ରଣ ଏହି ଅଳଂକାରର ମୁଖ୍ୟ ଉଦ୍ଦେଶ୍ୟ । ଅନେକ ଅଳଂକାରରେ ଏହି ଅଳଂକାରର ଛାୟା ବିଦ୍ୟମାନ । ସମୀକ୍ଷିତ କାବ୍ୟଟି ଏହି ସ୍ୱଭାବ ସଂଗତ ଚିତ୍ରଣ ପରିପାଟୀର ଏକ ଚିତ୍ରଶାଳା । ବିଶେଷତଃ ଏହି କାବ୍ୟ ବର୍ଣ୍ଣିତ ମେଘଦୂତ ପ୍ରେରଣ (୧୯ଛାନ୍ଦ), ଏବଂ ପ୍ରେମ ପତ୍ର ପ୍ରସଙ୍ଗରେ ପ୍ରେମିକ ହୃଦୟର ପ୍ରେମାନୁଭବ ବର୍ଣ୍ଣନା (୭ମ ଏବଂ ୨୨ଶ ଛାନ୍ଦ), ଏହି ଅଳଂକାରର ମହନୀୟତା ପ୍ରଚାର କରେ । ସହଜାତ କବି ପ୍ରତିଭା ଦ୍ୱାରା ଉଦ୍ଭାସିତ ଏହି ସ୍ୱଭାବୋକ୍ତି ଅଳଂକାରର ଅଳ୍ପ କେତୋଟି ଦୃଷ୍ଟାନ୍ତ, ଏଠାରେ ଉଦ୍ଧାର କରାଯାଉଛି :—

ବିରହ ବିଧୁର ପ୍ରେମିକ ହୃଦୟର ସ୍ୱାଭାବିକ ଅଭିବ୍ୟକ୍ତି—

"ଚେତ ନାଗରବର ଚାହିଁ ନବ ମୁଦିର ପ୍ରିୟା ପାଶକୁ ଦୂତ କରେ ।
ଧେନ ବିନୟ ମୋର ବେଗେ ଗମନ କର କହିବ ବାନ୍ଧବୀ ଛାମୁରେ ହେ ।
ନବଘନ । ତା ପାଶୁ ହେଲି ଦନୁ ଭିନ୍ନ, ସରଇ ନାହିଁ ନିଶୀ ଦିନ ।
ଜେଣେ ଚାହିଁଲେ ସେହି ଦିଶଇ ନିଦ୍ରା ନାହିଁ କେମନ୍ତେ ଦେଖିବ
ସ୍ୱପନେ ହେ ।" (୧୯/୧)

× × ×

"ପ୍ରତେ ନଥିଲି ଜୀବ ଥାଉଁ ବିଚ୍ଛେଦ ହେବ ବୋଲି ମୋ ପରାଣ ଈଶ୍ୱରୀ ।
ଭୟ ନଥିଲି କାମ ହୋଇବ ବୋଲି ବାମ ଦଇବ କଲା ଏତେ ସର ହେ ।
ନବଘନ । ମୋ ବେଦନାରୁ ତା ବେଦନା, ଅଧିକ ହେଉଥିବ ସିନା ।
ମୋହର ପାଶେ ଚିତ୍ତ ଦେଇଥିବ ନିରତ ଯେଣୁ ସେ ପ୍ରୀତି ପରାଧୀନା ହେ ।"
(୧୯/୫)

× × ×

"ଯାହା ବୋଲଇ ମୁହିଁ ନାହିଁ କରଇ ନାହିଁ ଏ ପୁଣି ବଡ଼ ଗୁଣ ତାର ।
କଥାରେ ସେ ବଞ୍ଚାଇ ମନକୁ ମୋହି ନେଇ କେବଣ କଥା ନ ଦେବାର ହେ
ନବଘନ । ଆହା ସେ ନବ ଅନୁଭବୀ, ଯେବେ ମୁଁ ଚୁମ୍ବନ ମାଗିବ ।
ହୋଇ ସେ ଲଜ ଲଜ ଅଧର କରି ଗୋଜ ପଚ୍ଚରଇ କି କହିଦେବ ହେ ।"
(୧୯/୮)

ପୁଣି ପ୍ରେମ ପତ୍ର ପଠନ ସମୟରେ ପ୍ରେମିକାର ସ୍ୱାଭାବିକ ହୃଦୟାନୁଭୂତି ଜନିତ କ୍ରିୟା କଳାପର କମନୀୟ ପରିପ୍ରକାଶ--

"ରସିକା ରମଣୀବର ଫିଟାଇ ପ୍ରେମ ପତ୍ରର ବର୍ଣ୍ଣକୁ ଚାହିଲା ତହିଁ କେତେ ।
ପଢିଲା ବଢିଲା ସୁଖ ପ୍ରସନ୍ନ ଦିଶିଲା ମୁଖ ଦୁଃଖ ଗଲା ବଚ୍ଚରଇ ଚିତ୍ତେ ସେ ।
ରସବତୀ । ଦମଦମ ହେଉଅଛି ହୃଦ । ଅମୃତ ସମାନ ତହିଁ ଭାଷା ସ୍ୱାଦ ହେ ।"
(୨୨/୧)

ପ୍ରେମିକର ପ୍ରେମପତ୍ର ସମ୍ବୋଧନରେ ପ୍ରେମିକାର ରୂପ ଗୁଣାଦିର ପ୍ରଶଂସା—

"ଆରେ ଲାବଣ୍ୟ ପ୍ରତିମା ଆରେ ପ୍ରେମରସ ସୀମା ଆରେ ରାମା ସୁଦୃଶ୍ୟ ମୋ ଧନ ।
ରେ କେଳି ପ୍ରବୀଣା ବୀଣା ଜିଣାବାଣୀ ମୁଁ ତୋ କିଣା ମୁହିଁ ପିଣ୍ଡ ତୁ ମୋର ଜୀବନରେ
ପ୍ରାଣବନ୍ଧୁ । ସୁନ୍ଦର ଗମନା ରସ ସିନ୍ଧୁ । ଘୋଟିଅଛୁ ଚନ୍ଦ୍ରା ତମ ମୁଖ ବିଧୁରେ ।"
(୨୨/୨)

ଏପରି ଅନେକ ସରସ କବି ପ୍ରତିଭାର ମନୋଜ୍ଞ ଦୃଷ୍ଟାନ୍ତରେ ରସଲେଖା କାବ୍ୟ ଭୂଷିମନ୍ତ ।

କବିଙ୍କ ପ୍ରତିଭା ବିନା କାବ୍ୟର ପ୍ରତିଷ୍ଠା ଅସମ୍ଭବ । ଆଚାର୍ଯ୍ୟ କୁନ୍ତକ କବି-କର୍ମ-କୌଶଳ ରୂପକ କାବ୍ୟର ଜୀବନ ଶକ୍ତି ରୂପେ ବକ୍ରୋକ୍ତିକୁ ମାନ୍ୟତା ଦିଅନ୍ତି । ସେ ଏହି ବକ୍ରୋକ୍ତିକୁ ଲୋକୋତ୍ତର ଚମତ୍କାରକାରୀ ବୈଚିତ୍ର୍ୟ ସିଦ୍ଧିର ମୂଳ ମନ୍ତ୍ର ରୂପେ ଗ୍ରହଣ କରି, ପରିପୂର୍ଣ୍ଣ କାବ୍ୟ ଶରୀରର ସମସ୍ତ କ୍ଷେତ୍ରରେ ଏହାର ଅସ୍ତିତ୍ୱ ଅନୁଭବ କରନ୍ତି । ଏହି ବକ୍ରୋକ୍ତି, କାବ୍ୟର ବର୍ଣ୍ଣ, ପଦ, ବାକ୍ୟ, ପ୍ରକରଣ ଏବଂ ପ୍ରବନ୍ଧାଦିର ସମସ୍ତ ଅଂଶରେ ରସାନୁକୂଳ ହୋଇ ପ୍ରକାଶିତ ହେବାରେ ତାହାର ମର୍ଯ୍ୟାଦା ପ୍ରତିଷ୍ଠିତ ହୋଇଥାଏ । ବକ୍ରୋକ୍ତି ଜୀବିତକାର ଏହି କାବ୍ୟ ପ୍ରାଣ ସ୍ୱରୂପ ବକ୍ରୋକ୍ତି ବିକାଶର ମୂଳ ବୀଜରୂପେ ପ୍ରତିଭାକୁ ସ୍ୱୀକାର କରନ୍ତି । ତାଙ୍କର ଭାଷାରେ—'ପ୍ରାକ୍ତନ-ଦ୍ୟତନ-ସଂସ୍କାର ପରିପାକ ପ୍ରୌଢ଼ା ପ୍ରତିଭା କାଚିଦେବ କବି ଶକ୍ତିଃ ।' ଅର୍ଥାତ୍ ପୂର୍ବ ଜନ୍ମ ତଥା ଏହି ଜନ୍ମର ସଂସ୍କାର ଦ୍ୱାରା

ପରିଚିତ୍ ହୋଇଥିବା କବି ଶଙ୍କରର ନାମ ପ୍ରତିଭା । ଏହି ପ୍ରତିଭାର ବିସ୍ତର ପ୍ରସଙ୍ଗରେ ଆଚାର୍ଯ୍ୟ କୁନ୍ତକ ତିନୋଟି ମାର୍ଗର [ସୁକୁମାର, ବିଚିତ୍ର ଓ ମଧ୍ୟମ] ନିର୍ଦ୍ଦେଶ ଦେଇଛନ୍ତି । ସୁକୁମାର ମାର୍ଗ ସହଜ । ପ୍ରତିଭାର, ବିଚିତ୍ର ମାର୍ଗ ଆହାର୍ଯ୍ୟ । ପ୍ରତିଭାର ଏବଂ ମଧ୍ୟମ ମାର୍ଗ ଏହି ଉଭୟ ପ୍ରତିଭାର ପରିଗ୍ରାହକ ଅଟେ । ରସଲେଖା କାବ୍ୟ କବି ଉପେନ୍ଦ୍ରଙ୍କ ସହଜାତ ପ୍ରତିଭାର ମନୋଜ୍ଞ ପ୍ରତିଲେଖା ରୂପେ ପ୍ରତିଷ୍ଠିତ । ଏହା କବିଙ୍କ ସୁକୁମାର ମାର୍ଗର ରଚନା ଶୈଳୀ ଦ୍ୱାରା ବିଭୂଷିତ । ଏହି କାବ୍ୟର ସୌନ୍ଦର୍ଯ୍ୟ ପ୍ରସାଦ ଓ ମାଧୁର୍ଯ୍ୟ ଗୁଣ ଦ୍ୱାରା ଅନୁରଞ୍ଜିତ । ରସଲେଖା କାବ୍ୟର ଶବ୍ଦ ବିନ୍ୟାସ ଚାତୁର୍ଯ୍ୟ, ଭାବଗର୍ଭକ ଅର୍ଥ ମାଧୁର୍ଯ୍ୟର ଚମତ୍କାରିତା, ମନୋଜ୍ଞ କଳ୍ପନା ବିଳାସାଦିର ଅଭିନବ ପରିପ୍ରକାଶନ ମଧ୍ୟରେ ସହଜାତ କବି ପ୍ରତିଭାର ଅମ୍ଳାନ ଦୀପ୍ତି ସର୍ବତ୍ର ବିଦ୍ୟମାନ କହିବା ବାହୁଲ୍ୟ ମାତ୍ର । ତେଣୁ କବି ଏହି ଅମର ଅକ୍ଷର କୀର୍ତ୍ତିର ପ୍ରସାର କାମନା କରିଛନ୍ତି—

"ଦିବ୍ୟସିଂହ ଗଜପତି ଅଙ୍କ ସପତ ବିଂଶତି ଶେଷ ଏହୁ ଗୀତ ।
ଦେଶେ ଦେଶେ ହେଉ ଖ୍ୟାତ ମୋହୁ ଏ ରସିକ ଚିତ୍ତ ହରିହର କରନ୍ତୁ ଏମନ୍ତ ହେ ।"
(୨୨/୧୭)



ଓଡ଼ିଆ ବିଭାଗ
ଡି. ଏ. ଭି. ମହାବିଦ୍ୟାଳୟ
କୋରାପୁଟ

# ଉପେନ୍ଦ୍ରଙ୍କ 'ରସଲେଖା'—ଏକ ତିର୍ଯ୍ୟକ୍ ଆକଳନ

॥ ଅଧ୍ୟାପକ ତୀର୍ଥାନନ୍ଦ ମିଶ୍ର ॥

॥ ଏକ ॥

ମଧ୍ୟକାଳୀନ ଓଡ଼ିଆ କାବ୍ୟ ପରମ୍ପରାରେ ଉପେନ୍ଦ୍ର ଭଞ୍ଜ ଏକ ବହୁ ଚର୍ଚ୍ଚିତ ନାମ । ନିଜର ଅସାମାନ୍ୟ ଶବ୍ଦ ବୈଭବ, ସଂସ୍କୃତାନୁଗ ଅଳଙ୍କାର ମାନଙ୍କର ବିଚିତ୍ର ସଂଯୋଜନା, କଳ୍ପନାର ଚମତ୍କାର ଇନ୍ଦ୍ରଜାଲ ଏବଂ ସର୍ବୋପରି ଜୀବନର ଦେହଜ ସର୍ବସ୍ୱ ଆବେଦନ ପ୍ରତିଷ୍ଠା ହେତୁ ସେ ସମସାମୟିକ କବି ଗୋଷ୍ଠୀର ମଧ୍ୟ ମଣି ହୋଇ ପାରିଛନ୍ତି । ପ୍ରକୃତରେ ଶବ୍ଦ, ଅର୍ଥ ଓ ଛନ୍ଦର ସେ ଥିଲେ ଜଣେ ବିଚିତ୍ର ଯାଦୁକର । ସେ ନିଜେ ନିଜ କାବ୍ୟରେ ଯେଉଁ ଶବ୍ଦ ସମୁଦ୍ର ପାରହେବା କଥା ଲେଖିଛନ୍ତି, ତାହା ଆଦୌ ମିଛ ନଥିଲା । (୧) ଏକ ବିଲକ୍ଷଣ ପାଣ୍ଡିତ୍ୟ ତାଙ୍କ କାବ୍ୟ ମାନଙ୍କରୁ ସ୍ପଷ୍ଟ ବାରି ହୋଇପଡ଼େ । ପ୍ରାନ୍ତୀୟ ସାହିତ୍ୟ ମାନଙ୍କ ପ୍ରତି ଘୃଣା ଦୃଷ୍ଟି ପୋଷଣ କରିଥିବା ସଂସ୍କୃତାଭିମାନୀ କବି ମାନଙ୍କ ପାଇଁ ତାଙ୍କ କାବ୍ୟମାନ ଥିଲା ଏକ ଏକ ପ୍ରତ୍ୟକ୍ଷ ପ୍ରତିବାଦ । ଯଦିଓ ପଣ୍ଡିତ ଗୋପବନ୍ଧୁ ତାଙ୍କ କାବ୍ୟର ପ୍ରସାରଣଶୀଳତା ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ କହିଛନ୍ତି ଯେ ତାହା ସଭାର ପଣ୍ଡିତ, ରାସ୍ତାରେ ଚାଲିଚାଲି ଯାଉଥିବା ପଥିକ, କୃଷି କ୍ଷେତ୍ରର କୃଷକ, ଅନ୍ତଃପୁରର ରମଣୀ ଓ ରଙ୍ଗାଳୟର ନୃତ୍ୟାଙ୍ଗନା ସମସ୍ତଙ୍କୁ ଆକର୍ଷିତ କରେ ବୋଲି । (୨) ତାହା କିନ୍ତୁ ଉପେନ୍ଦ୍ରଙ୍କ କାବ୍ୟର ଏକ ସାମଗ୍ରିକ ସମୀକ୍ଷାତ୍ମକ ଦୃଷ୍ଟି ନୁହେଁ । ଗୋପବନ୍ଧୁ ମୁଖ୍ୟତଃ ଉପେନ୍ଦ୍ରଙ୍କ କାବ୍ୟରେ ପ୍ରତିଫଳିତ ସାଙ୍ଗୀତିକତା ଓ ତାଙ୍କ ଦ୍ୱାରା ରଚିତ ସଙ୍ଗୀତ ମାନଙ୍କୁ ଲକ୍ଷ୍ୟକରି

୧. ତରଣି କୁଳର ଯ ର । ଅଶ୍ରୟରୁ ନିରନ୍ତର,
କହେ ଉପେନ୍ଦ୍ର ଭଞ୍ଜ ମୁଁ ଲଭିଲୁ ଶବଦ ସମୁଦ୍ର ପାର ।

୨. ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ ପଥେ ପାନ୍ଥ ହୃଷ୍ଟ ମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା ନୃତ୍ୟ ରଙ୍ଗେ ବାରାଙ୍ଗନା
—ଗୋପବନ୍ଧୁ

ଏ ମନ୍ତବ୍ୟଟି ଦେଇଛନ୍ତି । ଉପେନ୍ଦ୍ରଙ୍କ ପ୍ରମୁଖ କାବ୍ୟମାନ ମୁଖ୍ୟତଃ 'କୋବିଦ' ଏବଂ ପଣ୍ଡିତମାନଙ୍କ ହୃଦୟ ଆହ୍ଲାଦନ ପାଇଁ ରଚିତ ହୋଇଥିଲା, ଆଳଂକାରିକ ତଥା ଶବ୍ଦ ଚମତ୍କାର ପ୍ରତିପାଦକ କାବ୍ୟ ରଚନା କରିବାହିଁ ଉପେନ୍ଦ୍ରଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ନିଜ କାବ୍ୟକୁ ନୈଷଧ ପରିପ୍ରେକ୍ଷୀରେ ଗ୍ରହଣ କରିବାକୁ ନିବେଦନ କଲାବେଳେ ଉପେନ୍ଦ୍ର ମୁଖ୍ୟତଃ ନିଜ କାବ୍ୟରେ ଅନ୍ତର୍ନିହିତ ଆଳଙ୍କାରିକ ମର୍ଯ୍ୟାଦାକୁ ହିଁ ପ୍ରାଧାନ୍ୟ ଦେଇଛନ୍ତି ।

ଉପେନ୍ଦ୍ର 'ରସଲେଖା' ମୁଖ୍ୟତଃ ଏକ କାଳ୍ପନିକ ପ୍ରେମାଖ୍ୟାନ ମୂଳକ କାବ୍ୟ । ଏହି କାବ୍ୟ ମୋଟ ବାଇଶ ଗୋଟି ଛାନ୍ଦ ଓ ଛଅଶହ ଷାଠିଏ ପଦ ବିଶିଷ୍ଟ ବୋଲି ଉପେନ୍ଦ୍ର ନିଜେ ସ୍ୱୀକାର କରିଛନ୍ତି (ର. ଲେ, ୨୨/୧୯) । ପ୍ରସ୍ତୁତ ପ୍ରବନ୍ଧ ପାଇଁ ଯେଉଁ 'ରସଲେଖା' ପୁସ୍ତକଟି ଗ୍ରହଣ କରାଯାଇଛି ତାହା କଟକର ଓଡ଼ିଶା ଜଗନ୍ନାଥ କମ୍ପାନୀଙ୍କ ଦ୍ୱାରା ୧୯୬୭ ମସିହାରେ ପ୍ରକାଶିତ ହୋଇଛି । ଶହେ ବୃଳିଶ ପୃଷ୍ଠା ବିଶିଷ୍ଟ ଏହି ଗ୍ରନ୍ଥଟିରେ ଶ୍ୟାମସୁନ୍ଦର ନାୟକଙ୍କଦ୍ୱାରା କରାଯାଇଥିବା ଅଣତ୍ରିଶ ପୃଷ୍ଠାର ଏକ ଟୀକା ଶେଷରେ ସଯୋଜିତ ହୋଇଛି । ଏହି ପୁସ୍ତକରେ ମୋଟ ବାଇଶ ଗୋଟି ଛାନ୍ଦ ଥିଲେ ମଧ୍ୟ ଏହି ଛାନ୍ଦମାନଙ୍କର ପଦ ସଂଖ୍ୟା କିନ୍ତୁ ଛଅଶହ ଷାଠିଏ ନହୋଇ ସାତଶହ ଛବିଶ ହେଉଅଛି (୩) । ପଦ କାବ୍ୟର ଦ୍ୱାବିଂଶଚ୍ଛନ୍ଦରେ ଉଲ୍ଲେଖ ପଦଟିକୁ ପ୍ରାମାଣିକ ବୋଲି ଗ୍ରହଣ କରାଯାଏ, ତେବେ କାବ୍ୟରେ ଛଅପନ ଗୋଟି ପଦ ବିଭିନ୍ନ ସ୍ଥାନରେ ପ୍ରକ୍ଷିପ୍ତଭାବେ ସଯୋଜିତ ହେବା କଥା ସ୍ପଷ୍ଟ ହୋଇଯାଏ । ପ୍ରସ୍ତୁତ ପ୍ରବନ୍ଧରେ 'ରସଲେଖା'ର ଶୁଦ୍ଧପାଠ ଉପରେ ଗୁରୁତ୍ୱ ଦିଆ ନଯାଇ ଗ୍ରନ୍ଥଟିରେ ଉପଲବ୍ଧ ବିଭିନ୍ନ ଉପାଦାନମାନଙ୍କ ବିଶ୍ଳେଷଣ ପ୍ରତି ଅଧିକ ଧ୍ୟାନ ଦିଆଯାଇଛି ।

କାବ୍ୟର ରଚନାକାଳ ସମ୍ପର୍କରେ ପରବର୍ତ୍ତୀ କାଳରେ କୌଣସି ସଂଶୟ ନ ଆସିବା ପାଇଁ ଉପେନ୍ଦ୍ର ଏହି କାବ୍ୟରେ ଗ୍ରନ୍ଥ ରଚନାକାଳ ଉଲ୍ଲେଖ କରିଛନ୍ତି । ଗଜପତି ଦିବ୍ୟସିଂହ ଦେବଙ୍କର ସତେଇଶ ଅଙ୍କର ଶେଷଦିନ ଏହି ଗ୍ରନ୍ଥ ସମାପ୍ତ ହେବାକଥା କାବ୍ୟରୁ ଜଣାଯାଏ । (୨୨ । ୧୭) ।

---

୩. ଛାନ୍ଦମାନଙ୍କର ପଦ ସଂଖ୍ୟା ହେଉଛି— ୧ମ-୪୭; ୨ୟ-୨୩, ୩ୟ-୪୧, ୪ର୍ଥ-୪୪, ୫ମ-୪୨, ୬ଷ୍ଠ-୪୩, ୭ମ-୪୭, ୮ମ-୨୭, ୯ମ-୩୦, ୧୦ମ-୬୩, ୧୧ଶ-୨୨, ୧୨ଶ-୨୭, ୧୩ଶ-୨୦, ୧୪ଶ-୬୩, ୧୫ଶ-୪୨, ୧୬ଶ-୨୭, ୧୭ଶ-୨୪, ୧୮ଶ, ୧୯ଶ, ୨୦ମ, ୨୧ମ-୨୦ ଏବଂ ୨୨ଶ-୧୯ପଦ । ଏହିପରି ମୋଟ ପଦ ସଂଖ୍ୟା ୭୨୬ ।

ଦ୍ବିବ୍ୟସିଂହ ଦେବଙ୍କ ସପ୍ତବିଂଶ ଅଙ୍କ ଇଂରାଜୀ ତା ୪-୯-୧୭୦୧ ରୁ ତା ୨୪-୮-୧୭୮୦ ଖ୍ରୀ: ପର୍ଯ୍ୟନ୍ତ ପଡ଼ୁଥିବାର ଜଣାଯାଏ (୪) । ଏଥିରୁ ସ୍ପଷ୍ଟ ହୁଏ ଯେ 'ରସଲେଖା' ୧୭୮୦ ମସିହା ଅଗଷ୍ଟ ମାସ ୧୪ ତାରିଖ ଦିନ ସମାପ୍ତ ହୋଇଥିଲା । ଉପେନ୍ଦ୍ର ପ୍ରତି ଗ୍ରନ୍ଥର ଭଣିତାରେ କେବଳ ମାତ୍ର ଗୋଟିଏ ସ୍ଥାନକୁ ଛାଡ଼ିଦେଲେ ଅନ୍ୟ କେଉଁଠି ନିଜ ନାମ ବ୍ୟତୀତ କୌଣସି ବଂଶ ପରିଚୟ ଦେଇ ନାହାନ୍ତି । କେବଳ ମାତ୍ର ଥରେ ସେ ନିଜକୁ 'ନୀଳକଣ୍ଠ ନୃପ ସୁତ' ବୋଲି ପ୍ରକାଶ କରିଛନ୍ତି (୧ । ୭) । ଏହି କାବ୍ୟରେ ଉପେନ୍ଦ୍ର ହରି ଓ ହର ଉଭୟଙ୍କୁ ସ୍ତୁତି କରିଛନ୍ତି । ଏହି ସ୍ତୁତିକୁ ଉପେନ୍ଦ୍ର ସବୁବେଳେ 'ଶ୍ଳିଷ୍ଟାର୍ଥ' ପରକ କରିବାକୁ ଚେଷ୍ଟା କରିଛନ୍ତି । ଏହା ଶ୍ଳିଷ୍ଟ ଅର୍ଥ କେତେବେଳେ ନାମରେ, କେତେବେଳେ ରୂପ ତଥା ବର୍ଣ୍ଣରେ, କେତେବେଳେ ଆଭୂଷଣରେ, କେତେବେଳେ ବଂଶ ପରିଚୟରେ, କେତେବେଳେ ଗୁଣ ଓ କାର୍ଯ୍ୟରେ ଏବଂ କେତେବେଳେ ଏ ସମସ୍ତଙ୍କ ମଧ୍ୟରୁ ଯେ କୌଣସି ଦୁଇଟିର ପ୍ରୟୋଗରେ ପ୍ରତିପାଦିତ ହୋଇଛି । ନାମରେ ପ୍ରଯୁକ୍ତ ହୋଇଥିବା ଶ୍ଳିଷ୍ଟପଦ ମଧ୍ୟରେ 'ମାଧବ ଉମାଧବ' (୧ । ୪୭), 'ଅଧୋକ୍ଷଜ ଅଜ' (୩ । ୪୧), 'ହରିହର (୧୧ । ୨୨, ୧୪ । ୭୩, ୧୯ । ୨୦, ୨୦ । ୨୦, ୨୨ । ୧୮), 'ଶିବ ଜନାର୍ଦ୍ଦନ, (୧୫ । ୪୨) ଏବଂ 'ଜଗନ୍ନାଥ ବିଶ୍ୱନାଥ'' (୨୦ । ୨୦) ଆଦି ପ୍ରଣିଧାନଯୋଗ୍ୟ, ରୂପ ତଥା ବର୍ଣ୍ଣ ପାଇଁ ଉପେନ୍ଦ୍ର 'ଘନସାର' ଏବଂ 'ଶ୍ୟାମଘନ' ଭଳି କାନ୍ତି (୧ । ୧); 'କମଳ ଦଳ ଲୋଚନ' ଏବଂ 'ତ୍ରିଲୋଚନ' (୧ । ୪), 'କମଳାକ୍ଷ' ଓ 'ବିରୂପାକ୍ଷ' (୨୦ । ୨୦), ଓ 'ପଞ୍ଚମୁଖ' (୨୨ । ୧୮) ଆଦି ଶ୍ଳିଷ୍ଟାର୍ଥର ପ୍ରୟୋଗ କରିଛନ୍ତି । ଆଭୂଷଣ ପାଇଁ ସେ 'ମକର କୁଣ୍ଡଳ' ଓ 'କୁଣ୍ଡଳୀ କୁଣ୍ଡଳ' (୧ । ୧), 'ଚର୍ମୀକଶ କୃତିବାସ' ଓ 'କୃତ୍ତି ବାସ' (୧ । ୩) 'ଚନ୍ଦ୍ର ମୁକୁଟଧର' ଓ 'ଚନ୍ଦ୍ର ମୁକୁଟ'(୧ । ୫) 'ରଥାଙ୍ଗ ପାଣି' ଓ 'ତ୍ରିଶୂଳଧାରୀ' (୨ । ୨୩), 'କମଳାକର' (୩ । ୪୧, ୯ । ୩୦), 'ଅମ୍ବୁଜଧାରଣ' (୧୦ । ୭୨), ଚୂଳରେ ତୁଳସୀ ଓ କଣ୍ଠରେ ଗାଇଣ ଫଳ (୭ । ୨୫), ରଜତ ଏବଂ ହିମ୍ଚିତ ଅମ୍ବର (୯ । ୩୦) ଆଦିର ପ୍ରୟୋଗ କରିଛନ୍ତି । କେତେବେଳେ ଉପେନ୍ଦ୍ର ବଂଶ ତଥା ପରିବାର ବର୍ଗଙ୍କ ମାଧ୍ୟମରେ ମଧ୍ୟ ଉଭୟ ଦେବଙ୍କ ବ୍ୟଞ୍ଜନା କାବ୍ୟରେ ଦେବାକୁ ଚେଷ୍ଟା କରିଛନ୍ତି । 'ମାର' ଶ୍ରୀକୃଷ୍ଣଙ୍କ ପୁତ୍ର ଓ 'କୁମାର' ଶିବଙ୍କ ପୁତ୍ର (୧/୪), ବିଷ୍ଣୁ 'ଗିରି'ଙ୍କର ଏବଂ ଶିବ 'ଗଉରୀ'ଙ୍କର ବଲ୍ଲଭ (୭/୪୩), ବିଷ୍ଣୁଙ୍କ କୋଳରେ 'ଇନ୍ଦିରା' ଓ ଶିବଙ୍କ କୋଳରେ 'ଅପର୍ଣ୍ଣା' 'ମନୋରମ' ଦିଶନ୍ତି (୨ । ୨୭) ।

---

୪, ମହାପାତ୍ର କେଦାର ନାଥ: ଖୁର୍ଦ୍ଧା ଇତିହାସ, ଭୁବନେଶ୍ୱର: ୧୯୬୯, ପୃ: ୧୪୫-୧୪୬ ।

ଉଭୟ ଦେବତା ହରି ଓ ହରଙ୍କ ଗୁଣ, କାର୍ଯ୍ୟ ତଥା ଲୀଳାର ବର୍ଣ୍ଣନା ପାଇଁ କେତେକ ସମ ଶବ୍ଦାତ୍ମମାନ ଶବ୍ଦ ପୁଞ୍ଜର ପ୍ରୟୋଗ ଉପେନ୍ଦ୍ର କରିବା ପାଇଁ ପ୍ରୟାସ କରିଛନ୍ତି । ବିଷ୍ଣୁ ତ୍ରିପୁରକୁ ମୋହନ କରି ପାରନ୍ତି ଓ ଶିବ ତ୍ରିପୁର ନାମକ ଅସୁରକୁ ଏବଂ ନିଜ ଭାଲ ନେତ୍ର ଦ୍ୱାରା ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଏହି ତିନ ପୁରକୁ ଦହନ କରି ପାରନ୍ତି (୧ । ୨) । ହରି ପାଣ୍ଡବମାନଙ୍କ ପକ୍ଷ ସମର୍ଥନକାରୀ ଏବଂ ଶିବ ତାଣ୍ଡବ ନୃତ୍ୟରେ ପ୍ରବୀଣ (୧ । ୫) । ସଂସାର ଭ୍ରମକୁ ଦୂର କରିବାପାଇଁ ଏହି ଦୁଇ 'ଭୀମ' ସମର୍ଥ ହୋଇଥାନ୍ତି (୧ । ୬) । ଏମାନେ ଉଭୟ ଅନନ୍ତ (ଆକାଶ ଓ ସର୍ପ) ଦ୍ୱାରା ବିଭୂଷିତ ହୋଇଥାନ୍ତି ଏବଂ ଅଘ (ପାପ ତଥା ସେହି ନାମର ରାକ୍ଷସ)କୁ ବିନାଶ କରିଥାନ୍ତି (୨ । ୨୩) । ନରକ (ନର୍କ ଓ ନାରକାସୁର)ର ପ୍ରତାପକୁ ଉଭୟ ହରଣ କରନ୍ତି (୩ । ୪୧) । ଲୀଳା ପ୍ରଦର୍ଶନ ପାଇଁ ଏହି ଉଭୟ ଦେବତା ଲକ୍ଷ୍ମୀ ଓ ବିଷକୁ କବଳିତ କରନ୍ତି (୪ । ୪୪) । କାଳ-ପବନ ଏବଂ କାମ (କନ୍ଦର୍ପ)କୁ ସେ ଅନାୟାସରେ ମାରିଦେଇ ପାରନ୍ତି (୭ । ୨୬) । ଏ ଉଭୟ ଦେବତା 'ଦ୍ୱିପଦ'ର ସୁଖ ବୃଦ୍ଧି କରନ୍ତି (୧୦ । ୨୪ ଓ ୨୨ । ୧୮) ଓ 'ନାଗ'(ସର୍ପ ଓ ହସ୍ତୀ)ଙ୍କ ସନ୍ତାପକୁ ଦୂର କରିବାରେ ସମର୍ଥ ହୁଅନ୍ତି (୧୨ । ୨୬) । ଏହି ଦୁଇ ଦେବ ଯଜ୍ଞ ରକ୍ଷା କରନ୍ତି ଓ ଯଜ୍ଞଧ୍ୱଂସ (ବଳିଙ୍କ ଦାନଯଜ୍ଞ ଓ ଦକ୍ଷଯଜ୍ଞ) ମଧ୍ୟ କରନ୍ତି (୧୫ । ୪୨) । ଏହି ଉଭୟ ଦେବତା ପୁଣି ସଦାଶିବ (ମହାଦେବ) ଏବଂ ସଦାଶିବ (ସର୍ବଦା ମଙ୍ଗଳମୟ) ଅଟନ୍ତି (୧୨ । ୨୬, ୧୬ । ୨୦) । ସେ ପୁଣି 'ମଧୁ ବଇରି' ଓ 'ଅନ୍ଧକ ଦ୍ୱେଷୀ' (୨୨ । ୧୮) । ସଂସାରର ଦୁଃଖ ଦହନ ପାଇଁ ସେ ଦଶ ଅବତାର ଓ ଅଷ୍ଟ ମୂର୍ତ୍ତି ଧାରଣ କରନ୍ତି (୨୨ । ୧୮) ।

କେତେକ ସ୍ଥଳରେ ଉପେନ୍ଦ୍ର ଏହି ସମସ୍ତ ଶ୍ଳିଷ୍ଟ ପ୍ରୟୋଗ ପରମ୍ପରା ମଧ୍ୟରୁ ଯେ କୌଣସି ଦୁଇଟିକୁ ଗ୍ରହଣ କରି ଦୁଇ ଦେବତାଙ୍କର ବର୍ଣ୍ଣନା କରିଛନ୍ତି । ଉଦାହରଣ ସ୍ୱରୂପ 'ସିତକଳେବର' ଓ 'ଶିରୀଧର' (୭ । ୪୬), ଅରିଦରକର (ଶତ୍ରୁମାନଙ୍କର ଭୟପ୍ରଦ ଓ ଶଙ୍ଖ ଚକ୍ର ହସ୍ତ), ପୁନାଗଶବ୍ଦ (୧୧ । ୨୨), ଜଟାଧର ବର ଓ ଅଚଳ ବିହାରୀ (୧୩ । ୨୦); ଗଜ ଆରତ ନାଶନ ଓ ଗଜଚର୍ମ ବସନ (୧୬ । ୨୬), ବଧୂ (ଶ୍ରୀକୃଷ୍ଣ) ଓ ବିଧୁକଣ୍ଠା (ଚନ୍ଦ୍ର ଯାହାଙ୍କ ଜଟାରେ) ଶବ୍ଦ (୨୧ । ୨୦) ଆଦି ଏ କ୍ଷେତ୍ରରେ ଗ୍ରହଣୀୟ । ଏକ ସମନ୍ୱୟାତ୍ମକ ପରମ୍ପରା ଭିତରେ ଉପେନ୍ଦ୍ର ନିଜର ଅସାଧାରଣ ଶବ୍ଦ ପାଣ୍ଡିତ୍ୟର ପରିଚୟ ଦେଇ ହରି ଓ ହର ଏହି ଦୁଇ ଦେବତାଙ୍କୁ ବନ୍ଦନା କରିବା ଅବସରରେ ନିଜ କାବ୍ୟର ସୁଖଦ ସମାପ୍ତି ପାଇଁ ଏହି ଉଭୟ ଦେବତାଙ୍କ ଠାରୁ ଆଶୀର୍ବାଦ ଭିକ୍ଷା କରିଛନ୍ତି ।

୨

॥ ଦୁଇ ॥

'ରସଲେଖା' ମୁଖ୍ୟତଃ ଏକ ପ୍ରେମମୂଳକ କଥା ବସ୍ତୁକୁ ନେଇ ରଚିତ ହୋଇଛି । ଏହି କାବ୍ୟର କାହାଣୀ ଭିତ୍ତି ହେଉଛି, ଶୈଳଦେଶର ନିକଟବର୍ତ୍ତୀ ମଳୟଗିରି ନିକଟରେ 'ରସୋଦୟ' ନାମକ ଏକ ଅରଣ୍ୟ ଥିଲା । ଏହି ବନର ବୈଶିଷ୍ଟ୍ୟ ହେଉଛି ମହାନ୍ ଉଚ୍ଚ ଚେତା ସାଧକମାନେ ମଧ୍ୟ ଏ ଅରଣ୍ୟ ମଧ୍ୟରେ ପ୍ରବେଶ କରିବା ମାତ୍ରେ କାମ ଚେଷ୍ଟାରେ ପାଗଳ ହୋଇ ଉଠୁଥିଲେ [୧/୧୨] । ଥରେ କପିସାଞ୍ଜ ଋଷିଙ୍କ ସାତଶହ ପଚିଶ ଶିଷ୍ୟ ଏହି ଅରଣ୍ୟରେ ପ୍ରବେଶ କରି କାମୋନ୍ମତ୍ତ ହୋଇଗଲେ ଏବଂ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ ନ କରି ଏହିଠାରେ ପରିବାର ବସାଇ ରହିଲେ । ଶିଷ୍ୟମାନେ ନ ଫେରିବାରୁ ମହାତପା କପିସାଞ୍ଜ ସେମାନଙ୍କୁ ଖୋଜି ଖୋଜି ଏହି ଅରଣ୍ୟରେ ପ୍ରବେଶ କଲେ ଓ ନିଜେ ମଧ୍ୟ କାମ ଚେଷ୍ଟାରେ ବିହ୍ୱଳିତ ହୋଇଗଲେ । ଶେଷରେ ସେ ଅଧୀର ହୋଇ ଶୈଳ ରାଜାଙ୍କୁ କନ୍ୟା ପ୍ରାର୍ଥନା କଲେ ଓ ତାଙ୍କ କନ୍ୟାଙ୍କୁ ବିବାହ କରି ଏହି ଅରଣ୍ୟରେ ବସବାସ କଲେ । ଏହି କପିସାଞ୍ଜଙ୍କ କନ୍ୟା କାବ୍ୟନାୟିକା ରସଲେଖା । କନ୍ୟାର ସେବା କରିବାପାଇଁ ଋଷି ଅଠକଣ ସମବୟସ୍କୀ ସଖୀଙ୍କୁ ଜେମା ପାଇଁ କିଣି ଆଣିଲେ ଓ ସମୟ କ୍ରମେ ରସଲେଖା ଯୌବନାବତୀ ହେଲା ।

ମଳୟ ପର୍ବତର ଉତ୍ତର ଭାଗରେ ସୁଧାନିଧି ନାମକ ଏକ ମନୋହର ପୁରଥିଲା, ଯାହାର ରାଜା ଥିଲେ ଭାଦ୍ରତି ଏବଂ ତାଙ୍କର ପୁତ୍ର ଥିଲେ ବଶ୍ୟଭୂତ [୩/୧୭] । ଉପେନ୍ଦ୍ର ଅନ୍ୟତ୍ର ଏହି ରାଜା ଭାଦ୍ରତିଙ୍କୁ 'କଳାବର୍ଗେଶ୍ୱର' ବୋଲି ସମ୍ବୋଧନ କରିଛନ୍ତି [୧୭/୩] । ଏହି ବଶ୍ୟଭୂତି ସୁକନ୍ୟା ଲାଭ ପାଇଁ ପ୍ରତ୍ୟହ ଶିବ ସେବା କରେ । ଦିନେ ସେ ସ୍ୱପ୍ନାଦିଷ୍ଟ ହୁଏ ରସୋଦୟ ଅରଣ୍ୟକୁ ଯାଇ ରାଜ ଋଷିର କୁମାରୀର ମନ ହରଣ କରିବାକୁ । ଚନ୍ଦ୍ରିତ ରାଜକୁମାରକୁ ଦୟା ପ୍ରଦର୍ଶନ କରି ଅମ୍ବିକା ରାତିରେ ତା'ର ହାତ ଧରି ସେହି ଅରଣ୍ୟରେ ଛାଡିଦେଇ ଆସନ୍ତି । ବଶ୍ୟଭୂତ ବନ ମଧ୍ୟରେ ଲୁଚି ରହି ନାୟିକା ରସଲେଖାର ସୌନ୍ଦର୍ଯ୍ୟ ସନ୍ଦର୍ଶନ କରି ଆତ୍ମହରା ହୋଇଯାଏ । ଏହା ପରେ କାଳି ଚତୁର୍ଦ୍ଦଶୀ ଦିନ ଶିବ ପୂଜା କରିବାପାଇଁ ରସଲେଖା ସଖୀମାନଙ୍କ ସହ ବନକୁ ଫୁଲ ତୋଳିବାକୁ ଆସେ । ସଖୀମାନଙ୍କୁ ବିଭିନ୍ନ ଦିଗକୁ ଫୁଲ ତୋଳିବାକୁ ପଠାଇ ଦୈବ ଯୋଗକୁ ସେ ବଶ୍ୟଭୂତ ଥିବା ଦିଗ ଆଡ଼କୁ ଯାଏ । ଉଭୟଙ୍କର ଚକ୍ଷୁରକ୍ଷ ହୋଇଯାଏ ଓ ରସଲେଖା ବଶ୍ୟଭୂତକୁ ଦେଖି ବିମୋହିତା ହୋଇଯାଏ । ସୁଯୋଗ ଦେଖି ବଶ୍ୟଭୂତ ନାୟିକା ରସଲେଖାକୁ ଗୁଟ୍ଟ ମାଧ୍ୟମରେ ବଶ କରିବାକୁ ଚେଷ୍ଟାକରେ । ସଖୀମାନେ ଜେମାକୁ ଖୋଜି ଖୋଜି ଆସି ଏହି ଦୃଶ୍ୟ ଦେଖିପାରନ୍ତି ଓ ଜେମାର ଗୌରବ ବଢ଼ାଇବାପାଇଁ ମିଛରେ 'ମାତା ହକରି' ଆସିଛି ବୋଲି କହି ଜେମାକୁ ନେଇଯାନ୍ତି ।

ଏହାପରେ ପରସ୍ପର ପରସ୍ପରର ଅନୁଚିନ୍ତାରେ ଉଭୟଙ୍କ ନିକଟକୁ ପତ୍ର ପ୍ରେରଣ କରନ୍ତି । ନାୟିକାର ସଖୀ ଏ କ୍ଷେତ୍ରରେ ପ୍ରଧାନ ଭୂମିକା ଗ୍ରହଣ କରିଥାଏ । ଉଭୟ ନାୟକ ନାୟିକା ମିଳନର ଅପେକ୍ଷାରେ ବ୍ୟସ୍ତ ହୋଇ ପଡ଼ନ୍ତି । ବିରହର ଦାବଦହନ ମଧ୍ୟରେ ସେମାନଙ୍କ ସମସ୍ତ ମୁହୂର୍ତ୍ତ ଦୁର୍ବିସହ ହୋଇଯାଏ । ଅଧରାତିରେ ନାୟକ ନାୟିକାକୁ ଶୁଣାଇ ନିଜ ଏକନିଷ୍ଠ ପ୍ରେମ ବିଷୟକ ସଙ୍ଗୀତ ଗାନ କରେ (୯ | ୧୦-୬୫) । ସଖୀମାନେ ଉଭୟ ନାୟକ ନାୟିକାଙ୍କ ମନୋବେଦନାକୁ ନିଜ ଭିତରେ ଉପଲବ୍ଧି କରିପାରନ୍ତି । ପରଦିନ ପ୍ରଭାତରୁ ନାୟିକାର ପତ୍ର ନେଇ ଏକ ପଦ୍ମ ମଧ୍ୟରେ ରଖି ନାୟକଙ୍କୁ ଦିଅନ୍ତି । ଈପ୍ସିତ ପତ୍ର ପାଇ ନାୟକ ଆନନ୍ଦିତ ହୋଇଯାଏ ଓ ପତ୍ର ପାଠ ପରେ ନାୟିକା ସହ ମିଳନ ପାଇଁ ତାର ସଖୀକୁ ନିବେଦନ କରେ । ସଖୀ ନାୟକ ନିକଟରେ ନାୟିକାର ଅନୁରୂପ ଅବସ୍ଥା ଜଣାଇ ନାରଦଙ୍କ ଆସିବା ପର୍ଯ୍ୟନ୍ତ ଧୈର୍ଯ୍ୟଧରିବାକୁ କହି ବିଦାୟ ନିଏ [୧୧ | ୬୦] । ନାୟକ ଏକ କାହ୍ନର ସହ ମିତ୍ରବସି ନାୟିକାକୁ ସ୍ମରଣ କରି ସମସ୍ତ ଅତିବାହିତ କରେ ।

ନାୟକ ନାୟିକାଙ୍କ ଏ ଦୁଃଖ ସହି ନ ପାରି ନାରଦ ବିଶ୍ୱକର୍ମାଙ୍କ ଠାରୁ 'ତ୍ରିଲୋକ ଲେଖା' ଚିତ୍ରପଟ ଏକ ଯୋଗିନୀକୁ ଦେଇ କପିଳାଙ୍ଗଙ୍କ ପାଖକୁ ପଠାଇଲେ । କପିଳାଙ୍ଗଙ୍କ ଅନୁମତି ନେଇ ଯୋଗିନୀ ସେହି ଚିତ୍ରପଟ ରସଲେଖାକୁ ଦେଖାଏ । ମାତ୍ର ରସଲେଖା ଅନ୍ୟ କୌଣସି ପୁରୁଷଙ୍କ ପ୍ରତି ଆସକ୍ତ ନହୋଇ ବିଶ୍ୱଭୂତି ପ୍ରତି ନିଜ ଉତ୍କଣ୍ଠା ବ୍ୟକ୍ତ କରେ । ଯୋଗିନୀ କପିଳାଙ୍ଗଙ୍କୁ କନ୍ୟାର ଈପ୍ସିତ ପୁରୁଷଙ୍କ କଥା ଜଣାଇ ଦିଅନ୍ତେ ନାରଦ ଆସି ପହଞ୍ଚନ୍ତି ଏବଂ ବିଶ୍ୱଭୂତି ସହ ରସଲେଖାର ବିବାହ ସମ୍ପାଦନ କରନ୍ତି । ନବଦମ୍ପତିଙ୍କର ପ୍ରଥମ ମିଳନ ପରେ କପିଳାଙ୍ଗ ଝିଅ ଜ୍ୱାଇଁଙ୍କୁ ଏକ 'କାଚତାଳ ପୁର'ରେ ରଖାଇବାର ବ୍ୟବସ୍ଥା କରନ୍ତି ଓ ସନ୍ତୋନୋତ୍ପତ୍ତି ପରେ ବିଶ୍ୱଭୂତି ନିଜ ମନ୍ତ୍ରୀ ସହ ନିଜ ରାଜ୍ୟକୁ ଯିବ ବୋଲି କୁହନ୍ତି [୧୪ | ୭୦] । ମାତ୍ର ଅପର ପକ୍ଷରେ ବିଶ୍ୱଭୂତିଙ୍କ ପିତା ପୁତ୍ର ଗଲାଦିନୁ ବିଚଳିତ ହୋଇ ଚୂଡ଼ିଦିଗକୁ ଦୂତ ପଠାନ୍ତି । ମାତ୍ର ପୁତ୍ରର କୌଣସି ସନ୍ଧାନ ପାଆନ୍ତି ନାହିଁ । ଦୈବଯୋଗକୁ ନିଶାକର ନାମକ ଏକ ଋଷି ଚାତୁର୍ମାସୀ ପାଳନ କରିବା ଅବସରରେ ତାଙ୍କ ଘରେ ଆସି ପହଞ୍ଚନ୍ତି ଓ ସମସ୍ତ କଥା ଶୁଣି ରାତିରେ ଏକ ରାକ୍ଷସକୁ ପଠାଇ କୁମାର ଶୋଇଥିବା ଅବସ୍ଥାରେ ହରଣ କରି ଆଣନ୍ତି । ନିଦ୍ରାରୁ ଉଠି ନାୟକ ନିଜ ପତ୍ନୀକୁ ନ ପାଇ ବିଚଳିତ ହୋଇଯାଏ । ଅପର ପକ୍ଷରେ ସ୍ୱାମୀଙ୍କୁ ନ ପାଇ ରସଲେଖାର ଅବସ୍ଥା ମଧ୍ୟ ଦୁର୍ବିସହ ହୋଇଯାଏ । ଅସହ୍ୟ ଦୁଃଖରେ ନିଜ ପ୍ରିୟ ପାଖକୁ ପତ୍ରଟିଏ ଲେଖିବସେ ସେ । ମାତ୍ର ସଖୀମାନେ

ପ୍ରକୃତି ସନ୍ୟାସୀ ଜଣେ ଦୁଇ ମାସକୁ କଣ୍ଠକର ନେଇଯିବା କଥା ମିଛରେ ରସଲେଖାକୁ କହି ଦିଏ (୨୦ । ୧୮–୧୯) ।

ପତ୍ନୀର ଅଭାବରେ ନାୟକର ବିଚଳିତ ଅବସ୍ଥାକୁ ଲକ୍ଷ୍ୟକରି ନାୟକର ସଖାମାନେ ରାଜାଙ୍କ ଆଗରେ ସମସ୍ତ କଥା କହନ୍ତି । ରାଜା ମନ୍ତ୍ରୀଙ୍କ ସହ ପରାମର୍ଶ କରି ନିଶାକର ଋଷିଙ୍କ ନିକଟକୁ ଯାନ୍ତି ଓ ଋଷି ରାଜାଙ୍କୁ କପିସାନ୍ତଙ୍କ ସହ ତାଙ୍କ ସମ୍ପର୍କ ଓ ପୂର୍ବଜନ୍ମର ବିବରଣୀ ଦିଅନ୍ତି । ମନ୍ତ୍ରୀ ଓ ସୈନ୍ୟଙ୍କ ସହ ନିଜେ ନିଶାକର ଋଷି ରସୋଦୟ ବନକୁ ଯାଇ କପିସାନ୍ତଙ୍କୁ ସାକ୍ଷାତ କରନ୍ତି । ଆନନ୍ଦିତ କପିସାନ୍ତ ଲଗ୍ନ ଦୃଷ୍ଟି ନିଜ କନ୍ୟାକୁ ପ୍ରଚୁର ଧନ ସମ୍ପତ୍ତି ସହ କନ୍ୟାକୁ ବିଦାୟ ଦିଅନ୍ତି । ରାଜାଙ୍କ ଅଲକ୍ଷିତରେ କୁମାର ଠାରୁ ପତ୍ର ଆଣି ଆସିଥିବା ମନ୍ତ୍ରୀପୁତ୍ର ଏକାନ୍ତରେ ଧନ ନାୟିକାର ସଖୀକୁ ପ୍ରଦାନ କରେ ଓ ପତ୍ର ପାଠ କରି ଆନନ୍ଦିତ ହୁଏ । ଶେଷରେ ଉଭୟ ନାୟକ ନାୟିକାଙ୍କ ମିଳନରେ କାବ୍ୟର ପରିସମାପ୍ତି ଘଟେ ।

ରସଲେଖାର କଥା ଭାଗରେ ଏହି ଯେଉଁ ପ୍ରେମାଖ୍ୟାନଟି ପରିଲକ୍ଷିତ ହୁଏ ଏହା ଉପେନ୍ଦ୍ରଙ୍କର ନିଜସ୍ୱ ପରିକଳ୍ପନା ନୁହେଁ । ସମଗ୍ର ଭାରତୀୟ ସାହିତ୍ୟିକ ପରଂପରାକୁ ଲକ୍ଷ୍ୟ କଲେ ପରିଲକ୍ଷିତ ହୁଏ, ଏହି ପ୍ରେମ ଓ ପ୍ରଣୟକୁ ଉପଜୀବ୍ୟ କରି ଆଖ୍ୟାନ, ଉପାଖ୍ୟାନ ବୃତ୍ତାନ୍ତ ବୈଦିକ କାଳରୁ ପ୍ରବାହିତ ହୋଇ ଆସିଥିଲା । ଋକ୍‌ବେଦର ୧୦/୧୫ ଋକ୍‌ରେ ଉପଲବ୍‌ଧ ହେଉଥିବା ଉର୍ବଶୀ ପୁରୁରବା ସମ୍ବାଦ, ୫।୭୧ ଋକ୍‌ର ଋଷି ଆର୍ଚନାନଙ୍କ ପୁତ୍ର ଶ୍ୟାବାଶ୍ୱ ଓ ରାଜା ରଥବିତଙ୍କ କନ୍ୟା ମନୋରମାଙ୍କ ପ୍ରେମ କାହାଣୀ ଏହି ପ୍ରେମାଖ୍ୟାନ ପରମ୍ପରାର ଶୁଭ ଶିଳାନ୍ୟାସ କରିଥିଲା । ଏହି ବୈଦିକ କାହାଣୀ ମାନଙ୍କରେ ମୁଖ୍ୟ ଭାବେ ଦେବତା ଏବଂ ମାନବୀ, ଅପ୍‌ସରା ଏବଂ ମାନବ ତଥା ଋଷି ଓ ରାଜକନ୍ୟାଙ୍କ ପ୍ରଣୟ ପ୍ରସଙ୍ଗ ସ୍ଥାନ ପାଇଛି (୫) । କାଳକ୍ରମେ ଏହି ପ୍ରେମ ପରମ୍ପରା ବ୍ରାହ୍ମଣ ଗ୍ରନ୍ଥ, ଉପନିଷଦ, ବୃହତ୍ କଥା, ଶତପଥବ୍ରାହ୍ମଣ ତଥା ମହାଭାରତ ଆଦି ଗ୍ରନ୍ଥରେ ବିକଶିତ ହୋଇଥିଲା । ଏହି ପ୍ରେମାଖ୍ୟାନ ପରମ୍ପରା ଉପନିଷଦ କାଳରେ ଯାଜ୍ଞବଲ୍‌କ୍ୟ—ଗାର୍ଗୀ, ସତ୍ୟକାମ—ଯାବାଳ ତଥା ଅହଲ୍ୟା—ଇନ୍ଦ୍ର ଆଦି କଥା ମାନଙ୍କରେ ବିକଶିତ ହେଲା । ଏହାର ଏକ ସମୃଦ୍ଧ ରୂପ ମହାଭାରତରେ ସ୍ପଷ୍ଟ ହୋଇଯାଏ । ସଂସ୍କୃତ କାବ୍ୟ ଗ୍ରନ୍ଥମାନଙ୍କରେ ଏହି ପରମ୍ପରା ସୁବନ୍ଧୁଙ୍କର ବାସବଦତ୍ତା, ବାଣଭଟ୍ଟଙ୍କ କାଦମ୍ବରୀ,

---

୫. ଶ୍ରୀ ବାସ୍ତବ ଡ଼ା: ହରକାନ୍ତ – ଭାରତୀୟ ପ୍ରେମାଖ୍ୟାନ କାବ୍ୟ : ହିନ୍ଦୀ ପ୍ରଚାରକ ପୁସ୍ତକାଳୟ – ବନାରସ : ୧୯୫୫, ପୃ ୭.

କାଳିଦାସଙ୍କ କୁମାରସମ୍ଭବମ୍, ମେଘଦୂତମ୍, ଅଭିଜ୍ଞାନ ଶାକୁନ୍ତଳମ୍, ବିକ୍ରମୋର୍ବଶୀୟମ୍ ଆଦି ଗ୍ରନ୍ଥମାନଙ୍କରେ ଲୋକପ୍ରିୟ ହୋଇ ଉଠିଲା । ଏହା ବ୍ୟତୀତ ସଂସ୍କୃତ ପଞ୍ଚତନ୍ତ୍ର, ବେତାଳ ପଞ୍ଚବିଂଶତି, ବୃହତ୍ କଥା ଆଦି କଥା ଗ୍ରନ୍ଥମାନଙ୍କରେ ମଧ୍ୟ ଏହି ପ୍ରେମ କଥା କ୍ରମେ ଲୋକପ୍ରିୟ ହୋଇ ଉଠିଲା । ପ୍ରାୟ ପଞ୍ଚମ ଶତାବ୍ଦୀ ବେଳକୁ ବୌଦ୍ଧଧର୍ମର ଅନୁଗାମୀ ସ୍ଥବିର ଓ ଥେରୀଗାଥାରେ ଭିକ୍ଷୁ ଭିକ୍ଷୁଣୀଙ୍କର ଜୀବନ ଚରିତ ସମ୍ବଳିତ ଆଖ୍ୟାନ ବର୍ଣ୍ଣିତ ହେବାକୁ ଲାଗିଲା । କାଳକ୍ରମେ ବୌଦ୍ଧ-ମାନେ ଭାରତୀୟ ପ୍ରେମାଖ୍ୟାନମାନଙ୍କୁ ନିଜ ଧର୍ମ ପ୍ରଚାରର ମାଧ୍ୟମ ଭାବରେ ଗ୍ରହଣ କଲେ । ଏହି ସିଦ୍ଧ ଯୁଗରେ ତନ୍ତ୍ର, ମନ୍ତ୍ର, ଯାଦୁ ମନ୍ତ୍ର ତଥା ବାମ ମାର୍ଗର ବହୁଳ ପ୍ରଚାର ହୋଇଥିଲା ଏବଂ ପଞ୍ଚମକାର ସେବାରେ ବର୍ଣ୍ଣିତ ମୈଥୁନ ତତ୍ତ୍ୱ ଯେଉଁଥିରେ ସାଧକ ସାଧନା ସଙ୍ଗିନୀ ମାଧ୍ୟମରେ ମହାସୁଖ ଲାଭ କରିପାରୁଥିଲା ତାହା ଅଧିକ ଲୋକପ୍ରିୟ ହୋଇ ଉଠିଥିଲା (୬) ।

ଅପଭ୍ରଂଶ ସାହିତ୍ୟରେ ଏହି ପ୍ରେମାଖ୍ୟାନ ପରମ୍ପରା ଅଧିକ ସବଳ ହୋଇ ଉଠିଥିଲା, ଯେଉଁଥିରେ କାବ୍ୟର ନାୟକ ନାୟିକା ପରସ୍ପର ପ୍ରତି ଆକର୍ଷିତ ହୋଇ ବିବାହ କରୁଥିଲେ ଓ କୌଣସି କାରଣରୁ ଉଭୟଙ୍କ ମଧ୍ୟରେ ବିଚ୍ଛେଦ ହେଉଥିଲା । ଏହି ବିଚ୍ଛେଦ ସ୍ମୃତି କେତେକ ଆକସ୍ମିକ ଉପାଦାନ ଦ୍ୱାରା ଦୂର ହୋଇ ଯାଉଥିଲା । ଯେଉଁଗୁଡ଼ିକ ମଧ୍ୟରେ ଯକ୍ଷ, ଗନ୍ଧର୍ବ, ମୁନି ଓ ସ୍ୱପ୍ନର ଭୂମିକା ପ୍ରଧାନ ଥିଲା । ମୁସଲମାନ ପ୍ରଭାବ ପଡ଼ିବା ପୂର୍ବରୁ ହିନ୍ଦୁ ପ୍ରେମାଖ୍ୟାନ ପରମ୍ପରାର ବୈଶିଷ୍ଟ୍ୟ ଥିଲା ଯେ କୌଣସି ରୂପବତୀ ନାୟିକାର ପ୍ରେମରେ ଆସକ୍ତ ନାୟକ କାର୍ଯ୍ୟ ସିଦ୍ଧି ପାଇଁ କ୍ରିୟାଶୀଳ ହେବାବେଳେ ବିଭିନ୍ନ ପ୍ରକାର ପ୍ରତିବନ୍ଧକର ସମ୍ମୁଖୀନ ହେଉଥିଲା ଏବଂ ଶେଷରେ ଏହି ସମସ୍ତ ପ୍ରତିବନ୍ଧକ ଶିବ ପାର୍ବତୀଙ୍କ ଭଳି ଦୈବୀଶକ୍ତି ଅଥବା ଅପସରା, ଗନ୍ଧର୍ବ, କିନ୍ନର, ଶୁଆ, ସାରି ତଥା ହଂସ ଆଦି ଅଧିଦୈବିକ ଶକ୍ତିମାନଙ୍କ ଦ୍ୱାରା ତିରୋହିତ ହୋଇଯାଉଥିଲା [୭] । କ୍ରମେ ମୁସଲମାନ ପ୍ରଭାବରେ ଏହି କଥାଭାଗରେ ନାୟକ ନାୟିକାଙ୍କ ଅନାବୃତ ଶୃଙ୍ଗାର ଲୀଳା, ନାୟିକାର କାମୋଦ୍ଦୀପକ ଉପସ୍ଥାପନା ଆଦି ବହୁ ପରିମାଣରେ ବର୍ଣ୍ଣିତ ହେବାକୁ ଲାଗିଲା । ଫଳରେ ନାରୀର ଯୌବନାଙ୍ଗର କର୍ଷିତ ବର୍ଣ୍ଣନା ଏପରିକି ନାୟିକାର ଅଦ୍ୟ ଋତୁ ହେବାର ଚିତ୍ର ମଧ୍ୟ ଏହି କାବ୍ୟ-ମାନଙ୍କରେ ପ୍ରଦାନ କରିବାକୁ କବିମାନେ ପଶ୍ଚାତ୍ପଦ ହେଲେ ନାହିଁ । ଦୁଃଖ

୬. ତତ୍ରୈବ : ପୃ. ୧୫.
୭. ତତ୍ରୈବ : ପୃ. ୪୭.

ହରନ ଦାସଙ୍କ ସୁପ୍ରସିଙ୍କ ହନ୍ଦୀ ପ୍ରେମାଖ୍ୟାନ କାବ୍ୟ 'ପୁଷ୍ପାବତୀ' ଓ କବିସମ୍ରାଟ୍ ଉପେନ୍ଦ୍ରଙ୍କ 'ଲାବଣ୍ୟବତୀ'ରେ ଏହାର ସୁନ୍ଦର ଉଦାହରଣ ଦେଖିବାକୁ ମିଳେ । ଏହି କାବ୍ୟମାନଙ୍କରେ ପ୍ରେମର ଆଧ୍ୟାତ୍ମିକ ପକ୍ଷ ପ୍ରତି ଯେତେ ଗୁରୁତ୍ୱ ଦିଆହୋଇ ନାହିଁ ଚୁମ୍ବନ, ଆଲିଙ୍ଗନ ତଥା ଅନାବୃତ୍ତ ରତି ବର୍ଣ୍ଣନା ପ୍ରତି ସେତେ ଅଧିକ ଗୁରୁତ୍ୱ ଦିଆଗଲା । ମୁଖ୍ୟତଃ ବଜ୍ରଯାନୀ ସାଧକଙ୍କ କୂର୍ମ ସାଧନା, ବୈଷ୍ଣବଙ୍କ ରାଗାନୁଗା ଭକ୍ତି, ରୀତିକାଳୀନ କବିମାନଙ୍କ ନାୟିକା ଭେଦ ଏବଂ ମୋଗଲକାଳୀନ ଭୋଗବିଳାସମୟ ବାତାବରଣ ଏହି ପ୍ରେମାଖ୍ୟାନ କାବ୍ୟର ଆଖ୍ୟାନ ଭାଗମାନଙ୍କର ଦିଗ୍ ନିୟନ୍ତ୍ରକ ଥିଲେ । ପ୍ରକୃତ ଯୁଦ୍ଧ ଏବଂ ଯୁଦ୍ଧ କ୍ଷେତ୍ରରୁ ଦୂରେଇ ଯାଇ କଳ୍ପନାର ଲଘୁ ପକ୍ଷରେ ସଞ୍ଚରଣ କରୁଥିବା ଏହି କବିମାନେ କାମ ସମରର ବିସ୍ତୃତ ବର୍ଣ୍ଣନା ଦେଲେ । ତେଣୁ ପ୍ରେମର ଏକନିଷ୍ଠତା ଅପେକ୍ଷା ବିଳାସର ରସିକତାକୁ ହିଁ ସେମାନେ ମୁଖ୍ୟତଃ ପ୍ରାଧାନ୍ୟ ଦେଇଥିଲେ ।

'ରସଲେଖା' କାବ୍ୟରେ 'ରସୋଦଧି ବନ'ର ପରିକଳ୍ପନା ମୁଖ୍ୟତଃ ତତ୍କାଳୀନ ଶୃଙ୍ଗାର ଚେତନାର ଏକ ଚମତ୍କାର ଉଦାହରଣ । ଏହି ରସୋଦଧି ବନରେ ମହାନ୍ ଜିତେନ୍ଦ୍ରିୟ ସାଧକମାନେ ମଧ୍ୟ କାମାସକ୍ତ ହୋଇପଡ଼ିବାର ପ୍ରସଙ୍ଗ ଉପେନ୍ଦ୍ର ଉପସ୍ଥାପନ କରିଛନ୍ତି (୧/୧୨) । କାବ୍ୟରେ ନାୟକ ବିଶ୍ୱଭୂତ ଓ ନାୟିକା ରସଲେଖାଙ୍କ ପ୍ରଥମ ଦର୍ଶନ, ସାମୟିକ ବିରହ, ବିବାହ ପରବର୍ତ୍ତୀ ମିଳନ, ନିଶାକର ଋଷିଙ୍କ ଦ୍ୱାରା ବିଚ୍ଛେଦ ଓ ଶେଷରେ ମିଳନର ଚିତ୍ର ପ୍ରଦତ୍ତ ହୋଇଛି । ଏଥିରୁ ସ୍ପଷ୍ଟ ହୁଏ ଯେ ଶୃଙ୍ଗାର ରସ ହିଁ କାବ୍ୟର ମୁଖ୍ୟ ଉପାଦାନ । ସ୍ଥାନ ବିଶେଷରେ ଏହାର ସୃଷ୍ଟି ସାଧନ ପାଇଁ ବିପ୍ରଲମ୍ଭ ଶୃଙ୍ଗାରର ଅବତାରଣା କରାଯାଇଛି । ପ୍ରେମ ତଥା ପ୍ରଣୟର ପ୍ରତିକୂଳ ପରିସ୍ଥିତିରୁ ଉଭୟ ନାୟକ ନାୟିକାଙ୍କୁ ରକ୍ଷା କରିବାପାଇଁ ଦୈବୀ ଏବଂ ଆଧିଦୈବୀ ଶକ୍ତି ଉଭୟ ଏହି କାବ୍ୟରେ କ୍ରିୟାଶୀଳ ହୋଇଛନ୍ତି । ଦୈବୀଶକ୍ତି ଭିତରେ ନାରଦ ଉଭୟ ନାୟକ ନାୟିକାଙ୍କ ବିବାହ ପାଇଁ ମାର୍ଗ ପ୍ରସ୍ତୁତ କରିଛନ୍ତି (୧୨/୩) । ନାୟକ ବିଶ୍ୱଭୂତଙ୍କୁ ଦେବୀ ଅମ୍ବିକା କୃପା କରି ନାୟିକା ସହ ମିଳନ ପାଇଁ ରାତ୍ରିର ତୃତୀୟ ପ୍ରହରରେ ରସୋଦଧି ବନରେ ଛାଡ଼ିଦେଇଛନ୍ତି (୩।୩୪) । ଆଧିଦୈବୀ ଶକ୍ତି ଭିତରେ ନାୟକ ନାୟିକାଙ୍କୁ ଲାଭ କରିବାପାଇଁ ଏକ କିନ୍ନର ସହିତ ମୈତ୍ରୀ ସ୍ଥାପନ କରିଛି (୧।୨) । ମାତ୍ର ଏହି କିନ୍ନର ଦ୍ୱାରା ନାୟକ କି ପ୍ରକାର ସାହାଯ୍ୟ ପାଇ ଉପକୃତ ହୋଇଛି ଏକଥା କାବ୍ୟର କୌଣସି ସ୍ଥାନରେ ବର୍ଣ୍ଣିତ ହୋଇ ନାହିଁ । ନାରଦ ନାୟିକାର ସହ ନାୟକର ବିବାହ ପାଇଁ ଏକ ଯୋଗିନୀ ଦ୍ୱାରା ସମଗ୍ର ପୃଥିବୀ, ଆକାଶ ଓ ପାତାଳପୁରର ଶ୍ରେଷ୍ଠ ଯୁବକ ତଥା ରାଜାମାନଙ୍କର ପ୍ରତିକୃତି ନାୟିକା ନିକଟକୁ ପଠାନ୍ତି ଓ ଶେଷରେ ଯୋଗିନୀ କପିଳାକ୍ଷଙ୍କୁ କନ୍ୟାର ଆସକ୍ତ ବିଶ୍ୱଭୂତ

ପ୍ରତି ଥିବାର ପ୍ରକାଶ କରେ [୧୨୫ ଗ୍ରନ୍ଥ] । ଧାର୍ମିକ ପୁତ୍ରର ଅଦର୍ଶନରେ ଦୁଃଖିତ ସୁଧାନଧିପୁରର ରାଜା ନଶାକର ଋଷିଙ୍କ ଆଶ୍ରୟ ନଅନ୍ତି ଏବଂ ଘଟଣାରେ ଏକ ରାକ୍ଷସ ଦ୍ୱାରା ରକ୍ଷିତ ଶାପିତ ବଣୁଲୁତକୁ ରତ୍ନଲେଖା ପାଖରୁ ନେଇ ଆସି ସୁଧାନଧିପୁରର ରାଜାଙ୍କ ପାଖରେ ପହଞ୍ଚାଇ ଦିଅନ୍ତି [୧୭।୪] । ଶେଷରେ ନଶାକର କମିସ ଶ୍ରୁତଙ୍କ ଅତୀତ ପରିଚୟ ଦେଇ ନାୟକ ନାୟିକାଙ୍କ ମିଳନ ପାଇଁ ସମସ୍ତ ବ୍ୟବସ୍ଥା କରିଥାନ୍ତି [୨୧।୩-୮] । ଉପେନ୍ଦ୍ରଙ୍କ ଅନ୍ୟାନ୍ୟ କାଳ୍ପନିକ ପ୍ରେମାଖ୍ୟାନ ମୂଳକ କାବ୍ୟ ପରି 'ରତ୍ନଲେଖା'ରେ ସ୍ୱକୀୟା ପ୍ରେମର ଶୃଙ୍ଗାର ସର୍ବସ୍ୱ ହୋଇଛି ମୁଖ୍ୟତଃ ବୈଚିତ୍ର୍ୟହୀନ ଭାବେ ପ୍ରତିବିମ୍ବିତ ହୋଇଛି ।

॥ ତିନ ॥

ରୀତି କାଳୀନ ପ୍ରେମାଖ୍ୟାନ ମୂଳକ କାବ୍ୟର ଏକ ମୁଖ୍ୟ ବୈଶିଷ୍ଟ୍ୟ ହେଉଛି ନାୟିକାର ପ୍ରାଧାନ୍ୟ ପ୍ରତିପାଦନ ବ୍ୟବସ୍ଥା, ଉପେନ୍ଦ୍ର ମଧ୍ୟକାଳୀନ ଓଡ଼ିଆ ଅଳଙ୍କାରଧର୍ମୀ ରୀତି ଯୁଗର ପ୍ରବୀଣ ପୁରୋଧା ଥିବାରୁ 'ରସଲେଖା'ରେ ନାୟିକା ରସଲେଖାର ପ୍ରାଧାନ୍ୟ ସ୍ପଷ୍ଟ ଅଙ୍କନ କରିଛନ୍ତି । କେବଳ କାବ୍ୟ ନାୟିକାର ନାମାନୁସାରେ ସେ ଏ କାବ୍ୟର ନାମକରଣ କରିନାହାନ୍ତି ମଧ୍ୟକାଳୀନ କାବ୍ୟ ଶାସ୍ତ୍ରରେ ଉପଲବ୍ଧ ହୋଇଥିବା ନାୟିକାର ସମସ୍ତ ଉନ୍ନତ ଗୁଣକୁ ସେ ରସଲେଖା ଠାରେ ଏକତ୍ରିତ କରିବାର ଚେଷ୍ଟା କରିଛନ୍ତି । ଉପେନ୍ଦ୍ରଙ୍କ ଦୃଷ୍ଟିରେ ନାରୀ ହିଁ ପୁରୁଷ ଜୀବନର ସର୍ବଶ୍ରେଷ୍ଠ ସମ୍ପଦ । ଅତ୍ରି ତଥା ବଶିଷ୍ଠ ଆଦି ଋଷିମାନେ ମଧ୍ୟ ଅନସୂୟା ତଥା ଅରୁନ୍ଧତୀଙ୍କ ପ୍ରୀତିରୁ ଦୂରେଇ ଯାଇପାରନ୍ତି ନାହିଁ । ଜଗତା ଦ୍ୱୈପାୟନଙ୍କ ଯୋଗ ଭଙ୍ଗ ହୁଏ, ପରାଶର ସମ୍ଭୋଗ ପାଇଁ ମତ୍ସ୍ୟଗନ୍ଧାକୁ ଯୋଜନା ଗନ୍ଧା କରିଦିଅନ୍ତି ଏବଂ ଗୌତମଙ୍କ ପତ୍ନୀକୁ ଗ୍ରହଣ କରିଥିଲେ ସୁଦ୍ଧା ଦେବତାମାନେ ତାଙ୍କ ପ୍ରତି ଅକର୍ଷିତ ନହୋଇ ରହିପାରନ୍ତି ନାହିଁ [୧।୩୨-୩୪] । ଏହି ନାୟିକା ନାୟକକୁ ଆଶିର୍ବାଦ ସୁଖ ମଧ୍ୟ ପ୍ରଦାନ କରିପାରେ [୪।୪୨ ଓ ୧୭।୧୭] । ଉପେନ୍ଦ୍ର ଏ ପ୍ରସଙ୍ଗରେ ସ୍ପଷ୍ଟ କରି ଦେଇଛନ୍ତି ଯେ ବ୍ରହ୍ମାଙ୍କ ଶକ୍ତି ମଧ୍ୟ ନାୟିକା ନିକଟରେ ବନ୍ଦ୍ୟମାନ । ପ୍ରବୃତ୍ତି ମାର୍ଗର ମଧ୍ୟମଣି ନାୟିକା ଏବଂ ନିବୃତ୍ତି ମାର୍ଗର ଉପାସିତତ୍ତ୍ୱ ପରଂବ୍ରହ୍ମଙ୍କ ମଧ୍ୟରେ ଉପେନ୍ଦ୍ର ଏ କ୍ଷେତ୍ରରେ କୌଣସି ପାର୍ଥକ୍ୟ ରଖିନାହାନ୍ତି । ସମସାମୟିକ ଭାରତୀୟ ସାହିତ୍ୟକୁ ଲକ୍ଷ୍ୟ କଲେ ସ୍ପଷ୍ଟ ହୁଏ ଯେ ସେ ସମୟରେ ନାରୀ ପ୍ରତି ଏହି ପ୍ରାଧାନ୍ୟ ପରକ ଚିନ୍ତାଧାରା ମୁଖ୍ୟତଃ ମୁସଲମାନ ସଂସ୍କୃତିରୁ ହିଁ ଆସିଥିଲା ଏବଂ ପ୍ରାନ୍ତୀୟ କାବ୍ୟ ପରଂପରାରେ ପ୍ରତିଷ୍ଠିତ ହୋଇଯାଇଥିଲା । ତେଣୁ ଏହି ମନୋବାଞ୍ଛିତା ନାୟିକା ଲାଭ ପାଇଁ ନାୟକ କୃଚ୍ଛ୍ର ସାଧନା କରିବାକୁ ପଶ୍ଚାତ୍ପଦ ହେଉନଥିଲା । ଏଥିପାଇଁ ମହାଦେବଙ୍କୁ

ତପସ୍ୟା କରି ଏବଂ ତାଙ୍କ ଶିରରେ ଚମ୍ପାଫୁଲ ଚଢ଼ାଇବା ଶ୍ରୀହରଙ୍କ ଶିରରେ ତୁଳସୀ ଦେବା, ପଦ୍ମ ଫୁଲରେ ଲକ୍ଷ୍ମୀଙ୍କ ପୂଜା କରିବା, ଗଣେଶଙ୍କୁ ଲଡ଼ୁ ଦେବା, ଦୁର୍ଗାଙ୍କୁ ମନ୍ଦାର ଦେବା ଏବଂ ନାଗ ଚତୁର୍ଥୀ ବ୍ରତ ପାଳନ କରିବା ପାଇଁ ନାୟକ ପଶ୍ଚାତ୍‌ପଦ ହେଉନଥିଲା । ପୁଣି ଅଶେଷ ସୁକୃତରୁ ସେ ନାୟିକାକୁ ଦର୍ଶନ ମାତ୍ର କରିପାରୁଥିଲା (୫।୨୦-୨୫) । ସ୍ତ୍ରୀ ହିଁ ନାୟକ ନିକଟରେ ଥିଲା ଏକମାତ୍ର 'ପରମ ପଦାର୍ଥ' (୧୦।୬୭) ।

ନାୟିକାର ଏହି ପ୍ରାଧାନ୍ୟକୁ ଉପେନ୍ଦ୍ର ସେତିକବେଳେ ଚରମ ସୀମାରେ ପହଞ୍ଚାଇ ଦେଇଛନ୍ତି, ଯେତେବେଳେ ଭକ୍ତ କବିମାନେ କୃଷ୍ଣ ତଥା ରାମ ଓ ଭକ୍ତି ବିହୀନ ମନୁଷ୍ୟମାନଙ୍କର ନେତ୍ର, କର୍ଣ୍ଣ, ମୁଖ ତଥା ଇନ୍ଦ୍ରିୟମାନଙ୍କୁ ନିନ୍ଦା କଲା ପରି ସେ 'ବାଳାବିବସନ' ଦେଖି ନଥିବା ଲୋକର ଆଖିକୁ ମୟୂର ଚନ୍ଦ୍ରିକା, ରତି ଉତ୍ସବ କାଳରେ କଙ୍କିଣୀର କିଣିକିଣି ଶବ୍ଦ ଶୁଣି ପାରିନଥିବା କାନକୁ 'ବିଳ', ଯୁବତୀକୁ ଗୃହନ କରିଥିବା ବାଣୀକୁ 'ନିରର୍ଥକ ଭାରତୀ' ରତିବିଶ୍ରା ଦେହ ଲାଗି ନଥିବା ଦେହକୁ ଆଗାମୀ ଜନ୍ମର ଶୁଷ୍କଦାରୁ ପ୍ରିୟା ପାଇଁ ଫୁଲ ଗୁନ୍ଥି ଦେଉନଥିବା ହାତକୁ ପଥ ମଧ୍ୟରେ ପଡ଼ିଥିବା ନିସ୍ତ୍ରାଣ ପଥର ଏବଂ ନାରୀ ପ୍ରୀତିରେ ଆସକ୍ତ ନ ହେଉଥିବା ମନକୁ ନିନ୍ଦିତ ଅନୁପମ ବସ୍ତୁ ବୋଲି ଘୃଣା କରିଛନ୍ତି (୧୦।୪୩-୪୮) । ଏହି ପ୍ରୀତି ବତ୍ସଳା 'ପରମଂ ଅବଳା' ନାରୀ ପୁରୁଷକୁ 'ପରମ ଭାଗ୍ୟ ଥିଲେ ଯାଇ ଲାଭ ହୋଇଥାଏ [୧୭।୧୨] । ରାତିକୁ ଚନ୍ଦ୍ର ଏବଂ ଚନ୍ଦ୍ରଙ୍କୁ ରାତି ପରସ୍ପର ପରସ୍ପରର ଶୋଭା ବର୍ଦ୍ଧନ କଲା ପରି ନାୟିକା ନାୟକ ପରସ୍ପରର ଶୋଭା ଓ ଗୁଣ ବର୍ଦ୍ଧନ କରନ୍ତି [୧୭।୧୩] । ତପସ୍ୟାର କୃଚ୍ଛ୍ର ସାଧନାରେ ବସ୍ତ୍ର ସୁଦ୍ଧା ପରିତ୍ୟାଗ କରି ପୁଣି କାମ ଭାବ ଉତ୍ପାଦକ କନ୍ଦର୍ପକୁ ନେତ୍ରାଗ୍ନିରେ ଭସ୍ମୀଭୂତ କରି ପରିଶେଷରେ ମହାଦେବ ପାର୍ବତୀଙ୍କୁ 'ଅର୍ଦ୍ଧାଙ୍ଗ ଭୂଷଣ' କରିଥିବାର ଉଦାହରଣ ଦେଇ ଉପେନ୍ଦ୍ରଙ୍କ 'ସଂଯମୀ' କାବ୍ୟ ନାୟକ 'କଂଶୋରୀ'କୁ ପରିତ୍ୟାଗ କରିପାରିବ ନାହିଁ ବୋଲି ସ୍ପଷ୍ଟ ଭାବରେ ପ୍ରକାଶ କରିଛି [୧୧।୧୮] ।

କାବ୍ୟ ନାୟିକାର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ମଧ୍ୟ ଉପେନ୍ଦ୍ରଙ୍କ ଲେଖନୀ କମ୍ ଚମତ୍କାରିତା ସୃଷ୍ଟି କରି ନାହିଁ । ଉପେନ୍ଦ୍ରଙ୍କ ନାୟିକା ସମୁଦ୍ରରୁ ଜନ୍ମଗ୍ରହଣ କରିଥିବା ଲକ୍ଷ୍ମୀଙ୍କ ପରି ଅପରୂପା । ପୃଥିବୀ ରୁକ୍ମିଣୀ ନାରୀର ଶ୍ୱେତ ରଙ୍ଗର ଚମ୍ପକମାଳା ସେ [୨।୧] । ସେ ଅନୁପମା ଏବଂ କେବଳ ମାତ୍ର ନିଜେ ହିଁ ନିଜର ଉପମା ପାଇଁ ଯୋଗ୍ୟା [୨।୧୮] । ବିଶ୍ୱର ସୁନ୍ଦରୀ ଭାବେ ପରିଗଣିତା ରତି କୋଟିଏ ରୂପ ଧରି ଆସିଲା ପରି ତାର ସୌନ୍ଦର୍ଯ୍ୟ ଅନନ୍ୟ ଓ ଅନବଦ୍ୟ [୭।୧୧] । ନିଜ ରୂପ ଲାବଣ୍ୟରେ ସେ ତନପୁରକୁ ମୋହିତ କରିଦିଏ [୭।୧୫] । ତାର

ପ୍ରଶଂସା ଭାଷାରେ ପ୍ରକାଶ କରାଯାଇପାରେ ନାହିଁ [୭।୧୭]। ସାମଗ୍ରିକ ସୌନ୍ଦର୍ଯ୍ୟ ବର୍ଣ୍ଣନା ବ୍ୟତୀତ ଅଟପଦୀ ମଧ୍ୟକାଳୀନ ଖଣ୍ଡ କାବ୍ୟ ପରମ୍ପରାକୁ ଅନୁସରଣ କରି ନାୟିକାର ନଖଶିଖ ବର୍ଣ୍ଣନା କରିଛନ୍ତି। କେତେବେଳେ ନାୟିକାର ବିଭିନ୍ନ ଅଙ୍ଗ ପାଇଁ ପ୍ରଯୁକ୍ତ ଉପମାନମାନେ ସମତୁଲ ହୋଇଛନ୍ତି ତ କେତେବେଳେ ସମାନ ହୋଇ ପାରି ନାହାନ୍ତି। ନଖଶିଖ ବର୍ଣ୍ଣନାରେ ପ୍ରଯୁକ୍ତ ଉପମାନ ମାନଙ୍କ ମଧ୍ୟରୁ ବିଶିଷ୍ଟ କେତୋଟି ଉପମାନ ଦେଲେ କେଶର କଳିମା ପାଇଁ ହର ଗଳର ନୀଳିମା, କୁଟିଳତା ପାଇଁ ଖଳ ହୃଦୟର କୁଟିଳତା ଏବଂ କେଶର ସାମଗ୍ରିକ ଉପମାନ ଭାବେ ତମାଳ ଏବଂ କଜ୍ଜଳ (୨/୪); ମୁଖ ସହିତ ଦର୍ପଣ (୫/୪) ଓ ପୂର୍ଣ୍ଣଚନ୍ଦ୍ର (୫/୪); ଅଳକା ନାଁ ଚୂର୍ଣ୍ଣକୁନ୍ତଳ ନବ ଅଙ୍କୁର ଓ ନୀଳେନ୍ଦ୍ରମଣି ଲତା (୧୫/୭) ଏବଂ ଏହାର ଧୈର୍ଯ୍ୟ କର୍ତ୍ତନ ବିଭବ ପାଇଁ କତୁରୀ (୨ । ୧୪); କର୍ଣ୍ଣ ସହ ପାଟଳୀ ଫୁଲ (୧୫ । ୮), କପାଳର ଉପମାନ ପାଇଁ ଲୋକପାଳଙ୍କ ଅର୍ଦ୍ଧଚନ୍ଦ୍ର ଶର ଓ ଗରଳ ଭୟରେ ଶିବଙ୍କ ଶିରରୁ ପଳାଇ ଆସିଥିବା ଚନ୍ଦ୍ରକଳା (୧୫ । ୯-୧୦), ନେତ୍ରର ଉପମାନ ଭାବେ ଭ୍ରମର(୨ । ୭, ୫ । ୮), ମୃଗ (୫ । ୫), ଅଶ୍ୱ (୫/୫), କାଳିନ୍ଦୀ ଜଳରେ ଢଳ ଢଳ ହେଉଥିବା ବିକଚ ପଦ୍ମଦଳ (୫ । ୬, ୧୫ । ୨୦), ନୀଳ ଇନ୍ଦୀବର (୫ । ୭, ୬ । ୧୭), ପକାଇ ଲେଉଟାଉ ଥିବା ସାରଣୀ (୬ । ୧୨), ସୁଧା ସିନ୍ଧୁରୁ ଅବତରଣ କରିଥିବା ତରଳ ବିଫଳହସ୍ତୀ (୫ । ୬), ଖଞ୍ଜନ (୫ । ୭, ୬ । ୧୪), ଶରବନ୍ଧ ଶିଖିଥିବା କନ୍ଦର୍ପ (୫ । ୮), ଚନ୍ଦ୍ରରେ ସୁଧାପାନ କରୁଥିବା ଚକୋର (୬ । ୧୫), ଜୀବକୁ ଧ୍ୱଂସକରି ପିଞ୍ଜୁରା କଳାପେଡ଼ାରେ ପଶୁଥିବା କୃଷ୍ଣ ସର୍ପ (୬ । ୧୬), ନାସାର ଉପମାନ ଭାବେ କନ୍ଦର୍ପର ସୁବର୍ଣ୍ଣ ନଳି (୧୫ । ୧୪), ସିଁ ତହସ ଶେ ଭତ ଅଧର ସହିତ ଅରୁଣ (୨ । ୧୦), ଚିବୁକ ସହ ଐରାବତ ଫଳ (୧୫ । ୧୯), କଣ୍ଠ ସହିତ ମଙ୍ଗଳ କୁମ୍ଭର ଗ୍ରୀବା (୧୫ । ୨୧), ପୟୋଜ ସହିତ କୁମ୍ଭ (୨/୮), ଓ (୫/୯), ମାଉଲଙ୍ଗ (୫/୧୦), ଶ୍ରୀଫଳ (୫/୧୦), ପଦ୍ମ (୫/୧୦) ନାରିକେଳ (୫ । ୧୦), ମାଳି ଦ୍ୱାରା ସେବା ପାଉଥିବା ସ୍ୱର୍ଣ୍ଣ ଭୂମିର ଜାତ ହୋଇଥିବା, ଶିବଲିଙ୍ଗ (୫ । ୧୧), କୃଷ୍ଣଙ୍କ ବାଳଲୀଳା କନ୍ଦୁକ (୫ । ୧୨)' ରତି ରଞ୍ଜନ ଫରୁଆ (୫ । ୧୨), ଲାବଣ୍ୟ ପୁଷ୍କରିଣୀର ଚକ୍ରବାକ (୫ । ୧୨), ଅମୃତ କୋଷ (୫ । ୧୩), ଯୌବନ ହସ୍ତିର କୁମ୍ଭ (୫ । ୧୩) କନ୍ଦର୍ପର ଶିରସ୍ତ୍ରାଣ (୫ । ୧୩), ମଲ୍ଲ ସାଧନ ଗୃହ (୫ । ୧୩), ଓଲଟା ହୋଇଥିବା ସୁନା ଗିନା (୫ । ୧୪), ଓ ଦରସ୍ତ୍ରଣ୍ଡଙ୍କ ଭଣ୍ଡାର ଯୁଗଳ ଲଉତୁମ୍ବା (୫ । ୧୪), ଦନ୍ତ ସହିତ ପଦ୍ମରାଗ ମଣିରୁ ଜନ୍ମ ନେଉଥିବା ମୁକ୍ତା ଓ ଡାଳିମ୍ବ ବୀଜ (୨/୧୨), ମଧ୍ୟ ଦେଶ ସହିତ ସିଂହ (୨/୧୨), ଉଦର ରୋମାବଳି ସହ କନ୍ଦର୍ପର ପ୍ରେମ ପୁସ୍ତକରେ ଥିବା କଳା ବର୍ଣ୍ଣର ବର୍ଣ୍ଣମାଳା (୨ । ୯), ନାଭିସହ ଲାବଣ୍ୟ

ନାଗର ଜଳ ଭଉଁରୀ (୧୫ । ୨୧), ହସ୍ତ ସହିତ ହସ୍ତୀ ଶୁଣ୍ଡ (୧୫ । ୨୨), ନିତମ୍ବ ସ୍କନ୍ଧରେ କନ୍ଦର୍ପଙ୍କ ଉତ୍ସବ ଘଣ୍ଟ (୧୫ ।। ୩୨), ଜଘନ ପ୍ରଦେଶ ସହିତ ଉଲଟ ସୁନା କଦଳୀ ଗଛ (୫ । ୧୬), ଯୁବକଙ୍କ ହୃଦୟ ବନ୍ଦୀ ହେବା ଅର୍ଗଳ (୫ । ୧୬), ହରିତାଳ ରଙ୍ଗ ନାଗର ପୁଲିନ ଦେଶ (୫ । ୧୮), ସ୍ୱର୍ଗର ଆରୋହଣ ସୋପାନ (୫ । ୧୮); କନ୍ଦର୍ପର ସାଧନ କୁଦ (୫ । ୧୮), ବିରହ ସମୁଦ୍ରର ନୌକା (୫ । ୧୯), ଓ କୁଙ୍କୁମ ଲେପିତ ହୋଇଥିବା ସୁନ୍ଦର କୁନ୍ଦା ଯାଇଥିବା ହାତୀ ଦାନ୍ତର ସ୍ତମ୍ଭ (୫/୧୯), ପାଦର ଉପର ଅଂଶ ସହିତ କଇଁଛ (୧୫ । ୩୫) ଓ ପାଦ ନଖ ସହିତ ଉଜ୍ଜ୍ୱଳ ମଣି (୧୫ । ୩୫) ଇତ୍ୟାଦି । ଲକ୍ଷ କରିବାର କଥା ନଖଶିଖ ବର୍ଣ୍ଣନ ପାଇଁ ପ୍ରଯୁକ୍ତ ହୋଇଥିବା ପ୍ରାୟ ପ୍ରତ୍ୟେକ ଉପମାନକୁ ଉପେନ୍ଦ୍ର ପରମ୍ପରାରୁ ଗ୍ରହଣ କରିଛନ୍ତି ଓ ଏଥିରେ ତାଙ୍କ ଆତ୍ମିକ ଅନୁଭବ ଓ ଜୀବନ ବାଦୀ ଦୃଷ୍ଟିକୋଣ ନିର୍ବାସିତ । ନାୟିକାର ଔତ୍କର୍ଷ୍ୟ ପ୍ରତିପାଦନ ପାଇଁ ଉପେନ୍ଦ୍ର ବେଳେ ବେଳେ ଏହି ଉପମାନମାନଙ୍କରେ ଅତ୍ୟୁକ୍ତି କଥନ ଓ କଳ୍ପନା ପ୍ରବଣତାର ଚିହ୍ନ ପ୍ରଦାନ କରିଛନ୍ତି ।

ମଧ୍ୟ କାଳୀନ କାବ୍ୟ ପରମ୍ପରାରେ ନାୟିକାର ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି କାବ୍ୟଶାସ୍ତ୍ରୋକ୍ତ ନାୟିକାର ଅଙ୍ଗର ଉପୃନ୍ନ ଅଠେଇଶ ଗୋଟି ଅଳଙ୍କାର । ଏହା ଅଙ୍ଗଜ, ଅଯତ୍ନଜ ଏବଂ ସ୍ୱଭାବଜ ଭେଦରେ ତିନି ପ୍ରକାର । ଅଙ୍ଗଜ ଅଳଙ୍କାର ପୁଣି ହାବ, ଭାବ ଓ ହେଳା ଭେଦରେ ତ୍ରିବିଧ । ନାୟିକାର ନିର୍ବିକାର ହୃଦୟରେ ଯେତେବେଳେ କାମଭାବନାର ପ୍ରଥମ ଉନ୍ମେଷ ସୃଷ୍ଟି ହୁଏ, ତାହା ଯେତେବେଳେ 'ଭାବ' ନାମରେ ପରିଚିତ ହୁଏ । ଏହି ଅଳଙ୍କାର ମୁଖ୍ୟତଃ ଯୌବନାଗମର ସୂଚକ ହୋଇଥାଏ । ଉପେନ୍ଦ୍ର ରହିଲେଖାର ଯୌବନୋଦ୍‌ଗମର ବର୍ଣ୍ଣନା କରିବାକୁ ଯାଇ କହନ୍ତି, ରସଲେଖା ପୁଷ୍ପବତୀ ହେବାପରେ ପ୍ରସ୍ଫୁଟିତ ଫୁଲ ଉପରେ ବସିଥିବା ଭ୍ରମରକୁ ଦେଖି ଅନ୍ୟମନସ୍କା ହୋଇଯାଏ । ନିର୍ଜନ ସ୍ଥାନରେ କନ୍ଦର୍ପ ପୋଥି ପାଠ କରେ ଏବଂ ନିଜ କାନ୍ତିକୁ ଦର୍ପଣରେ ଦେଖି କେବେ କାନ୍ତ ସଙ୍ଗ ହେବ ବୋଲି ଇଚ୍ଛା କରେ (୨ । ୨୧-୨୨) । ଯେତେବେଳେ ନାୟିକା ଭ୍ରୂକଟାକ୍ଷରେ ନିଜ ସମ୍ଭୋଗ ଇଚ୍ଛା ବ୍ୟକ୍ତ କରେ ସେତେବେଳେ ତାହା 'ହାବ' ନାମରେ ପରିଚିତ ହୁଏ । ନାୟକକୁ ନ ଦେଖିଥିବା ଅବସ୍ଥାରେ ଅଶୋକ ଡାଳକୁ ଧରି ଅଳସ ଭାଙ୍ଗୁ ଭାଙ୍ଗୁ ନାୟିକାର ଅଲକ୍ଷିତରେ ନାୟକ ତାର 'କୁଚ କଳସ' ଦେଖିନିଏ (୫ । ୯, ଫୁଲ ତୋଳିଲା ବେଳେ ନାୟକର ସୌନ୍ଦର୍ଯ୍ୟକୁ ପ୍ରଥମ କରି ଦର୍ଶନକରି ମୁଗ୍ଧା ହୋଇଗଲାପରେ ଲଜ୍ଜାବଶତଃ ମୁଖ ତଳକୁ କଲେ ମଧ୍ୟ ନାୟିକା ବେଳେ ବେଳେ ବକ୍ରଗତରେ ନାୟକକୁ ଗ୍ରହିଁନିଏ ଏବଂ ତର୍ଜନୀକୁ ନେଇ ନିଜ ଚିବୁକରେ ଲଗାଏ (୫ । ୨୧) । ଏ ସମସ୍ତ ବର୍ଣ୍ଣନା 'ହାବ' ଅଙ୍ଗଜ ଅଳଙ୍କାରର ଅନ୍ତର୍ଗତ । ନାୟିକା ମନରେ କାମ ଭାବନା ଅଧିକ ବଢ଼ିଗଲେ ଏବଂ ମନରୁ ଭୟ ଓ ଲଜ୍ଜା କମିଆସିଲେ

ତାର ଯେଉଁ ସମସ୍ତ ଶାରୀରିକ ଚେଷ୍ଟା ଜାତ ହୁଏ ଯାହାକୁ କି ସାଧାରଣ ବ୍ୟକ୍ତି ମଧ୍ୟ ଅନୁଭବ କରନ୍ତି ତାକୁ 'ହେଳ' ଅଙ୍ଗଜ ଅଳଙ୍କାର କହନ୍ତି । ନାୟକର ବୃଷ୍ଟପରେ 'ପ୍ରେମତରଙ୍ଗ' କାବ୍ୟ ନାୟିକା ନାୟକ ସମ୍ମୁଖରୁ ଫେରି ଆସିବା ବେଳେ 'ପାଲଟି ପାଲଟି' ନିଜ ପ୍ରିୟକୁ ଚାହୁଁଥାଏ ଏବଂ ନାୟିକାର ସଖୀମାନେ ଏ ପ୍ରକାର ଦୃଶ୍ୟ ଦେଖି ନାୟକକୁ ତାଙ୍କ ସଖୀର 'ଠାକୁର' ବୋଲି ଗ୍ରହଣ କରି ନିଅନ୍ତି [୫ । ୩୮] ।

ଅଯତ୍ନଜ ଅଳଙ୍କାରର ଅର୍ଥ ହେଉଛି ଯୌବନୋଦୟ କାଳରେ ଶରୀର ଏବଂ ସ୍ୱଭାବର ସ୍ୱତଃ ପରିବର୍ତ୍ତନ । ଏହା ନାୟିକାର ସୌନ୍ଦର୍ଯ୍ୟକୁ ଅଧିକ ବଢାଇ ଦିଏ ମାତ୍ର ଏଥିପାଇଁ ନାୟିକାକୁ କୌଣସି ପ୍ରଯତ୍ନ କରିବାକୁ ପଡ଼େ ନାହିଁ । ଏହା ଶୋଭା, କାନ୍ତି, ଦୀପ୍ତି, ମାଧୁର୍ଯ୍ୟ, ପ୍ରଗଳଭତା, ଔଦାର୍ଯ୍ୟ ଓ ଧୈର୍ଯ୍ୟ ଭେଦରେ ସାତ ପ୍ରକାର । ନାୟିକାର ଯୌବନ ଶୁକ୍ଳପକ୍ଷର ଶଶୀକଳା ପରି ବୃଦ୍ଧି ହେବାର ବର୍ଣ୍ଣନାରେ 'ଶୋଭା' [୨ । ୩], ତାହା ଶରୀରର କମନୀୟ ରଙ୍ଗକୁ 'ପିତ ଚମ୍ପକ ମାଳା' କହିବା ଭିତରେ 'କାନ୍ତି' [୨ । ୧], ତାହାର ସୌନ୍ଦର୍ଯ୍ୟ ଅନୁପମ କହିବା ଭିତରେ 'ଦୀପ୍ତି' [୨ । ୧୮] ଆଦି ଅଯତ୍ନଜ ଅଳଙ୍କାର ପ୍ରତିଫଳିତ । ପ୍ରତ୍ୟେକ ଅବସ୍ଥାରେ ସୌନ୍ଦର୍ଯ୍ୟ ଅପୂର୍ବ ରହିବାର ନାମ 'ମାଧୁର୍ଯ୍ୟ' । କନ୍ଦର୍ପର ପତ୍ନୀ ରତି ଚିର ମାଧୁର୍ଯ୍ୟମୟୀ । ରସଲେଖାକୁ ଉପେନ୍ଦ୍ର କୋଟିଏ ରତି ଗୋଟିଏ ଦେହ ବହିଛି କହିବା ଭିତରେ ଏହି 'ମାଧୁର୍ଯ୍ୟ' ଅଯତ୍ନଜ ଅଳଙ୍କାରକୁ ହିଁ ବ୍ୟଞ୍ଜିତ କରିଛନ୍ତି [୭ । ୧୧] । ନାୟିକା ନାୟକ ନିକଟରେ ଲଜ୍ଜାହୀନା ହୋଇ ନିର୍ଭୀକ ହୋଇଗଲେ ବା କୌଣସି କାରଣରୁ ମଦିରା ପାନ କଲେ ତାର 'ପ୍ରଗଳଭତା' ଅଯତ୍ନଜ ଅଳଙ୍କାରର ଉଦୟ ହୁଏ । ଉପେନ୍ଦ୍ରଙ୍କ 'ରସଲେଖା' ନରସିଂହ ସେଣଙ୍କ 'ଗୋପ' କାବ୍ୟର ଗୋପୀମାନଙ୍କ ଭଳି କେଉଁଠି ମଦିରା ପାନ କରିନାହିଁ, ବା କୌଣସି ସ୍ଥାନରେ ନିଜର ସାମାଜିକ ଲଜ୍ଜା ଅତିକ୍ରମ କରି ପ୍ରଗଳଭ ହୋଇନାହିଁ । ବିବାହ ପରେ ମଧ୍ୟ ସେ ପ୍ରଥମ ମିଳନ ଯାମିନୀର ଚଳନ୍ତି ପଥରେ ମଧ୍ୟ ନାୟକକୁ ଦେଖିବାକୁ ଇଚ୍ଛା କରି ଲଜ୍ଜା ହେତୁ ଚାହିଁପାରିନି [୧୪ । ୪୦] । କେତେଦିନର ସାନ୍ନିଧ୍ୟ ମିଳନ ପରେ ବି ସେ କେବଳ ମାତ୍ର ବିପରୀତ ରତି ଦେବବୋଲି ସ୍ୱୀକାର କରିଛି [୧୭ । ୨୪] । ସବୁ ଅବସ୍ଥାରେ ବିନମ୍ରତା ଓ ପ୍ରେମାନୁକୂଳତାର ନାମ ହେଉଛି 'ଔଦାର୍ଯ୍ୟ' ରସଲେଖା ନିକଟରେ ଏହି ଅଯତ୍ନଜ ଅଳଙ୍କାର ସବୁବେଳେ ବିଦ୍ୟମାନ । ନାୟକ ପ୍ରତି ଅତ୍ୟନ୍ତ ଅନୁରାଗିଣୀ ଏହି ରସଲେଖା ମିଳନ ଶେଷରେ ନାୟକ ପାନ ପାଇଁ ବାଅଁଶାରେ ବିଛି ହେବାବେଳେ ହାତକୁ କଷ୍ଟ ହେବ କହି ବାରଣ କରି ଝରକା ଫିଟାଇ ଦେଇଛି [୧୮ । ୧୯] । 'ଧୈର୍ଯ୍ୟ' ଅଯତ୍ନଜ ଅଳଙ୍କାରରେ ନାୟିକା ରସଲେଖା ନାୟକଠାରୁ ଦୂରେଇ ରହି ନାୟକର ବହୁ

ପତ୍ନୀ ଗ୍ରହଣ ଆଶଙ୍କାକୁ ମଧ୍ୟ ଧୈର୍ଯ୍ୟର ସହ କୁମୁଦ ଏବଂ ତାଙ୍କ ସ୍ୱାମୀ ଚନ୍ଦ୍ରର ଉଦାହରଣ ମାଧ୍ୟମରେ ଗ୍ରହଣ କରି ନିଏ [୨୦ । ୧୨] ।

ସ୍ୱଭାବଜ ଅଳଙ୍କାର ସଂଯୋଗ ଅବସ୍ଥାରେ ନାୟିକାର ଆନ୍ତରିକ ଭାବନାକୁ ବ୍ୟକ୍ତ କରିଥାଏ । ଅଯତ୍ନଜ ଅଳଙ୍କାର ଯତ୍ନସାଧ୍ୟ ହୋଇନଥିଲାବେଳେ ଏହି ସ୍ୱଭାବଜ ଅଳଙ୍କାର କିନ୍ତୁ ଅଭ୍ୟାସ ବା ଯତ୍ନ ଦ୍ୱାରା ଅଭିବ୍ୟକ୍ତ ହୋଇଥାଏ । ତେଣୁ ଏହାର ଅନ୍ୟନାମ ହେଉଛି ଯତ୍ନଜ ଅଳଙ୍କାର । ଆଚାର୍ଯ୍ୟ ଭରତ ଏହାର ସଂଖ୍ୟା ଦଶ ବୋଲି ନିର୍ଦ୍ଦେଶ କରିଛନ୍ତି । ସେମାନେ ହେଲେ– ଲୀଳା, ବିଳାସ, ବିଚ୍ଛିତ୍ତି, ବିଭ୍ରମ, କିଳ-କିଞ୍ଚିତ, ମୋଟ୍ଟାୟିତ, କୁଟ୍ଟମିତ, ବିବ୍ବୋକ, ଲଳିତ ଏବଂ ବିହୃତ । ପ୍ରସିଦ୍ଧ ଗ୍ରନ୍ଥ 'ସାହିତ୍ୟ ଦର୍ପଣ'ର ସ୍ରଷ୍ଟା ଆଚାର୍ଯ୍ୟ ବିଶ୍ୱନାଥ କବିରାଜ ଏହି ଅଳଙ୍କାରର ସଂଖ୍ୟାକୁ କିନ୍ତୁ ଅଠର ବୋଲି ଗ୍ରହଣ କରିଛନ୍ତି । ସେମାନେ ହେଲେ– ଲୀଳା, ବିଳାସ, ବିଚ୍ଛିତ୍ତି, ବିବ୍ବୋକ, କିଳକିଞ୍ଚିତ, ମୋଟ୍ଟାୟିତ, କୁଟ୍ଟମିତ, ବିଭ୍ରମ, ଲଳିତ, ମଦ, ବିହୃତ, ତପନ, ମୌଗ୍ଧ୍ୟ, ବିକ୍ଷେପ, କୁତୂହଳ, ହସିତ, ଚକିତ ତଥା କେଳି ଲୀଳାର ଅର୍ଥ ନାୟିକାର ପ୍ରେମୋଦ୍ରେକ କାରଣରୁ ନାୟକର ଅଙ୍ଗ, ବେଶ, ଆଭୂଷଣ ଓ ବାଣୀକୁ ଅନୁକରଣ କରିବା 'ରସଲେଖା'ରେ ଏହି ସ୍ୱଭାବଜ ଅଳଙ୍କାରର ପ୍ରୟୋଗ ମିଳେ ନାହିଁ । ନାୟିକାର ଯେଉଁ ବାରଣ ନାୟକକୁ ଉତ୍ତେଜିତ କରେ ଏବଂ ପୁନର୍ବାର ନାୟିକା ସେ ବାରଣକୁ ନମାନି ସେହି କର୍ମକଲେ ତାହାହିଁ ବିଳାସ । ନାୟକ ବିଶ୍ୱଭୂତି ରସଲେଖାକୁ 'ଚୁମ୍ବନ' ଟିଏ ମାଗେ ପ୍ରଥମେ ନାହିଁ କରେ, ରସଲେଖା ଏବଂ ଜାଣିନାହିଁ ବୋଲି ନିଜ ଅଜ୍ଞତା ପ୍ରକାଶ କରେ । ମାତ୍ର ପରେ ନାୟକର ଏ କଥାକୁ ସେ ନାହିଁ କରିପାରେ ନାହିଁ [୧୧ । ୮] । ଏହା ବ୍ୟତୀତ ରସଲେଖାରେ ଉପେନ୍ଦ୍ର କୁଟ୍ଟମିତ [୧୪ । ୩] ତଥା କେଳି [୧୮ । ୧୪] ଆଦି ସ୍ୱଭାବଜ ଅଳଙ୍କାରର ପ୍ରୟୋଗ ମଧ୍ୟ କରିଛନ୍ତି ।

ଉପେନ୍ଦ୍ରଙ୍କ କାବ୍ୟ ନାୟିକା ରସଲେଖା ମୁଖ୍ୟତଃ ଏକ ସ୍ୱକୀୟା ନାୟିକା । ଏକ ଜନ୍ମ ଜନ୍ମାନ୍ତରର ସମ୍ପର୍କ ପରି ସେ ପ୍ରଥମ କରି ପୁଷ୍ପଚୟନ ବେଳେ ନାୟକ ବିଶ୍ୱଭୂତିକୁ ଦେଖିଦେଲା ମାତ୍ରେ ତା ଠାରେ ତାର ନେତ୍ର 'ଲୌହେ ଚୁମ୍ବକ ପରିଷ୍ଟେ' ଜଡ଼ିଯାଏ [୫ । ୨୮] । ଏହି ଅନୁରାଗ ମଞ୍ଜିଷ୍ଠା ଭଳି କ୍ରମେ ଗମ୍ଭୀର ଓ ଦୀର୍ଘସ୍ଥାୟୀ ହୋଇଯାଏ । ବିଚ୍ଛେଦର ଦାବଦହନ ଭିତରେ ତାହା ଅଧିକ ମନୋଜ୍ଞ ଏବଂ ସୁଦୃଢ ହୋଇ କାବ୍ୟର ଶେଷ ପର୍ଯ୍ୟନ୍ତ ଅବ୍ୟାହତରହେ । ନାୟକର ପ୍ରଥମ ପତ୍ର ପ୍ରାପ୍ତିପରେ ନାୟିକାର ଉପଜାତ ହୋଇଥିବା ମନୋଦଶା [୭ । ୪୨–୪୫] ବିବାହର ମିଳନ ଯାମିନୀରେ ଯଦିଓ ଆଂଶିକ ପ୍ରଶମିତ ହୋଇଯାଏ ପୁନର୍ବାର

ବିଚ୍ଛେଦ ମଧ୍ୟରେ ତାହା ଗୁରୁତର ଆକାର ଧାରଣ କରେ । ମାତ୍ର ନାୟକ ପ୍ରତି ତାର ପ୍ରେମ ସାନ୍ଦ୍ରତା ଅନ୍ତିମ ମିଳନରେ ପ୍ରଥମ ଦର୍ଶନ ପରି ସନ୍ତର୍ପଣ ଛଡ଼ାଛଡ଼ି ହେବାର ସୁଯୋଗ ନଦେଇ ଲୌହରେ ଚୁମ୍ବକ ଜଡ଼ି ରହିଲା ପରି ତାକୁ ନାୟକ ସହିତ ଜଡ଼ାଇ ରଖେ [୨୨ । ୧୪] , ଏ ସମୟରେ କୌଣସି ଆଉ ଅବସର ନଥାଏ କି ଗୃହ କହିବାର ଆବଶ୍ୟକତା ମଧ୍ୟ ନଥାଏ । ଅମୃତ ଭୋଜନ ନିମିତ୍ତି ଶୃଙ୍ଗାରବନ୍ତ ହେବାର ଆବଶ୍ୟକତା ନରହିଲା ପରି ଦୁର୍ନିବାର ଯୌନ କ୍ଷୁଧା ଦୁହିଙ୍କ ଭିତରୁ ଔପଚାରିକତାର ବାଲିବନ୍ଧ ଦୂରେଇ ଦିଏ [୨୨ । ୧୫] । ଏହି କବ୍ୟନାୟିକା ପୁଣି ଅଠର ଓ ଉଣେଇଶ ଛାନ୍ଦରେ ନାୟକ ସହ ନିଜର ବାକ୍‌ବୈଦଗ୍ଧ୍ୟର ପରିଚୟ ଦିଏ । 'ଗୁପ୍ତ' [୧୮ । ୧୪], 'ଭାବ' [୧୮ । ୯], 'ରସଭାବ' [୧୮/୧୨] ଓ 'ବେନାବୋନି' [୧୮ । ୧୮] ରେ ସେ ଅନନ୍ୟା ନିଜର ଉନ୍ନତ କଳ୍ପନା ଶକ୍ତି ସୂକ୍ଷ୍ମ ନାରୀ ଚରିତ୍ର ଅଧ୍ୟୟନ ଏବଂ ଗୂଢ଼ାର୍ଥ ବ୍ୟଞ୍ଜକ ଶବ୍ଦ ପ୍ରୟୋଗ ମାଧ୍ୟମରେ ଉପେନ୍ଦ୍ର ତାଙ୍କ କାବ୍ୟ ନାୟିକାକୁ ଏକ ଚମତ୍କାର କଳାତ୍ମକ ସୃଷ୍ଟି ଶିଳ୍ପରେ ରୂପାନ୍ତରିତ କରିଛନ୍ତି ।

## ॥ ଚୃଉ ॥

ପ୍ରେମବ୍ୟଞ୍ଜନା ରୀତି କାଳୀନ କାଳ୍ପନିକ ଓଡ଼ିଆ କାବ୍ୟମାନଙ୍କର ଏକ ମୁଖ୍ୟ ବିଭବ । ପ୍ରେମ ମନୁଷ୍ୟର ସର୍ବୋତ୍ତମ ଆନନ୍ଦ ପ୍ରଦାନକାରୀ ମାନସିକ ପ୍ରକ୍ରିୟା । ମାନବର ଏକ ଦୁର୍ଲଂଘ୍ୟ ପ୍ରବୃତ୍ତି କାମବାସନାର ସଂଯତ ହୃଦୟଗ୍ରାହ୍ୟ ସାମାଜିକ ପରିପ୍ରକାଶ ହେଉଛି ପ୍ରେମ । ଏହି ପ୍ରେମର ମୂଳ ଉପାଦାନ ହେଉଛି ନରନାରୀଙ୍କ ସ୍ୱାଭାବିକ କାମ ବାସନା ଯାହାର ଅପର ନାମ 'ରତି' । ଲୌକିକ ସ୍ତରରେ ପ୍ରାଧାନ୍ୟ ଲାଭ କରିଥିବା ପ୍ରେମ ଭକ୍ତିର ସ୍ୱର୍ଗରେ ଅଲୌକିକ ଉପାଦାନରେ ଭୂଷିତ ହୋଇଯାଏ । ଏଥିପାଇଁ ସହଜିୟା ବୌଦ୍ଧ ଧର୍ମଠାରୁ ଆରମ୍ଭକରି ସହଜିୟା ବୈଷ୍ଣବଧର୍ମ ପର୍ଯ୍ୟନ୍ତ ସମସ୍ତେ ଏହି କାମ ତତ୍ତ୍ୱ ମଧ୍ୟରେ ଏକ ଆଧ୍ୟାତ୍ମିକ ଇନ୍ଦ୍ରିୟା-ତୀତ ଅନୁଭବକୁ ହିଁ ପ୍ରାଧାନ୍ୟ ଦେଇଥିଲେ । ମାତ୍ର ରୀତି କାଳରେ ଏହି ପ୍ରେମ ଚେତନାରୁ ଧୀରେ ଧୀରେ ଆଧ୍ୟାତ୍ମିକତା ଅନ୍ତର୍ହିତ ହୋଇ ତତ୍କାଳୀନ ଭୋଗ ବିଳାସ ପୂର୍ଣ୍ଣ ଜୀବନ ଧାରା ଅଧିକ ପ୍ରୋଜ୍ଜ୍ୱଳ ହୋଇ ଉଠିଲା । ପ୍ରେମ କେବଳ କାମ କେଳି ଓ ଦେହ ବିଳାସ ମଧ୍ୟରେ ସୀମିତ ହୋଇଗଲା । ତେଣୁ ଏହାର ମୁଖ୍ୟ ଆଲମ୍ବନ ବିଭାବ ନାରୀ ପ୍ରତି ଚରମ ଲାଳସା ଏହି ସମୟର ସାହିତ୍ୟ ମାନଙ୍କରେ ମୁଖ୍ୟଭାବେ ପ୍ରତିଫଳିତ ହେବାକୁ ଲାଗିଲା । ତେଣୁ ଏଥିରେ ପ୍ରେମର ଏକ ନିଷ୍ଠତା ପରିବର୍ତ୍ତେ କାମ ବିଳାସ ଜନ୍ୟ ରସିକତା ମୁଖ୍ୟ ସ୍ଥାନ ଗ୍ରହଣ କଲା । ଏ ସମୟରେ

ରଚିତ ହୋଇଥିବା ମୁକ୍ତକ କବିତା ମାନଙ୍କରେ ପ୍ରେମର ଏହି ଦେହ ବିଳାସ ବହୁ-ନାୟି ସମ୍ଭୋଗ ଭିତରେ ପରିକ୍ଷାସ୍ତ । ତତ୍କାଳୀନ ପ୍ରଚୁର କାଳବେଳେ ପ୍ରବନ୍ଧ କାବ୍ୟ ମାନଙ୍କରେ ପ୍ରେମର ସ୍ୱକୀୟତା ତତ୍ତ୍ୱପ୍ରତିଷ୍ଠାକୁ ଅଧିକ ଧ୍ୟାନ ଦିଆଯାଇଥିଲା । ଓଡ଼ିଆ ପ୍ରେମାଖ୍ୟାନ ମୂଳକ କାବ୍ୟ ମାନଙ୍କରେ ବିଶେଷକରି ଉପେନ୍ଦ୍ରଙ୍କ କଳ୍ପନାକ କାବ୍ୟ-ମାନଙ୍କରେ ଏହି ସ୍ୱକୀୟତା ସମର୍ଥିତ ପ୍ରେମ ପରମ୍ପରା ସ୍ପଷ୍ଟ ହୋଇଯାଏ । ଉପେନ୍ଦ୍ରଙ୍କ ଏହି କାବ୍ୟମାନଙ୍କରେ ପ୍ରେମର ଶାରୀରିକ ପକ୍ଷ ଯଥା ଚୁମ୍ବନ, ଆଲିଙ୍ଗନ ଏବଂ ରତିର ଅନାବୃତ ବର୍ଣ୍ଣନା ଆଦି ସହଜରେ ଅନୁଭବ କରାଯାଇ ପାରେ ।

ଉପେନ୍ଦ୍ରଙ୍କ 'ରସଲେଖା'ରେ ପ୍ରେମର ଏହି ଦେହଜ ଆବେଦନ ପ୍ରୋଜ୍ଜ୍ୱଳ । ଅବଶ୍ୟ କାବ୍ୟର ନାୟକ ନାୟିକା ଉଭୟ ପ୍ରୀତିର ଏକ ନିଷ୍ଠତା ଓ ତ୍ୟାଗପୂତ ସମର୍ପିତ ଅବସ୍ଥାରେ ବିଶ୍ୱାସୀ, କାବ୍ୟ ନାୟକ ପ୍ରୀତିଠାରୁ ଅଧିକ ସ୍ୱାଦପୂର୍ଣ୍ଣ ଉପାଦାନ ଅନ୍ୟ କିଛି ନାହିଁ ବୋଲି କୁହେ ଏବଂ ପ୍ରୀତି ଅଗ୍ନିରେ ପତଙ୍ଗ ପରି ଝାସ ଦେବାକୁ ସେ କୁଣ୍ଠିତ ହୁଏ ନାହିଁ [୧ । ୧୫] । ସମଗ୍ର ବିଶ୍ୱରେ ଏହି ପ୍ରୀତିର ସମକକ୍ଷ କେହି ନାହାନ୍ତି ବୋଲି ସେ ବିଶ୍ୱାସ କରେ [୧୦ । ୩୭] । ଏହା ପୁଣି ସଂସାରର ସର୍ବଶ୍ରେଷ୍ଠ କୀର୍ତ୍ତି [୧୪ । ୨୨] । ପ୍ରୀତି ବତ୍ସଳା ନାୟିକା ପରମ ଭାଗ୍ୟରେ ମିଳିଥାଏ [୧୭ । ୧୨] । ଏହି ପ୍ରୀତି ପାଇଁ ପକ୍ଷୀ ଜୀବନ ଦେଇଦିଏ, ଶିଳାଦ୍ରବୀଭୂତ ହୋଇଯାଏ । ତେଣୁ ଜୀବନର ଏହି 'ପରମଧନ' ପ୍ରୀତିକୁ ନାୟକ ଅସ୍ୱୀକାର କରିପାରେ ନାହିଁ [୧୯ । ୧୦] । ନାୟିକାକୁ ପ୍ରଥମ ଦର୍ଶନ କରିବା ବେଳରୁ ନାୟକ ମନରେ ଏହି ପ୍ରୀତି ପ୍ରସଙ୍ଗ ଜାଗ୍ରତ ହୋଇଯାଏ [୪ । ୨୯-୩୦] କ୍ରମେ ଏହି ପ୍ରୀତି ଲାଳସା ତାକୁ ବିହ୍ୱଳିତ କରେ [୭ । ୨୨-୩୦] । ସ୍ୱପ୍ନରେ ନାୟିକା ପୁଣି ପାରିବାଭଳି ଉଚ୍ଚ କଣ୍ଠରେ ନାୟିକା ପ୍ରଶଂସା ପରକ ସଙ୍ଗୀତ ଗାନ କରେ [୯ । ୧-୨୫] । ନାୟିକାର ପତ୍ରପାଇ ତା ମନର ପ୍ରୀତି ଭାବନା ଅଧିକ ଉଗ୍ର ହୋଇଯାଏ । ମିଳନରେ ଏହି ପ୍ରୀତି ପୂର୍ଣ୍ଣ ପ୍ରକାଶିତ ହୋଇଯାଏ । ମାତ୍ର ପରବର୍ତ୍ତୀ ବିଚ୍ଛେଦର ଅଗ୍ନି ଦହନ ଭିତରେ ଏହା ଶୁଦ୍ଧ ସୁବର୍ଣ୍ଣ ଭଳି ପ୍ରତିଭାତ ହୁଏ ଏବଂ ଶେଷରେ ମିଳନ ମାଧୁର୍ଯ୍ୟରେ ଏହି ପ୍ରୀତି ସର୍ବାଙ୍ଗ ସୁନ୍ଦର ହୋଇଯାଏ ।

ଏହି ପ୍ରେମ ବା ପ୍ରୀତିର ସର୍ବମାନ୍ୟ ଦେହଜ ଆବେଦନ ହେଉଛି ଶୃଙ୍ଗାର । ଏହା ପୁଣି ସଂଯୋଗ ଏବଂ ବିଯୋଗ ବା ବିପ୍ରଲମ୍ଭ ଭେଦରେ ଦ୍ୱିବିଧ । ଏହି ଶୃଙ୍ଗାର ଭାବନା ରୀତି କାବ୍ୟର ଏକ ପ୍ରଧାନ ପ୍ରବୃତ୍ତି । ସଂଯୋଗ ବା ସମ୍ଭୋଗ ଶୃଙ୍ଗାରରେ ନାୟକ ନାୟିକା ଏକତ୍ର ରହି ମିଳନର ଆନନ୍ଦ ଉପଲବ୍ଧି କରନ୍ତି । ଏଥିରେ ନାୟକ ନାୟିକା ଏକ ଆବଦ୍ଧ ତଥା ଲଘୁତମ ଜଗତରେ ବାସ କରନ୍ତି ।

ମାନ ବିପ୍ରଲମ୍ଭ ଶୃଙ୍ଗାର ଏହି ସମ୍ଭୋଗ ଶୃଙ୍ଗାରକୁ ପରିପୁଷ୍ଟ କରେ । ଶୃଙ୍ଗାର ରସର ସ୍ଥାୟୀଭାବ ହେଉଛି 'ରତି' (୮) । ଏହି ସମ୍ଭୋଗ ଶୃଙ୍ଗାରର ପ୍ରାଥମିକ ଅବସ୍ଥା ହେଉଛି 'ପୂର୍ବରାଗ' । ମିଳନ ପୂର୍ବରୁ ଶ୍ରବଣ ଓ ଦର୍ଶନରେ ଯେତେବେଳେ ନାୟକ ନାୟିକା ପରସ୍ପର ପ୍ରତି ପ୍ରେମୋନ୍ମୁଖ ହୋଇ ବିଶେଷ ଦଶା ପ୍ରାପ୍ତ ହୁଅନ୍ତି ସେ ଅବସ୍ଥାକୁ 'ପୂର୍ବରାଗ' କୁହାଯାଏ । ଏହି ପୂର୍ବରାଗର ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣକଥନ, ଉଦ୍‌ବେଗ, ପ୍ରଳାପ, ଉନ୍ମାଦ, ବ୍ୟାଧି, ଜଡ଼ତା ଓ ମରଣ ଏହି ଦଶଟି ଅବସ୍ଥା ଥାଏ । ରସଲେଖାରେ ନାୟକ ନାୟିକାଙ୍କ ପରସ୍ପରର ଦର୍ଶନରେ ପୂର୍ବରାଗ ଆରମ୍ଭ ହୋଇଛି (୫ । ୧୭-୧୮) । ଏହାପରେ ଉଭୟଙ୍କ ମଧ୍ୟରେ ଉଭୟଙ୍କୁ ପାଇବାର 'ଅଭିଳାଷ' ଜାଗ୍ରତ ହୋଇଛି । ଏହା କାଳକ୍ରମେ ଚିନ୍ତା ଓ ଉଦ୍‌ବେଗକୁ ସ୍ୱାଗତ କରିଛି ଏବଂ ଚତୁର୍ଥ ସଖୀ ମାଧ୍ୟମରେ ନାୟକ ନାୟିକା ପତ୍ରଲେଖି ଅଥବା ଗୀତ ଗାଇ ନିଜ ଭାବ ବିନିମୟ କରିଛନ୍ତି । ମିଳନର ଅନ୍ୟତମ ସହାୟକ 'ଚିଠାଉ' 'ରସଲେଖା'ରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଛି । କାବ୍ୟରେ ନାୟକର ଦୁଇଟି ଓ ନାୟିକାର ଦୁଇଟି ମୋଟ ଚାରୋଟି ପତ୍ର ସ୍ଥାନିତ ହୋଇଛି । ଏହି ପତ୍ର ଚିଠାଉ (୧୦ । ୨୦), ଲେଖ (୭ । ୯, ୧୦ । ୬), ପତ୍ରିକା (୨୦ । ୧୮, ୨୧ । ୧୮), ପ୍ରେମପତ୍ରର (୨୧ । ୧୦, ୨୨ । ୧), ପ୍ରିୟ ଉଦନ୍ତ (୨୧ । ୨୦), ପ୍ରୀତି ଉଦନ୍ତ (୭ । ୩୮), ଜଣାଣ (୭ । ୩୧), ରସ ଭାରତୀ (୭ । ୩୩) ଓ ଶ୍ରୀହସ୍ତ ମନ୍ତକ (୨୧ । ୧୭) ଆଦି ନାମରେ ନାମିତ । ପ୍ରାପ୍ତିସ୍ୱୀକାର କରି ଲେଖା ଯାଇଥିବା ପତ୍ରକୁ ଉପେନ୍ଦ୍ର 'ସ୍ୱୀକାର ପତ୍ର' (୯ । ୨୮) ବୋଲି କହିଛନ୍ତି । ଏହି ପତ୍ର ଅବକାଶ ଜଗି ପକାଇ ଦିଆଯାଏ (୭/୩୧) । କେତେବେଳେ ବା ନାୟକ ପତ୍ର ଲେଖିଯାଇ 'ସୀମନ୍ତାନ'ରେ ରଖି ଶୋଇ ପଡ଼ିବା ବେଳେ ନାୟିକାର ସଖୀ ଖଡ଼ିରେ ମାଟିରେ ନାୟକକୁ ଅବଗତ କରାଇବାପାଇଁ ଲେଖିଦେଇ ପତ୍ର ନେଇଯାଏ । କେତେବେଳେ ବା ଏହି ପତ୍ରକୁ ନାୟିକାର ସଖୀମାନେ ପଦ୍ମ ଭିତରେ ପୂରାଇ ବଢ଼ାଇ ଦିଅନ୍ତି (୧୦/୭-୧୮) । କେତେବେଳେ ବା ଏହି ପତ୍ରକୁ କଣ୍ଠ ସମସ୍ତ ମଧ୍ୟରେ ସନ୍ୟାସୀ ବା ଅନ୍ୟ କେହି ପତ୍ରବାହକ ଗ୍ରାହକ ପାଖରେ ପହଞ୍ଚାଇ ସ୍ୱୀକାର ପତ୍ର ଆଣନ୍ତି (୨୦/୧୯) । ବେଳେ ବେଳେ ସଖା ମାନଙ୍କହାତରେ ଏହି ପତ୍ର ଦିଆଯାଏ (୨୧/୧୦) । ଏହି ପତ୍ର ବେଳେ ବେଳେ କେତକୀ ଦଳ ଓ କଣ୍ଠା ସାହାଯ୍ୟରେ ଲେଖାଯାଏ (୭/୩୨) । ଏହି ପତ୍ରର ଅକ୍ଷର ପଂକ୍ତି ମୁକ୍ତାକୁ ନିନ୍ଦା କରୁଥାଏ ଓ ଅଳତା ରଙ୍ଗରେ ନିଜ ସୌନ୍ଦର୍ଯ୍ୟକୁ ବହୁଗୁଣିତ କରୁଥାଏ (୧୦/୨୦ -୨୧) । ଗ୍ରାହକ ଏହାର 'ବର୍ତ୍ତି'କୁ ଗୃହିଦେଇ କିଛି ସମୟ ଆତ୍ମବିସ୍ମୃତ ହୋଇ

---

୮ 'ଅବିରୁଦ୍ଧା ବିରୁଦ୍ଧାବା ଯଂ ତିରୋଧାତୁମକ୍ଷମାଃ
ଆସ୍ୱାଦାଙ୍କୁର କନ୍ଦୋଽସୌ ଭାବଃ ସ୍ଥାୟୀତି: ସମତଃ' । ସା: ଦ: ୩।୧୭୪.

ସ୍ଥିର ହୋଇଯାଏ (୨୨ । ୧) । ପତ୍ର ଲେଖାସରିବା ପରେ 'ମୁଦ' ଦିଆଯାଏ (୧୦ । ୧୯, ୨୦ । ୧୮) ଏବଂ ଏହାକୁ ଜନ ଅଗମ୍ୟ ସ୍ଥାନରେ ପଠାଯାଏ (୧୦ । ୧୯) ।

ନାୟିକା ନିକଟକୁ ଆସିଥିବା ଚିଠାଉ ବା ପ୍ରେମ ପତ୍ରର ପ୍ରସଙ୍ଗ ଭିତରେ ନାୟିକାର ଗୁଣାନୁସାରେ ସ୍ତୁତି (୭ । ୧୨-୧୪, ୨୨ । ୨), ତାର ରୂପାନୁସାରେ ସ୍ତୁତି (୭ । ୧୦-୧୮) ଓ ନାୟିକାକୁ ପ୍ରେମ ନିବେଦନ ଓ ନାୟିକା ଅପେକ୍ଷା ନିଜ ନିକୃଷ୍ଟତା ପ୍ରତିପାଦନର ଚିତ୍ର (୭ । ୧୯-୪୧, ୨୨ । ୩-୭) ମୁଖ୍ୟ ସ୍ଥାନ ଗ୍ରହଣ କରିଥାଏ । ଏହାର ଭାଷା ଅମୃତ ସମାନ ସୁସ୍ୱାଦନୀୟ ହୋଇଥାଏ (୨୨ ।୧) ଶେଷରେ ନିକୃଷ୍ଟମାନର ଚିଠାଉ ଲେଖନ ପାଇଁ କ୍ଷମା ପ୍ରାର୍ଥନା କରାଯାଇଥାଏ (୭ । ୪୦) । ନାୟକ ନିକଟକୁ ଆସିଥିବା ପତ୍ରରେ ନାୟିକା ପ୍ରଥମେ ନାୟକକୁ 'କୋଟିଏ ଓଲଗି' ଜଣାଇଥାଏ (୨୦ । ୧୦) । ନାୟକ ତାକୁ ଛାଡ଼ି ଚାଲି ଯାଇଥିବାରୁ ସେ ଶିବ–ଉମା–ଗଙ୍ଗା ଏବଂ ଚନ୍ଦ୍ର-କୁମୁଦ-ତାରା–ରୋହିଣୀଙ୍କ ଉଦାହରଣ ଦିଏ (୨୦ । ୧୧–୧୨) । ବେଳେବେଳେ ତାର ବିରହ ଦଶା ପାଇଁ ସେ ପ୍ରିୟକୁ ଦୋଷ ଦିଏ (୨୦ । ୧୩-୧୪) ଓ ଅନ୍ୟ କେତେବେଳେ ନିଜ ପ୍ରତି ଦୋଷା ରୋପ କରିଥାଏ (୨୦ । ୧୫) । ବେଳେ ବେଳେ ସେ ନାୟକ ନିକଟକୁ ଶବ୍ଦ ପାଣ୍ଡିତ୍ୟ ପ୍ରଖ୍ୟାପକ ଅନୁଲୋମ ପରକ ସ୍ତୁତିପତ୍ର ଲେଖିଥାଏ (୧୦ ।୨୨-୨୯) । ନାୟକର ପତ୍ରପଢି ନାୟିକା ବେପଥୁମତୀ ହୋଇଯାଏ ଏବଂ ତାର ଶରୀର କନ୍ଦର୍ପ କାତରରେ ଥର ଥର ହୋଇଯାଏ (୭ । ୪୨), କନ୍ଦର୍ପର ଫୁଲ ଶରରେ ଶରୀର ତାର ଶିହରିଉଠେ (୭ । ୪୩) ଏବଂ ସେ ଏଥିରୁ ରକ୍ଷା ପାଇବା ପାଇଁ ଶିବଙ୍କୁ ଡାକେ (୭ । ୪୪) ଓ ସଖୀମାନଙ୍କୁ ଏହି ଦୁଃଖରୁ ରକ୍ଷା କରିବା ପାଇଁ ମିନତି କରେ (୭ । ୪୫) । ନାୟିକାର ପତ୍ରପଢି ନାୟକ ନାୟିକାର ଗୁଣକୁ ପ୍ରଶଂସା କରେ [୧୦।୩୨-୩୩] ଏବଂ ନିଜ ଗଳାର ମାଳରେ ନାୟିକାର ପତ୍ରକୁ ପଦକପରି କରି ରଖେ (୧୦ । ୩୪) ।

ଶୃଙ୍ଗାରର ଚରମ ଅବସ୍ଥା ହେଉଛି ଯୁଗଳ କେଳି । ରୀତିକାଳୀନ କବି ମାନେ ଏହି ରତିକେଳି ବା ଯୁଗଳଲୀଳାର ବର୍ଣ୍ଣନା ବିସ୍ତୃତ ଭାବରେ କରିଛନ୍ତି । କେତେବେଳେ ଏହା ପ୍ରତୀକର ଆବରଣରେ ଆତ୍ମପ୍ରକାଶ କରିଛି ତ ଆଉ କେତେ ବେଳେ ଏହା ନିଜର ଅନାବୃତ୍ତ ରୂପ ବାନ୍ଧିନେଇ ପାଠକକୁ ବିଚଳିତ କରିଦେଇଛି । ଏହି ବର୍ଣ୍ଣନାରେ କାମସୂତ୍ରର ପ୍ରୟୋଗ ଦେଖିବାକୁ ମିଳେ । 'ରସଲେଖା'ରେ ଉପେନ୍ଦ୍ର ସଖୀମାନଙ୍କ ଦ୍ୱାରା ନାୟିକା ରସଲେଖାକୁ କେଳିକକ୍ଷର ଦେହଳି ଅତିକ୍ରମ କରାଇ ଦୀର୍ଘ ଅଠତିରିଶଟି ପଦରେ ଏହି ଯୁଗଳ କେଳିର ବର୍ଣ୍ଣନା କରି-ଛନ୍ତି । ନାୟିକାର ପ୍ରଥମ ସମାଗମ ଜନିତ ଲଜ୍ଜା (୧୪ । ୧୮), ନାୟକ ନିକଟରେ

ତାର ଅବସ୍ଥାର ଉପମାନ ଭାବରେ ସିଂହ ଏବଂ ହରିଣୀ ପ୍ରସଙ୍ଗ [୧୪ । ୧୮] ପରେ ଉପେନ୍ଦ୍ର କ୍ରମାନ୍ୱୟରେ ଶୃଙ୍ଗାର କେଳିର ବର୍ଣ୍ଣନା କରିଯାଇଛନ୍ତି । ସେମାନେ ହେଲେ ନାୟକର ନାୟିକାକୁ ଦୃଷ୍ଟି (୧୪ । ୧୯–୨୨), ଚୁମ୍ବନ ମାଧ୍ୟମରେ ଚତୁର୍ବର୍ଗ ସୁଖ ଗ୍ରହଣ (୧୪ । ୨୪–୨୬), ବକ୍ଷୋଜ ମର୍ଦ୍ଦନ, କରଜ ଚାଳନା ଓ ନାୟିକାର ରୋମାଞ୍ଚ (୧୪ । ୨୭-୨୮), ଦନ୍ତକ୍ଷତ (୧୪ । ୨୯), ଉରେ ଉର ଯୋଡ଼ି ଆଲିଙ୍ଗନ (୧୪ । ୩୦), ଯାନୁ ତଥା କକ୍ଷମୂଳେ କରୋରୁହ ଚାଳନ (୧୪ । ୩୧), ନାଭିମଣ୍ଡଳରେ କନିଷ୍ଠ ଅଙ୍ଗୁଳି ବୁଲାଇ ହାସ୍ୟୋଳି (୧୪/୩୨), କୁଚାଗ୍ରି ତଥା କର୍ଣ୍ଣରେ ରସନା ଚାଳନ (୧୪/୩୩), ଉଠି ପକ୍ଷ ବୁଝି ଚନ୍ଦ୍ର ଚାଳନ (୧୪/୩୪), ନୀବି ମୋକ୍ଷଣ ଓ ମଦନ ସଦନ ଦର୍ଶନ (୧୪/୩୬–୩୭) । ଏହି ମୁକ୍ତ ସମ୍ଭୋଗ କ୍ରୀଡ଼ାରେ ନାୟକ କେତେବେଳେ ନାୟିକାର ଯାନୁ, ସ୍କନ୍ଧ ଓ ଭୁଜରେ ପାଦ ରଖିଦିଏ (୧୪ । ୪୦), କେତେବେଳେ ବା ନାୟିକା ପରିଜିତା ହୋଇ ନାୟକକୁ ବ୍ୟଞ୍ଜନା ଛଳରେ 'ମଲ୍ଲୀ' ଫୁଲଟିଏ ଦେଇ ନିଜର ଅସାମର୍ଥ୍ୟ ପ୍ରକାଶ କରେ (୧୪ । ୪୬-୪୭) । ଏଥିପାଇଁ ନାୟକ ମୁହୂର୍ତ୍ତେ ବିଶ୍ରାମ ନିଏ ଓ ପ୍ରଢଦାନରେ ନାୟିକାକୁ ବିପରୀତ ପ୍ରାର୍ଥନା କରେ । ଅନନ୍ୟୋପାୟା ନାୟିକା ଶେଷରେ ଗୁରୁହୀନ ଶିଷ୍ୟା ପରି ବିପରୀତ ଦାନ କରେ (୧୪ । ୪୮-୫୩) । ଲକ୍ଷ୍ୟ କରିବାର କଥା ଏହି ନିର୍ଣ୍ଣିଭ ମିଳନ ମାଧୁରୀର କ୍ରୀଡ଼ାତ୍ମକ ବର୍ଣ୍ଣନା ଉପେନ୍ଦ୍ର ମୁଖ୍ୟତଃ ତତ୍କାଳୀନ ଯୁଗରୁଚିର ବଶବର୍ତ୍ତୀ ହୋଇ କରିଥିଲେ । ଏକ ପରାଜିତ, ଦୁର୍ବଳ ତଥା ଆତ୍ମ ବିଶ୍ୱାସହୀନ ସାମାଜିକ ସ୍ଥିତିର ଏହା ହୁଏତ ଏକ ଆନନ୍ଦପ୍ରଦ ଉପାଦାନ ଥିଲା ।

ଏହି ସମ୍ଭୋଗ ଶୃଙ୍ଗାରର ପରିପୂର୍ଣ୍ଣତା କିନ୍ତୁ ବିପ୍ରଲମ୍ଭରେ ପ୍ରକଟିତ ହେଉଥିଲା । ଏହି ବିପ୍ରଲମ୍ଭ ବା ବିୟୋଗ ଶୃଙ୍ଗାର ନାୟକ ନାୟିକାଙ୍କ ବିୟୋଗା-ବସ୍ଥାରେହିଁ ହେଉଥିଲା । ସଂଯୋଗାବସ୍ଥାରେ ନାୟକ ନାୟିକାଙ୍କ ମନସ୍ଥିତି ସୀମିତ ତଥା ସଙ୍କୁଚିତ ହୋଇପଡ଼ୁଥିବାବେଳେ ବିୟୋଗ ବସ୍ଥାରେ ଏହା ଦୁଃଖହେତୁ ବ୍ୟାପକ ଏବଂ ବିସ୍ତୃତ ହୋଇଯାଏ । ଏଣୁ ପ୍ରେମ ପରିବେଶରେ ସଂଯୋଗ ଅପେକ୍ଷା ବିୟୋଗ ଅବସ୍ଥାକୁ ଅଧିକ ଗୁରୁତ୍ୱ ଦିଆଯାଇଥାଏ । ଏଣୁ ପ୍ରେମାଖ୍ୟାନ କାବ୍ୟମାନଙ୍କରେ ସଂଯୋଗ ଅବସ୍ଥା ଅପେକ୍ଷା ବିୟୋଗାବସ୍ଥାର ଅଧିକ ଚିତ୍ରଣ ହୋଇଥାଏ । ରସ–ଲେଖାରେ ଉପେନ୍ଦ୍ର ଏହି ବିପ୍ରଲମ୍ଭ ଶୃଙ୍ଗାରକୁ 'ବିଚ୍ଛେଦରସ' ନାମରେ ନାମିତ କରିଛନ୍ତି (୧୮ । ୨୦) । ଏହାକୁ ପ୍ରାକ୍ ବିବାହ କାଳୀନ ଓ ବିବାହୋତ୍ତରକାଳୀନ ବିଚ୍ଛେଦ ଭେଦରେ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ପ୍ରାକ୍ ବିବାହ କାଳୀନ ବିଚ୍ଛେଦରେ ନାୟକ ନାୟିକାକୁ ପ୍ରଥମ ଦର୍ଶନ କଲାପରେ ଭ୍ରମର ଝଙ୍କାର ଆଦି ଉଦ୍ଦୀପନ ଉପାଦାନମାନଙ୍କ ଦ୍ୱାରା ଉତ୍ପୀଡ଼ିତ ହୋଇଉଠେ (୬ । ୩) । ଏଥିରୁ

ରକ୍ଷାପାଇବାପାଇଁ ସେ 'ଗନ୍ଧବନ୍ଧୁଫଳ'ରେ ନିଜ ଶରୀରକୁ ଭୂଷିତ କରେ ୭।୪ ଏବଂ ନାୟିକା ବା ସ୍ତ୍ରୀର ରମା, ବାମା ଶ୍ୟାମା, ମନୋରମା, ସୁମଣି, ବାଳା, ତରୁଣୀ ତଥା କାମିନୀ ଆଦି ବିଭିନ୍ନ ପ୍ରତିଶବ୍ଦ ଏବଂ 'ବାତ୍ସାୟନ ଋଷି ଛନ୍ଦ' ଓ 'ରତି ଦେବତା' ଆଦି ମନ୍ତ୍ରରେ ନିଜ ଅଙ୍ଗକୁ 'କବଚ' କରିଦିଏ (୭।୫-୮)। ଅପର ପକ୍ଷରେ ନାୟିକା ନାୟକର ପତ୍ର ପାଇ ବିଚ୍ଛେଦ ଯନ୍ତ୍ରଣାରେ ଅଧୀର ହୋଇଉଠେ। କନ୍ଦର୍ପର ଫୁଲଶର ତା ଦେହରେ ଗ୍ରୁଚ ହୋଇଯାଏ (୭।୪୩), ଯାହାଫଳରେ ତା ଦେହରେ ବେପଥୁ ସୃଷ୍ଟି ହୁଏ (୭।୪୨) ଏବଂ ସେ ବିକଳରେ ସଖୀମାନଙ୍କୁ ପ୍ରବୋଧନା ମାଗିବସେ (୭।୪୫)। ନିଜ ଅନ୍ତରଙ୍ଗା ସଖୀମାନଙ୍କୁ ସେ ଏହି ବିରହ ବେଦନା 'ଅତି ଅସହଣୀ' ବୋଲି ଜଣାଇଦିଏ (୮।୧୯)। କୋକିଳରବଶ୍ରୁ-ତାନରେ ସେ ଜ୍ଞାନ ଶୂନ୍ୟା ହୋଇଯାଏ (୮।୩)। ଚନ୍ଦ୍ର ଏବଂ ମଳୟ ତାକୁ ଅଧିକ ଦୁଃଖ ଦିଅନ୍ତି (୮।୮-୧୯)। ଏହାର ପ୍ରତିକାର ପାଇଁ ସେ କନ୍ଦର୍ପର ଶତ୍ରୁ ଶିବଙ୍କୁ ପ୍ରାର୍ଥନା କରେ (୭।୪୪) ଓ କୋକିଳକୁ ନିନ୍ଦାକରେ (୮।୫)। ଏହି ଅବସ୍ଥାର ଏକ କଳାତ୍ମକ ଉପାଦାନ ହେଉଛି ବିରହ ବିନୋଦ। ନାୟିକାର ସଖୀମାନେ ଚନ୍ଦ୍ର ଏବଂ ମଳୟ ପବନ ଏମାନଙ୍କର ନାମ ଓ ଗୁଣକୁ ନେଇ ବିନୋଦ କରିବାକୁ ଭୁଲି ନାହାନ୍ତି (୮।୮-୧୯)।

ପ୍ରାକ୍ ବିବାହ କାଳୀନ ବିଚ୍ଛେଦ ଅପେକ୍ଷା ବିବାହୋତ୍ତର କାଳୀନ ବିଚ୍ଛେଦ 'ରସଲେଖା'ରେ ଅଧିକ ଭାବ ଗମ୍ଭୀର ଓ ହୃଦୟ ଆକର୍ଷକ। କାବ୍ୟରେ କାବ୍ୟ ନାୟକ ବିଶ୍ୱଭୂତି ଓ ନାୟିକା ରସଲେଖାଙ୍କ ବିବାହପରେ ବିଶ୍ୱଭୂତି ନିଜ ପିତାଙ୍କ ଦ୍ୱାରା ନାୟିକାଠାରୁ ଦୂରେଇଯାଏ। ଏଠାରୁ ଆରମ୍ଭ ହୁଏ ବିବାହୋତ୍ତର ବିପ୍ରଲମ୍ଭ ପ୍ରସଙ୍ଗ। ନାୟକ ନାୟିକାକୁ ଛାଡ଼ି ନିଜ ଗୃହରେ ଥିବା ଦେଖି ପ୍ରଥମେ ସେ ମୂର୍ଚ୍ଛା ହୋଇଯାଏ [୧୭।୭-୮]। ତା ଦେହରେ କ୍ରମେ ଅଶ୍ରୁ ସାତ୍ତ୍ୱିକ ଭାବାବେଗର ଉଦୟ ହୁଏ [୧୯।୨୦] ଏବଂ ନାୟକର ମିତ୍ରମାନେ ଏହାର ପ୍ରତିକାର ବ୍ୟବସ୍ଥା କରନ୍ତି [୧୭।୮]। ନାୟକର ଶାରୀରିକ ପ୍ରତିକ୍ରିୟା ସହିତ ବାଚନିକ ପ୍ରତିକ୍ରିୟା ମଧ୍ୟ ଆରମ୍ଭ ହୋଇଯାଏ। ପ୍ରଥମେ ନାୟିକାକୁ ବିବାହକରି-ପାରିଛି ବୋଲି ନିଜ ଭାଗ୍ୟର ପ୍ରଶଂସା କରି ବସିଲି ବେଳେ [୧୭।୧୨-୧୩] ନାୟିକାଠାରୁ ନିଜ ନିକୃଷ୍ଟତା ପ୍ରତିପାଦନକରି କାଚ କାଞ୍ଚନର ଉପମାନ ଦିଏ [୧୭।୧୪]। ନାୟିକାହିଁ ତାର 'ବ୍ରହ୍ମଜ୍ଞାନ' ବୋଲି ସେ ମୁକ୍ତ କଣ୍ଠରେ ସ୍ୱୀକାର କରେ [୧୯।୨]। ଅତୀତର ପ୍ରସଙ୍ଗ ଯଥା ପଶାଖେଳ [୧୮।୧୦-୧୧], ପୟୋଧର ଦର୍ଶନ ଜନିତ ବିନୋଦ [୧୮।୧୨], ଯୁଥିକା ମାଳିକା ପ୍ରଦାନ ବିନୋଦ [୧୮।୧୩], ପ୍ରଭାତରେ ନାୟିକା ନଖକ୍ଷତକୁ ଗୁହିବା ପ୍ରସଙ୍ଗ ଜନିତ ବିନୋଦ [୧୮।୧୭], ରତି ଶେଷରେ ନାୟକ ନାୟିକାକୁ ବାନ୍ଧିବା ସମ୍ପର୍କିତ ବିନୋଦ [୧୮।

୧୯] ପୁଣି 'ନବ ଅନୁଭବୀ ବାଳା'ର ଚମ୍ବନ ଦାନ ଅନିଚ୍ଛା ୧୯।୮ ଏବଂ ବିଭିନ୍ନ ନିଧୁବନ ଅନୁଭୂତି ୧୯ । ୧୫-୧୭ ଆଦିର ସ୍ମୃତି ସ୍ମରଣରେ ତାର ବିରହ ଅବସ୍ଥା ସ୍ପଷ୍ଟ ହୋଇଯାଏ । ବିଚ୍ଛେଦହେତୁ ନାୟିକା ଭୋଗୁଥିବା ଦୁଃଖକୁ କଳନା କରି ସେ ଅଧିକ ବିବଶ ହୋଇଯାଏ [୧୮ । ୮, ୧୯ । ୬, ୧୯ । ୧୧] । ଏହା ବ୍ୟତୀତ ନିଜ ଦୁଃଖକୁ କାନ୍ଦି କାନ୍ଦି ଜଣାଏ [୧୯ । ୧୩] । ଅତୀତରେ ବର୍ଷା ଏବଂ ପ୍ରିୟା ଭିତରେ ଏକ ସମୀକ୍ଷାତ୍ମକ ଚିତ୍ର ଅଙ୍କନ କରି ପ୍ରିୟାର ଯେଉଁ ଔତ୍କର୍ଷ୍ୟ ପ୍ରତିପାଦନ କରିଥିଲି [୧୭ । ୭-୧୧], ବର୍ତ୍ତମାନ ସେହି ମେଘକୁ ବିଦ୍ୱଳିତ ଚିତ୍ତ ବୃତ୍ତି ଭିତରେ ପ୍ରିୟା ନିକଟକୁ ଦୂତକରି ପଠାଏ [୧୯ । ୧-୧୪] । ନିଜ ଅନିଚ୍ଛାରେ ପ୍ରିୟାଠାରୁ ଦୂରେଇ ଆସିଥିବା ହେତୁ ସେ ନିଜ ଦୋଷ ପାଇଁ କ୍ଷମା ମାଗିନିଏ [୧୯ । ୪], ମିଳନ ସମୟରେ ପ୍ରିୟାର ମିହା ଶାଢୀ ଠାରୁ ଅଧିକ ନିକଟବର୍ତ୍ତୀ ହେବାପାଇଁ ସେ ପ୍ରିୟା ଠାରୁ ଯେଉଁ ଶାଢ଼ୀକୁ ଦୂର କରି ଦେଉଥିଲି, ଏବେ ସେ ସେହି ଶାଢ଼ୀଠାରୁ ନିଜ ଭାଗ୍ୟକୁ ଅଧିକ ହୀନ ବୋଲି ବିଚାର କରେ [୧୯ । ୧୨] । ଏହି ବିଚ୍ଛେଦ ପାଇଁ କେବେ କେବେ ସେ ଗିରି ତପସ୍ୟାକୁ [୧୮ । ୧୮] ପୁଣି ପୁଣ୍ୟକ୍ଷୀଣ ହେବା କଥାକୁ [୧୯।୧୯] ଦୋଷ ଦେଲା ବେଳେ ଆଉ କେତେବେଳେ ନିଜ ଉପରେ ଆଦୌ ଦୋଷାରୋପ କରେ ନାହିଁ [୧୯।୩] କିନ୍ତୁ ଦୈବ ଉପରେ ଦୋଷାରୋପ କରେ [୧୯।୫, ୧୯।୧୯] । ଏହି ବିପ୍ରଲମ୍ଭ ଅବସ୍ଥାରେ ନାୟିକା ମଧ୍ୟ ସମପରିମାଣ-ରେ ବିଚ୍ଛେଦର ଦହନ ଉପଲବ୍ଧି କରେ । ଏଥିରେ ନାୟିକାର ତନୁ 'କଟିଦେଶକୁ ହିଟିନିଏ' ଅର୍ଥାତ୍ ଶରୀର କଟି ଭଳି ଦୁର୍ବଳ ହୋଇଯାଏ [୧୭। ୨୩] । ନାୟକ ଗିବା ପରେ ପରେ ବିଚଳିତ ହୋଇ ଶଯ୍ୟାରେ ଖୋଜିବସେ [୧୭/୧୮], ଲୁହ ନିଗାଡ଼ି ଦିଏ [୧୭/୧୮] ଏବଂ 'ହା ନାଥ' ବୋଲି ବିଳାପ କରେ [୧୭/୧୮], ନିଜର ସ୍ୱାମୀ ହିଁ ଦେଖିବା ପାଇଁ କେଉଁଠି ଲୁଚିଛନ୍ତି ବୋଲି ବିଚାର କରେ [୧୭/୧୮-୧୯] । କ୍ରମେ ଦିନ ରାତି ତାକୁ 'ଅସର' ହୋଇଯାଏ [୧୭ । ୨୩] ଏବଂ ବସ୍ତ୍ର ବନ୍ଧନ ପରି ଓ ଖାଦ୍ୟ ବିଷ ପରି ଅନୁଭୂତ ହୁଏ [୧୭। ୨୪] । ଗଡ଼ି ପଡ଼ି ଧୂଳି କ୍ଷିଣି ସେ ପୃଥିବୀରେ ପଡ଼ିଯାଏ [୨୦।୧୬] । ସ୍ୱାମୀ ବିହୀନ ଜୀବନ ତାକୁ ମୃତ୍ୟୁ ବରି ଲାଗେ [୨୦।୬-୭] । ଅତୀତର ଗୁଣ ସ୍ମରଣ କରି କେତେବେଳେ ସେ ବିଚଳିତା ହୋଇଯାଏ [୨୦।୧-୪] ଏବଂ ପାଖରୁ ବିନା ଦୋଷରେ ଦୂରେଇ ଯାଇଥିବାରୁ ସ୍ୱାମୀଙ୍କ ଉପରେ ଅଭିମାନ କରେ [୨୦ । ୮-୯] । ସଂଯୋଗର ସୀମିତ ବଳୟ ମଧ୍ୟରେ ଯେଉଁ-ଠାରେ ନାୟକ ନାୟିକା ପରସ୍ପର ପରସ୍ପର ସମ୍ପର୍କରେ ଚିନ୍ତା କରିବା ପାଇଁ ବିସ୍ତୃତ ସମୟ ପାଇ ପାରନ୍ତି ନାହିଁ ବିପ୍ରଲମ୍ଭ ସେହି ଅନୁଚିନ୍ତନ ଓ ତନ୍ନିମିତ୍ତ ମୂଲ୍ୟାୟନର ପଥ ମୁକ୍ତ କରିଦିଏ ଓ ପରିଧିକୁ ବିସ୍ତୃତ କରିଦିଏ । ସମ୍ପର୍କର ଦୂରତା ହିଁ ସମ୍ପର୍କର ନିବିଡ଼ତା ତଥା ସାନ୍ଦ୍ରତାକୁ ଡ଼ାକି ଆଣେ । ଏହି ଯୋଗୁ ଶୃଙ୍ଗାରର ପରିପୁଷ୍ଟିରେ ସଂଯୋଗ ଅପେକ୍ଷା ବିପ୍ରଲମ୍ଭହିଁ ଅଧିକ ଉପଯୋଗୀ ବୋଲି ସ୍ପଷ୍ଟ ପ୍ରମାଣିତ ହୋଇଯାଏ ।

'ରସଲେଖା'ରେ ଶବ୍ଦର ଗୁରୁଗମ୍ଭୀର ମୂର୍ଚ୍ଛନା ବଇଭବ ଏବଂ ଅର୍ଥର ବୈଚିତ୍ର୍ୟ ବିଝଟିତ ଭାବ ସମ୍ପଦ ଏକାନ୍ତ ଭାବରେ ହୃଦ୍ୟ ଏବଂ ଶ୍ଳାଘଣୀୟ । ମଧ୍ୟକାଳୀନ ରୀତି କାବ୍ୟମାନଙ୍କରେ ଶବ୍ଦର ଅଳଙ୍କରଣ ପ୍ରିୟତା ଏବଂ ଦୃଷ୍ଟି କୂଟର ଚମତ୍କାରିତା କବିମାନଙ୍କର ଏକ ପ୍ରିୟ ଉପାଦାନ ଥିଲା । ଉପେନ୍ଦ୍ର 'ରସଲେଖା'ରେ ମଧ୍ୟ ଏହାର ପ୍ରୟୋଗ ଆଗ୍ରହର ସହ କରିଛନ୍ତି । ଏହାର ମଙ୍ଗଳ ଚରଣରେ ସେ ହରି ଏବଂ ହରଙ୍କ ଉଭୟଙ୍କୁ ଦ୍ୱୀର୍ଥ ବୋଧକ ପଦରେ ସ୍ତୁତି କରିଛନ୍ତି [୧/୧-୭, ୧/୪୭, ୨/୨୩, ୩/୪୧, ୪ । ୪୪, ୫ । ୪୨, ୬ । ୪୩, ୭ । ୪୭, ଆଦି ପ୍ରତି ଛାନ୍ଦର ଶେଷ ପଦ] । ବସନ୍ତ କାଳୀନ ବନ ବର୍ଣ୍ଣନାରେ କବି ବ୍ୟଞ୍ଜନା ମଧ୍ୟରେ ବସନ୍ତ ଓ ଅରଣ୍ୟର ବର୍ଣ୍ଣନା କରିଛନ୍ତି [୪ । ୧-୭] । ନାୟକ ନାୟିକା ନିକଟକୁ ତାର ରୂପ ପ୍ରଶଂସା କରି ପତ୍ରଟିଏ ଲେଖି ବସିଲା ବେଳେ ଚମତ୍କାର ଧ୍ୱନି ଉତ୍ପାଦକ ଅନୁପ୍ରାସର ଆଶ୍ରୟ ନିଏ [୭ । ୧୨-୧୫] । ଶବ୍ଦର କମନୀୟ ଯମକ ମାନଙ୍କରେ ମଧ୍ୟ 'ରସଲେଖା'ର ଅଧିକାଂଶ ସ୍ଥାନ ସୁରଭିତ [୧୧ । ୧-୨୦] । ଦ୍ୱାଦଶ ଛାନ୍ଦର ପ୍ରାୟ ସମସ୍ତ ପଦରେ ଅନୁପ୍ରାସର ଲଳିତ ବିନ୍ୟାସ ଲକ୍ଷ୍ୟ କରାଯାଇପାରେ । ନାୟିକା ନାୟକ ନିକଟକୁ ଲେଖିଥିବା ପତ୍ରରେ ଉପେନ୍ଦ୍ର ଏକ ଚମତ୍କାର ଅନ୍ତ୍ୟକ୍ଷିର ସଯୋଜନା କରିଛନ୍ତି ]୧୦ । ୨୨-୨୯] । ଶବ୍ଦର ଚମତ୍କାର ବିଳାସ ସହିତ ଅର୍ଥର କମନୀୟ ପ୍ରୟୋଗ ବିଧି 'ରସଲେଖା'ର ପଦମାନଙ୍କରେ ଲକ୍ଷଣୀୟ । ସଖୀଙ୍କ ସହ ରସଲେଖାର ଉକ୍ତି ପ୍ରତ୍ୟୁକ୍ତିରେ ଅର୍ଥଗୌରବର ଚମତ୍କାରିତା ଲକ୍ଷ୍ୟ କରିହୁଏ [୪ । ୧୦-୧୭] । ରସ-ଲେଖାରେ ପ୍ରଯୁକ୍ତ ଉପମାନ ଗୁଡ଼ିକ ମଧ୍ୟ ଉପେନ୍ଦ୍ରଙ୍କ ଉନ୍ନତ କାବ୍ୟ ପ୍ରତିଭାର ପରିଚୟ ଦିଏ । ଯଦିଓ ଉପେନ୍ଦ୍ର ଏହି ଉପମାନମାନଙ୍କୁ ପ୍ରାୟ ପରମ୍ପରାରୁ ଗ୍ରହଣ କରିଛନ୍ତି, ତଥାପି ସେମାନଙ୍କ ପ୍ରୟୋଗ ଅତିବ ଏକାନ୍ତ ଆକର୍ଷଣୀୟ । ଏହି ଉପ-ମାନମାନଙ୍କୁ ଉପେନ୍ଦ୍ର ମୁଖ୍ୟତଃ ପୁରାଣ, କଳ୍ପନା, ପ୍ରାଣୀଜଗତ, ପ୍ରକୃତି ଓ ମନୁଷ୍ୟର ଆବଶ୍ୟକୀୟ ନିତ୍ୟବ୍ୟବହାର୍ଯ୍ୟ ଉପାଦାନମାନଙ୍କରୁ ଗ୍ରହଣ କରିଛନ୍ତି ।

ପୁରାଣରୁ ସଙ୍ଗୃହୀତ ହୋଇଥିବା ଉପମାନମାନଙ୍କ ମଧ୍ୟରୁ 'ଚନ୍ଦ୍ର' ଏକ ବହୁବ୍ୟବହୃତ ଉପମାନ । ଏହା ନାୟିକାର ମୁଖ [୨ । ୬, ୩ । ୨, ୫ । ୩୧, ୧୩/୧୭, ୫/୪, ୧୪ । ୨୪, ୧୭ । ୧୯, ୧୯ । ୧୯, ୨୨ । ୭], ହାସ [୧୨।୧], ବର୍ଣ୍ଣ [୧୪ । ୩୪] ଓ ନେତ୍ର [୧୫।୨୦] ର ଉପମାନ ଭାବେ ବ୍ୟବହୃତ ହୋଇଛି । ଯୌବନର ବିକାଶ ସହ ଚନ୍ଦ୍ରକଳାର ବିକାଶ [୨ । ୩], ଚନ୍ଦ୍ରକଳା ସହିତ ପାଦ ନଖ [୨ । ୭], ଦର୍ପଣର ଉପମାନ ଭାବରେ ଚନ୍ଦ୍ର ଓ ଚନ୍ଦ୍ରମଣି ପ୍ରସଙ୍ଗ [୩।୪୦],

ନାୟିକାର ଗଳାରେ ଗୁଡ଼ାହୋଇଥିବା ଫୁଲ ମାଳ ସହିତ ଚନ୍ଦ୍ର ରାହୁକୁ ହାତରେ ଭିଡ଼ି ଧରିବା ଚିତ୍ର [୧୩ । ୩], ସାନ୍ଦ୍ର ତଥା ନବଚ୍ଛ ପ୍ରୀତିର ଉପମାନ ଭାବେ କୁମୁଦ ଚନ୍ଦ୍ର ପ୍ରୀତିର ବର୍ଣ୍ଣନା [୧ । ୨୫], ଗଣ୍ଡର ଦନ୍ତକ୍ଷତ ସହିତ ରାହୁ ଗ୍ରସ୍ତ ଚନ୍ଦ୍ର [୧୪ । ୨୧], ବିଚ୍ଛେଦରେ କ୍ଷୀଣ ତଥା ଶୀର୍ଣ୍ଣ ହୋଇଥିବା ନାୟିକାର ଅଙ୍ଗ ସହିତ ଦ୍ୱିତୀୟା ଚନ୍ଦ୍ରର ଚିତ୍ର [୧୧ । ୧୪] ଚିନ୍ତିତ ମୁଖମଣ୍ଡଳ ସହିତ ତମ ଗ୍ରସ୍ତ ଚନ୍ଦ୍ର [୨୨ । ୨] ଏବଂ ନାୟକର ଉପମାନ ଭାବରେ ଚନ୍ଦ୍ରର ପ୍ରୟୋଗ ଏକାନ୍ତ ଲକ୍ଷଣୀୟ । ଚନ୍ଦ୍ର ବ୍ୟତୀତ ଚିବଙ୍କ ଗଳା ନାୟିକାର ନୀଳ କେଶର [୨ । ୪] ଏବଂ ଶିବଲିଙ୍ଗ ନାୟିକାର ବକ୍ଷୋଜ [୫ । ୧୧] ର ଉପମାନ ଭାବେ, ଲକ୍ଷ୍ମୀ ନାୟିକାର ସୌନ୍ଦର୍ଯ୍ୟର ଉପମାନ ଭାବେ [୨ । ୧], ଅରୁଣ ମନ୍ଦ ହାସ [୨ । ୧୦] ଓ ଅଧର [୧ । ୪, ୧୨ । ୭] ର ଉପମାନ ଭାବେ, ସରସ୍ୱତୀଙ୍କ ସ୍ୱାଣାର ତୁମ୍ବୀ ଯୁଗଳ ନାୟିକାର ବକ୍ଷୋଜର ଉପମାନ ଭାବେ [୫ । ୧୪] ଓ କନ୍ଦର୍ପର ଧନୁ ନାୟିକାର ଭ୍ରୂଲତା [୨।୮], ଶର ନେତ୍ର [୫।୮], ଶିରସ୍ତ୍ରାଣ ବକ୍ଷୋଜ [୫।୧୩] ଏବଂ କାମ ପ୍ରେମ ପୁସ୍ତକର 'କାଳ ବର୍ଣ୍ଣ ଲ' ଉଦରର ଲୋମ ୨।୧ ର ଉପମାନ ଭାବେ ଗୃହୀତ ହୋଇଛନ୍ତି । କଳ୍ପନାରୁ ଉପେନ୍ଦ୍ର ସଂଗ୍ରହ କରିଥିବା ଉପମାନଙ୍କମଧ୍ୟରେ ଲାବଣ୍ୟ କୋଷ ସହ ନାୟିକାର ବକ୍ଷୋଜ [୫ । ୧୩], କଳ୍ପଲତା ବା କଳ୍ପବୃକ୍ଷ ସହିତ ନାୟିକା [୧ । ୩୮, ୪ । ୪୨] ଆଦି ଅନ୍ୟତମ ।

ପ୍ରାଣୀ ଜଗତ ମଧ୍ୟରୁ ଉପେନ୍ଦ୍ର ମଧ୍ୟ କେତେକ ଲୋକପ୍ରିୟ ଉପମାନ ଚୟନ କରିଛନ୍ତି । ଏହାକୁ ପଶୁ, ପକ୍ଷୀ, ପତଙ୍ଗ ଓ ମଣିଷ ଏହି ଚାରି ଭାଗରେ ବିଭକ୍ତ କରାଯାଇପାରେ । ପଶୁମାନଙ୍କ ମଧ୍ୟରୁ ହସ୍ତୀକୁ କନ୍ଦର୍ପ ସହିତ [୧।୩୦], ହସ୍ତୀର ଗତିକୁ ନାୟିକାର ଗତି ସହିତ [୫।୩, ୭।୨୦, ୧୧।୮] ଓ ତାର କୁମ୍ଭକୁ ନାୟିକାର ବକ୍ଷୋଜ ସହିତ[୨।୧୩] ତୁଳନା କରିଛନ୍ତି । ସେହିପରି ମୃଗକୁ ନେତ୍ରର ଚଞ୍ଚଳତା ସହିତ [୨।୫, ୧୪।୨୦] ଓ ପ୍ରାଣ ସହିତ [୭।୩୦], ସିଂହକୁ ନାୟିକାର ମଧ୍ୟ ଦେଶ ସହିତ [୨।୧୩, ୫।୩୮], ଅଶ୍ୱର ଚଞ୍ଚଳ ଗତିକୁ ନେତ୍ର ସହିତ [୫।୫] ଏବଂ ବାଘକୁ ମେଘ ସହିତ [୧୮।୧] ତୁଳନା କରାଯାଇଛି । ପକ୍ଷୀମାନଙ୍କ ମଧ୍ୟରୁ ଶୁକ କଣ୍ଠସ୍ୱରର [୨।୧୧], ମେଘ ପ୍ରତି ଆସକ୍ତ ଚାତକକୁ ନାୟିକାର ବକ୍ଷୋଜ ପ୍ରତି ଆସକ୍ତ ନାୟକର [୧୧।୧୭], ପିକକୁ ନାୟିକାର କଣ୍ଠସ୍ୱରର [୨।୧୧], ୧୨।୧), ମୟୂରକୁ କେଶର [୧୭।୨୪], ହଂସକୁ ନାୟିକାର ଗତିର [୨।୧୩], ଚକୋରକୁ ଯୁବାକାମିନୀ [୩।୧୮], ନାୟିକାର ନେତ୍ର [୭।୧୫] ଓ ନାୟିକା ପ୍ରତି ଆସକ୍ତ ନାୟକର [୭।୧୫], ଝଞ୍ଜନ ବା ଝେଲା ଝଞ୍ଜନକୁ ନାୟିକା ନେତ୍ରର [୩।୨୮, ୫।୭, ୭।୧୪, ୧୩।୮] ଏବଂ ଚକ୍ରବାକକୁ ବକ୍ଷୋଜର [୫।୧୨] ଉପମାନ ଭାବେ

ଗ୍ରହଣ କରାଯାଇଛି , ପତଙ୍ଗ ଓ ସରୀସୃପ ମାନଙ୍କ ମଧ୍ୟରୁ ପତଙ୍ଗକୁ ପ୍ରେମିକ (୯/୧୫) ଓ ମନ (୧୩/୫), ଭ୍ରମରକୁ ନେତ୍ରର (୨।୭, ୫।୮), କୃଷ୍ଣବର୍ଣ୍ଣ ସର୍ପକୁ ନେତ୍ରର (୬।୧୬) ଏବଂ ମନକୁ ନେତ୍ର (୩।୨୮, ୧୩।୮) ଓ ମନ (୬।୧୯)ର ଉପମାନ ଭାବେ ଗ୍ରହଣ କରାଯାଇଛି । ମନୁଷ୍ୟମାନଙ୍କ ମଧ୍ୟରୁ ପତିବ୍ରତା ନାରୀକୁ ନାୟିକାର ତାରା ସହ (୧୦।୨), ମନୁଷ୍ୟର ବିଭିନ୍ନ ଗୁଣ ତଥା ଅବସ୍ଥାମାନଙ୍କ ମଧ୍ୟରୁ ଦରିଦ୍ରର ମହା ସମ୍ପଦ ପାଇବାର ଆନନ୍ଦକୁ ନାୟକର ନାୟିକା ଲଭ କରିବାର ଆନନ୍ଦ ସହ (୧୨।୨୧), ଖଳଲୋକର ହୃଦୟକୁ ନାୟିକା କେଶର କୁଟିଳତା ସହ (୨ । ୪) ଏବଂ ସ୍ୱପକ୍ଷେତ ରତକୁ କପୋତଙ୍କ ହୁଙ୍କାର ସହ (୪ । ୫) ତୁଳନା କରାଯାଇଛି । ।।

ଉପେନ୍ଦ୍ର ପ୍ରକୃତିରୁ ଅନେକ ଉପମାନ ଏହି କାବ୍ୟନିମନ୍ତେ ସଂଗ୍ରହ କରିଛନ୍ତି । ମେରୁପର୍ବତ (୩।୨୭, ୧୩।୧୦) ଓ କେବଳ ପର୍ବତ ୮ । ୨୦)କୁ ନାୟିକାର ବକ୍ଷୋଜର, ମେଘକୁ କେଶର (୩।୩୦, ୧୨।୩, ୧୭।୧୧), ବିଜୁଳିକୁ ଦନ୍ତ ସ୍ମୟ (୩। ୨୫) ଓ କାନ୍ତି (୭।୧୦)ର, ବଜ୍ରକୁ ଉରଜର କଠିନତା (୩/୨୭) ଓ ବିରହରେ କାକଳର ଧ୍ୱନର (୮/୩), ନୀଳେନ୍ଦ୍ରମଣିକୁ କେଶର (୩।୩୦), ନଦୀକୁ ଚନ୍ଦ୍ରାର (୧୧।୧୦),ଗଙ୍ଗାନଦୀକୁ ନାୟିକାର ସାମଗ୍ରିକ ସଗ୍ତର (୧୧।୭), ଯମୁନାକୁ କେଶର (୩।୩୦), ସମୁଦ୍ରକୁ ଦୁଃଖ (୯।୮)ର ପୁଣି ସମୁଦ୍ରର ଜଳରେ ଭାସି ଯାଉଥିବା ସୁବର୍ଣ୍ଣ ତରୀକୁ ନାୟିକାର ଗଠନ (୧୫।୩୭) ନଦୀ ଓ ସମୁଦ୍ରକୁ ଏକନିଷ୍ଠ ମିଳନର (୧୬।୨) ଅଗ୍ନିକୁ ବିରହ (୭।୨୮) ଓ ପ୍ରୀତି (୯।୧୫)ର ଉପମାନ ଭାବେ ଉପେନ୍ଦ୍ର ଗ୍ରହଣ କରିଛନ୍ତି । ପ୍ରକୃତିର ଅନ୍ୟତମ ଉପାଦାନ ବୃକ୍ଷମାନଙ୍କ ମଧ୍ୟରୁ ବୃକ୍ଷ ବା ତରୁକୁ ଆଶାର ୧୨।୨ , ତମାଳକୁ କେଶ (୨।୪) ଓ ତମାଳ ବନରେ ପ୍ରଜ୍ୱଳିତ ଅଗ୍ନିକୁ ସୀମନ୍ତ ସିନ୍ଦୂର ୧୩।୫ ର, କଦଳୀକୁ ଉରୁର ୧୨।୨ , ଫଳମାନଙ୍କ ମଧ୍ୟରୁ ମାତୁଳଙ୍ଗ (୫।୧୦), ନଡ଼ିଆ (୫।୧୦), ବେଲ (୫।୧୦) ଓ କରୁଣାକୁ (୧୧।୩କୁ) ବକ୍ଷୋଜର କରକ ବା ଡ଼ାଳିମ୍ବକୁ ଦନ୍ତର (୧୨ । ୧୨) ଏବଂ ବିମ୍ବକୁ ଅଧରର (୧୪ । ୧୮, ୧୯ । ୧୯), ଫୁଲ ମାନଙ୍କ ମଧ୍ୟରୁ ଶ୍ୱେତ ଚମ୍ପାମାଳାକୁ ନାୟିକାର ଶରୀର (୨।୧), କଇଁକୁ ବିଦେଶୀମନ (୩।୨) ଓ ନାୟିକାର ନେତ୍ର (୩।୨୮), ଚମ୍ପାକୁ ନାୟିକାର ବର୍ଣ୍ଣ (୩।୨୫, ୧୯।୧୫), କେତକୀକୁ ନାୟିକାର ବର୍ଣ୍ଣ (୩। ୨୫, ୧୯।୧୫) ପୁଣି ବର୍ଷାଦିନେ ଏହି କେତକୀର କମ ବିବର୍ଣ୍ଣତାକୁ ବିରହ କାଳୀନ ନାୟିକାର ବର୍ଣ୍ଣ (୧୮।୮), ବନ୍ଧୁଳିକୁ ଅଧର (୧୪।୨୫) ଓ ପାଟଳୀକୁ ଗ୍ରୀବା (୧୫ । ୮) ସହିତ ଉପେନ୍ଦ୍ର ତୁଳନା କରିଛନ୍ତି । ଫୁଲମାନଙ୍କ ମଧ୍ୟରୁ ଉପେନ୍ଦ୍ରଙ୍କର ସମସ୍ତଙ୍କ ଠାରୁ ପ୍ରିୟ ଉପମାନଟି ହେଉଛି ପଦ୍ମ । କାରଣ ଏହି ଉପମାନକୁ ରସ-ଲେଖାରେ ସେ ସର୍ବାଧିକ ଥର ବ୍ୟବହାର କରିଛନ୍ତି । ଏହାକୁ କବି ନାୟିକାର

ମୁଖ [୨୭, ୫।୮, ୯।୪], ନେତ୍ର [୫।୬, ୫।୭, ୬।୧୪, ୬।୧୭, ୧୫।୨୦, ୧୬।
୨୨], ବକ୍ଷୋଜ [୫।୧୦, ୫।୧୨], ପାଦ [୫।୩]ର ଉପମାନ ଭାବେ ମୁଖ୍ୟତଃ
ପ୍ରୟୋଗ କରିଛନ୍ତି ।

ପ୍ରତିନିୟତ ଜୀବନଯାପନ ବ୍ୟବସ୍ଥାରେ ଭେଟି ଥିବା ଦ୍ରବ୍ୟମାନଙ୍କୁ ଉପେନ୍ଦ୍ର ଏକ ଏକ ଚମତ୍କାର ଉପମାନ କରି ଗଢ଼ି ତୋଳିଛନ୍ତି । ଅବଶ୍ୟ ଏମାନଙ୍କ ମଧ୍ୟରୁ କେତେକ ପାରମ୍ପରିକ ଉପମାନ ହୋଇଥିଲେ ମଧ୍ୟ ଅନ୍ୟ ସମସ୍ତ ଉପେନ୍ଦ୍ର ନିଜର ପର୍ଯ୍ୟାପ୍ତ ଅନୁଭବରୁହିଁ ଗ୍ରହଣ କରିଛନ୍ତି । ବ୍ୟବହାର୍ଯ୍ୟ ବସ୍ତୁମାନଙ୍କ ମଧ୍ୟରୁ କୁମ୍ଭ, କଉଡ଼ି, ଫରୁଆ, ଚୁମ୍ବକ, ଭୃଙ୍ଗୀ, ଅର୍ଗଳ, ବଡ଼ିଶୀ, କୂପ, ପଲଙ୍କ, ସ୍ୱର୍ଣ୍ଣପାଞ୍ଜି ଓ ଭେଳା ଆଦି ପ୍ରଧାନ । କବି ଉରଜର ଉପମାନ ଭାବେ କୁମ୍ଭ [୨।୮, ୫।୯], ଚୂର୍ଣ୍ଣ କୁନ୍ତଳ [୨।୧୪] ଓ ପକ୍ଷ ବା ପିଞ୍ଜରାର ଉପମାନ ଭାବେ [୧୫।୧୨] କଉଡ଼ି, ଆକର୍ଷଣର ଉପମାନ ଭାବେ ଲୁହା ଏବଂ ଚୁମ୍ବକ [୬।୪୦, ୫।୨୮], ବକ୍ଷୋଜର ଉପମାନ ଭାବେ ଫରୁଆ [୫।୧୨] ଏବଂ ଓଲଟ ସୁନା କୋଟରି [୫।୧୪], ଜାନୁର ଉପମାନ ଭାବେ ଅର୍ଗଳ [୫।୨୭], ବକ୍ଷୋଜର ଉପମାନ ଭାବେ ଲାଉ ଭୃଙ୍ଗୀ (୫। ୧୪), ଜଂଘର ଉପମାନ ଭାବେ ବଡ଼ିଶୀ [୬।୧୯], ସୌନ୍ଦର୍ଯ୍ୟପ୍ରଦ ରୂପର ଉପମାନ ଭାବେ ଲବଣ୍ୟରସଯୁକ୍ତ କୂପ [୧୫।୫], କୋଳର ଉପମାନ ଭାବେ ପଲଙ୍କ (୭। ୨୩),ଜଘନର ଉପମାନ ଭାବେ ସ୍ୱର୍ଣ୍ଣପାଞ୍ଜି [୧୫।୩୦] ଏବଂ ଜୀବନର ଉପମାନ ଭାବେ ଭେଳା [୯।୮] କୁ ଗ୍ରହଣ କରିଛନ୍ତି । ସେହିପରି ଆଭୂଷଣ ସାମଗ୍ରୀ ଭାବରେ କଜ୍ଜଳକୁ କେଶର [୨।୪], ମୁକୁର ବା ଦର୍ପଣକୁ ମୁଖ [୨।୬, ୫।୪], ଗଣ୍ଡ[୧୫। ୧୩] ଏବଂ ନେତ୍ର [୧୫।୨୦] ର କସ୍ତୁରୀକୁ ତମ ବା ଅନ୍ଧାରର [୧୩।୧୬] ଏବଂ ପାଦରେ ଅଳତା ପ୍ରାୟେ ଲଗିରହିବାକୁ ନାୟିକା ଅନୁଗତ ନାୟିକାର [୯।୨] ଉପମାନ ଭାବେ ଗ୍ରହଣ କରାଯାଇଛି । ବିଭିନ୍ନ ବାଦ୍ୟଯନ୍ତ୍ର ମାନଙ୍କ ମଧ୍ୟରୁ ବୀଣାକୁ ବଚନର [୨।୨୧, ୮।୧୩], ନଗାରା ବା ନାଗରାକୁ ବକ୍ଷୋଜର [୧୫।୨୫], ମୂଲ୍ୟ-ବାନ ସୌନ୍ଦର୍ଯ୍ୟ ଉତ୍ପାଦକ ବସ୍ତୁଭାବରେ ରଙ୍ଗ ଜବର ପ୍ରତିମାକୁ ନାୟିକାର [୧। ୪୧], କାଠପିତୁଳାକୁ ଚଳଚ୍ଛକ୍ତିହୀନତାର [୧୨।୯], ପଦ୍ମରାଗମଣିକୁ ଓଠର [୨।୧୧], ମୁକ୍ତାକୁ ଦନ୍ତ [୨।୧୨] ଓ ଅକ୍ଷର [୧୦।୨୦]ର, କୁନ୍ଦାହାତୀଦାନ୍ତର ସ୍ତମ୍ଭକୁ ଜାନୁର [୫।୧୯] ଏବଂ ସୁନାକୁ ଅଙ୍ଗ [୧୨।୧୭] ପୁଣି ସୁନା ଓ କଇଁଚର ତୁଳନାକୁ ଉତ୍କୃଷ୍ଟ ଓ ନିକୃଷ୍ଟର [୧୭।୧୪] ଉପମାନ ଭାବେ ଉପେନ୍ଦ୍ର ଗ୍ରହଣ କରିଛନ୍ତି । ଅସ୍ତ୍ରଶସ୍ତ୍ରମାନଙ୍କ ମଧ୍ୟରୁ ଉପେନ୍ଦ୍ର ଶର [୩।୨୯, ୫।୩୧]କୁ ନେତ୍ରର, ଧନୁକୁ ଭ୍ରୂଲତାର [୫।୩୧] ଓ ଶିରସ୍ତ୍ରାଣକୁ ବକ୍ଷୋଜର [୫।୧୩] ଉପମାନ ଭାବେ

ଏବଂ କଙ୍କ ପତ୍ରକୁ ନେଇ ପାତ୍ରର ଉପମାନ ଭାବେ (୬।୨୬) ଗ୍ରହଣ କରିଛନ୍ତି । ଅନ୍ଧ ବିଶ୍ୱାସ ସମ୍ବନ୍ଧୀୟ ଉପାଦାନମାନଙ୍କ ମଧ୍ୟରୁ ପିଶାଚୀକୁ ମେଘର(୧୮।୨) ଏବଂ କ୍ରୀଡ଼ା ସମ୍ବନ୍ଧୀୟ ଉପାଦାନ ଭାବେ ନୀଳା କନ୍ଦୁକକୁ ବକ୍ଷୋଜର (୫।୧୨) ଓ ସାରଣୀକୁ କଟାକ୍ଷର (୬।୧୨) ଉପମାନ ରୂପେ ଗ୍ରହଣ କରାଯାଇଛି । ଲକ୍ଷ୍ୟ କରିବାର କଥା ମଦିରାକୁ ମଧ୍ୟ ଉପେନ୍ଦ୍ର ଉପମାନ ଭାବରେ ଗ୍ରହଣ କରିଛନ୍ତି ! ଏହା କନ୍ଦର୍ପର ବିହ୍ୱଳିତ ପ୍ରବୃତ୍ତିର ଉପମାନ ଭାବେ ବ୍ୟବହୃତ ହୋଇଅଛି (୧୪।୫୧) । ଏହାଛଡ଼ା ଅଙ୍ଗେଥିବା ଗୁଇ ପ୍ରାସ୍ତ ପଛରେ ଗୋଡ଼ାଇବା (୯।୩) ମଧ୍ୟ ଉପେନ୍ଦ୍ରଙ୍କ ପ୍ରାତ୍ୟହିକ ଅନୁଭବରୁ ଆହରିତ ଏକ ଉପମାନ ।

କଳ୍ପଲତା ଓ ଲାବଣ୍ୟ କୋଷ ବ୍ୟତୀତ କଳ୍ପନାର ଲଘୁ ପକ୍ଷରେ ସଞ୍ଚରଣ କରି ଉପେନ୍ଦ୍ର ଆହରଣ କରିଥିବା ଉପମାନମାନଙ୍କ ମଧ୍ୟରେ ଉତ୍ଲଟକନକ କଦଳୀ (୨।୧୬) ଓ ହରିତାଳ ନଦୀର ପୁଳିନ (୫।୧୮) ଏହି ଦୁଇଟି ଜାନୁର ଉପମାନ ଭାବରେ, ନୀଳେନ୍ଦ୍ର ମଣିଲଗ୍ନା ଅଳକା ବଳିର ଉପମାନ ଭାବରେ (୧୫।୬) କାମ ରାଜାର ସୁବର୍ଣ୍ଣନଳି ନାସାର ଉପମାନ ଭାବରେ (୧୫।୧୪) ଓ ଲାବଣ୍ୟ ସରିତରେ ସଞ୍ଚାଳିତ ବାତ ଭଉଁରୀ ନାଭିର ଉପମାନଭାବେ (୧୫।୨୯) ପ୍ରଯୁକ୍ତ ହୋଇଛନ୍ତି । 'ରସଲେଖା'ରେ ଉପେନ୍ଦ୍ର କେତେକ କବିପ୍ରସିଦ୍ଧିକୁ ମଧ୍ୟ ପ୍ରଯୁକ୍ତ କରିଛନ୍ତି । ସେମାନଙ୍କ ମଧ୍ୟରେ ଚନ୍ଦ୍ର ଚନ୍ଦ୍ରମଣିକୁ ଦ୍ରବୀଭୂତ କରିବା (୩।୪୦, ୯।୨୧), ମଳୟ ପବନ ଦକ୍ଷିଣରୁ ସର୍ପର ବଦନମଧ୍ୟରେ ପଶିକରି ଆସିବା (୩।୪), ଅମୃତପାନ କରି-ବାକୁ ଯାଇ ରାହୁର ଶିରଚ୍ଛେଦ ହେବା (୫।୩୬, ୯।୧୩), ଚନ୍ଦ୍ରପ୍ରତି ଆସକ୍ତ ହୋଇ ମୃତ୍ୟୁ ବରଣ କଲା ପରେ ଶଶା ତା ହୃଦୟରେ ରହିବା (୧୦।୫୫), ଗୃତକ ଜଳଦ ପ୍ରତି ଏକ ନିଷ୍ଠ ଆକର୍ଷଣ ପୋଷଣ କରିବା(୯।୯, ୧୨।୧୮) ମାନ ସରୋବର ପ୍ରତି ହଂସ ଏବଂ ଚନ୍ଦ୍ରପ୍ରତି ଚକୋର ଆକର୍ଷିତ ହେବା ପୁଣି ଦ୍ୱିତୀୟାର ଚନ୍ଦ୍ରକୁ ଦର୍ଶନ କରି ସାରିବାପରେ 'ହରିତାଳ' ବା ଗଣେଶ ଚତୁର୍ଥୀର ଚନ୍ଦ୍ରକୁ ନ ଗୃହିଁବା (୧୨।୧୮) ଅତି ଅନ୍ୟତମ ।

ଶବ୍ଦମାନଙ୍କର ବିଚିତ୍ର ଇନ୍ଦ୍ରଜାଲ ସୃଷ୍ଟି କରିବାରେ ସାର୍ଥକତା ଲଭି କରିଥିବା ଉପେନ୍ଦ୍ର ରସଲେଖାରେ କେବଳ ସ୍ୱାତର ମାଲା 'ରମ'ର ବହୁବଚନ (ରମା) ଜପିବା (୧।୨୨), 'କୃଷ୍ଣକେଶୀ ଦନନ'ର ପ୍ରାନ୍ତ ତିନି ଅକ୍ଷର ଲୋପକରି (କୃଷ୍ଣକେଶୀ) କହିବା (୧।୨୬), ଅଙ୍ଗ, ଶୈଳ ଏବଂ କୁନ୍ତଳ ଏହି ତିନୋଟି ଶବ୍ଦରେ ନାୟିକାର ଅଙ୍ଗ ଏବଂ ବେଶମାନଙ୍କର ବ୍ୟଞ୍ଜନା କରିବା (୬।୨୪-୨୫), ପୁଣି ବଦନ ସମୀର ଫୁଙ୍କିବା (୮।୫) ଓ 'ବେନି ଦନ୍ତଗମନା' ସ୍ୱାତୀ (୨୧।୨୦) ଭଳି

ଦୃଷ୍ଟାନ୍ତରେ ପ୍ରୟୋଗ କରି ନାହାନ୍ତି, କାମ ସମରରେ ପରାଜିତା ତାଙ୍କ କାବ୍ୟ-ନାୟିକା ନାୟକ ହାତରେ ମଲ୍ଲୀଫୁଲଟିଏ ଦେବା ଭିତରେ (୧୪।୪୭) ଯେ ଚମତ୍କାର ବ୍ୟଞ୍ଜନାର୍ଥ ସୃଷ୍ଟି କରିବାକୁ ମଧ୍ୟ ଭୁଲିନାହାନ୍ତି ।

॥ ଛଅ ॥

ମଧ୍ୟକାଳୀନ ଓଡ଼ିଆ କାବ୍ୟ ପରମ୍ପରାରେ ପରିପୋଷିତ ପ୍ରକୃତି ଉପେନ୍ଦ୍ରଙ୍କ ରସଲେଖାରେ ମଧ୍ୟ ଅନୁରୂପ ଭାବରେ ଉତ୍କୀର୍ଣ୍ଣ ହୋଇଛି । ମଧ୍ୟକାଳୀନ କାବ୍ୟମାନଙ୍କରେ ଅବଶ୍ୟ ପ୍ରକୃତିର ଏକ ପରମ୍ପରାବଦ୍ଧ ରୂପ ସ୍ପଷ୍ଟ ହୋଇଯାଏ । ନୂତନତା ବ୍ୟତୀତ ପାରମ୍ପରିକତା ଏବଂ ତଲ୍ଲୀନତା ବ୍ୟତୀତ ବାଗାଡ଼ମ୍ବର ଏହି ପ୍ରକୃତି ଚିତ୍ରଣରେ ଅଧିକ ଉପଲବ୍ଧି ହୁଏ । ରୀତିକାବ୍ୟରେ ଏହି ପ୍ରକୃତି ବିଭିନ୍ନ ଭାବରେ ଯଥା, ଆଲମ୍ବନ ରୂପରେ, ଉଦ୍ଦୀପନ ରୂପରେ ପ୍ରକୃତିର ମାନବୀକରଣ ରୂପରେ ଓ ଉପମାନ ରୂପରେ ଚିତ୍ରିତ ହୋଇଥାଏ । ଏହି ପରିପ୍ରେକ୍ଷୀରେ 'ରସଲେଖା'ରେ ବର୍ଣ୍ଣିତ ହୋଇଥିବା ପ୍ରକୃତିର ବିଚାର କରାଯାଇପାରେ । ଏହି କାବ୍ୟରେ ପ୍ରକୃତିର ଆଲମ୍ବନ ଚିତ୍ର ଅପେକ୍ଷା ଉଦ୍ଦୀପନର ଚିତ୍ର ଅଧିକ ସ୍ପଷ୍ଟ । ବସନ୍ତ କାଳରେ ମଳୟପବନ ଓ ପକ୍ଷୀମାନଙ୍କର କଳରବ ରତିଚେଷ୍ଟାକୁ ଉଦ୍ଦୀପିତ କରେ (୧/୧୩-୧୪) । ବର୍ଷାର ଉଦ୍ଦୀପିତ ଅବସ୍ଥାକୁ ଅନୁଭବ କରି ବିଟ ଲମ୍ପଟ ଓ ମଧୁଲିଟ (ଭ୍ରମର) ଗଣିକା (ବାରାଙ୍ଗନା ଓ ଯୁଇଫୁଲ) ପ୍ରତି ଆସକ୍ତ ହୁଅନ୍ତି (୧୮/୪) । ଡାହୁକର 'କୋବା କୋବା' ଧ୍ୱନି ବିଚ୍ଛେଦିନୀ ରମଣୀର କାମଲାଳସା ବହୁଗୁଣିତ କରେ (୧୮/୫) । ସେହିପରି ରାତ୍ରିକାଳ ମଧ୍ୟ କାମ ଭାବକୁ ଉଦ୍ଦୀପିତ କରେ । ଏହି ରାତ୍ରି ଅଭିସାରିକା, ବିଟପୀ, ବାସକସଜ୍ଜା ଓ ବିରହୀ-ମାନଙ୍କ କାମ ଭାବନାକୁ ବହୁଗୁଣିତ କରେ (୧୩।୬) । ଅରଣ୍ୟ ମଧ୍ୟ ମନୁଷ୍ୟର କାମ ଭାବନାକୁ ଉଦ୍ଦୀପିତ କରେ । କୋକିଳର କୁହୁକୁହୁ ସ୍ୱର ହୃଦୟରେ କାମ ଅଗ୍ନିର ପୋଡ଼ାଇଦିଏ । ଭ୍ରମରମାନଙ୍କ ମଧୁମତ୍ତ ସ୍ୱର କନ୍ଦର୍ପର ଉଚ୍ଚାଟ ବାର୍ତ୍ତା ଦିଏ । ମନ୍ଦ ମନ୍ଦ ବହୁଥିବା ଦକ୍ଷିଣା ପବନ ବିଦେଶୀକୁ ଯନ୍ତ୍ରଣା ଦିଏ ଓ କପୋତମାନଙ୍କର ହୁଙ୍କାର ଧ୍ୱନି ରସିକମାନଙ୍କ ଅନ୍ତରରେ ବିପରୀତ ରତିର ଚେତନା ଖେଳାଇ ଦିଏ (୧୨-୫) । ପ୍ରକୃତି ଦେହରେ ଚେତନାର ଆରୋପ କରାଯାଇ ଏହାର ବର୍ଣ୍ଣନା କରାଗଲେ ପ୍ରକୃତିର ମାନବୀକରଣ ହୋଇଥାଏ । ରସଲେଖାରେ ଉପେନ୍ଦ୍ର ପ୍ରକୃତିର ଏହି ତତ୍ତ୍ୱଟିର ଚମତ୍କାର ଉପସ୍ଥାପନ କରିଛନ୍ତି । ସେ ପ୍ରଭାତ, ରାତ୍ରି, ବର୍ଷା ଓ ବନ ବର୍ଣ୍ଣନାରେ ପ୍ରକୃତିର ମାନବୀକରଣ ଚିତ୍ର ପ୍ରଦାନ କରିଛନ୍ତି । ପ୍ରଭାତ ବର୍ଣ୍ଣନା ପ୍ରସଙ୍ଗରେ କୁକୁଡ଼ା ଏବଂ ପକ୍ଷୀମାନଙ୍କୁ ଡାକୁଆ ଭାବରେ ଉପସ୍ଥାପନ କରି ଏମାନଙ୍କ ଦ୍ୱାରା ବିଟପୀ (ବୃକ୍ଷ ଓ ବାରାଙ୍ଗନା)ଙ୍କ

ହୋଡ଼ (କୋଟର ଓ କୋଳ ରୁ ଭୁଜଙ୍ଗ (ସର୍ପ ଓ ଉପପତି ବା ଜାର ପୁରୁଷ) ମାନଙ୍କୁ ଉଠିଯିବାକୁ କହିଲେ ଓ ଦ୍ୱିଜ (ବ୍ରାହ୍ମଣ) ମାନଙ୍କୁ ଶଯ୍ୟା ତ୍ୟାଗ କରିବାକୁ କହିଲେ (୮।୩୫-୩୭) । ପ୍ରଭାତରେ ରାତ୍ରିର ସଖୀ ଭାବରେ ତାରକର ମନନାୟନ କରି ଉପେନ୍ଦ୍ର ତାର ସଖୀ ବିଚ୍ଛେଦ ଜନିତ ବିଳାପକୁ ଫୁଟାଇଛନ୍ତି (୧୦।୧) । ସେହିପରି ପ୍ରଭାତ ବର୍ଣ୍ଣନା ଅବସରରେ ତାରାମାନଙ୍କୁ ପଟହ୍ନନା ନାରୀ, ୧୦।୨), ପକ୍ଷୀମାନଙ୍କୁ ବ୍ରାହ୍ମଣ (୧୦।୩), ପଦ୍ମକୁ ବିଦେଶରୁ ଫେରିଥିବା ସ୍ୱାମୀର ପତ୍ନୀ (୧୦।୪) ଓ ଶଙ୍ଖ 'ଦର' ନାମକୁ ସାର୍ଥକ କରୁଥିବା ଡାକୁଆ (୧୪।୨୫) ଆଦି ବର୍ଣ୍ଣନା ମଧ୍ୟରେ ଉପେନ୍ଦ୍ର ପ୍ରକୃତିର ମାନବୀକରଣ କରିଛନ୍ତି । ସେହିପରି ବର୍ଷା ବର୍ଣ୍ଣନା ଅବସରରେ କୂଳକୁ ଅତିକ୍ରମ କରିବାକୁ ଇଚ୍ଛା କରି ବହୁଥିବା ନଦୀକୁ କୁଳ ମର୍ଯ୍ୟାଦା ଲଂଘନ କାରିଣୀ ନାରୀ (୧୮।୪) ଏବଂ ବନ ବର୍ଣ୍ଣନ ଅବସରରେ ଲତା ଓ ବୃକ୍ଷମାନଙ୍କୁ ବସନ୍ତ ରୂପକ ସ୍ୱାମୀଙ୍କ ଆଶ୍ଳେଷରେ ଆନନ୍ଦିତା ସୁନ୍ଦରୀ ରମଣୀ(୪।୬-୭) କହିବା ଦ୍ୱାରା ପ୍ରକୃତିର ମାନବୀକରଣ ସ୍ପଷ୍ଟ ହୋଇଛି । ରାତି ଉପେନ୍ଦ୍ରଙ୍କ ଲେଖନୀରେ ଦୂତୀଟିଏ ସାଜି ନାୟକ ନାୟିକାଙ୍କ ମିଳନର ଆୟୋଜନ କରିଛିଏ (୧୩।୧୬) । ଏହି ପ୍ରକୃତି ବର୍ଣ୍ଣନା ଅବସରରେ ଉପେନ୍ଦ୍ର ନିଜ କଳନା ଚମତ୍କାର ଦେଖାଇବାକୁ ମଧ୍ୟ ଭୁଲି ନାହାନ୍ତି । ମେଘ ସହ ବାଘ (୧।୧) ଏବଂ ହରିଣୀ (୧।୨)ର ସାଙ୍ଗୋପାଙ୍ଗ ତୁଳନା ଏହାର ଏକ ସୁନ୍ଦର ଉଦାହରଣ । ଏତଦ୍‌ବ୍ୟତୀତ ଉପମାନ ଭାବରେ ଏହି ପ୍ରକୃତି ଉପେନ୍ଦ୍ର ଲେଖନୀରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଛି । ମେଘ ଓ ଏହାର ଆନୁଷଙ୍ଗିକ ଉପାଦାନ ବିଜୁଳି ଓ ବଜ୍ର, ମେରୁ ପର୍ବତ, ସାଗର, ନଦୀମାନଙ୍କ ମଧ୍ୟରୁ ଯମୁନା ଓ ଗଙ୍ଗା, ଫୁଲମାନଙ୍କ ମଧ୍ୟରେ ଶ୍ୱେତଚମ୍ପା, ପଦ୍ମ, କଇଁ, କେତକୀ, ବଉଳ, ପାଟଳୀ ଓ ଫଳମାନଙ୍କ ମଧ୍ୟରେ ମାଡ଼ୁଲଙ୍ଗ, ନଡ଼ିଆ, ବେଲ, କରୁଣା, କରକ ଓ ବିମ୍ବ ଆଦିକୁ ଉପେନ୍ଦ୍ର ଉପମାନ ରୂପରେ ପ୍ରୟୋଗ କରିଛନ୍ତି ।

'ରସଲେଖା'ରେ କବି ଉପେନ୍ଦ୍ର ନିଜ କାବ୍ୟାଦର୍ଶ ସଂପର୍କରେ ସଂକ୍ଷିପ୍ତ ପରିଚୟ ଦେଇଛନ୍ତି । କାବ୍ୟର ଆରମ୍ଭରେ ସେ ଛଅଗୋଟି ଶ୍ଳେଷପଦ ମାଧ୍ୟମରେ ହରି ଓ ହରଙ୍କର ସ୍ତୁତି କରିଛନ୍ତି । ମାତ୍ର ବସ୍ତୁ ନିର୍ଦ୍ଦେଶ ପରମ୍ପରା ରସଲେଖାରେ ପରିଦୃଶ୍ୟ ହୁଏ ନାହିଁ । ସେ କାବ୍ୟର ବିଭିନ୍ନ ସ୍ଥାନରେ ସାଧୁମାନଙ୍କୁ ସ୍ତୁତି କରିଛନ୍ତି ଓ ଖଳମାନଙ୍କୁ ନିନ୍ଦା କରିଛନ୍ତି । ତାଙ୍କ ଦୃଷ୍ଟିରେ ଖଳମାନେ 'ଉତ୍ତମ କଥା ପ୍ରସଙ୍ଗ'କୁ ମଧ୍ୟ ନୋହିଲା ବୋଲି କହି ଅନାଦର କରନ୍ତି, ମାତ୍ର ରାହୁ ଦ୍ୱାରା ଗ୍ରସ୍ତ ହୋଇଥିବା ଚନ୍ଦ୍ରରୁ ଦେବତାମାନେ ଅମୃତ ଆହାର କଲା ପରି ଖଳମାନଙ୍କ ଦ୍ୱାରା ଦୋଷ ଦୁଷ୍ଟ ଏହି ସତ୍‌କାବ୍ୟରୁ ଗ୍ରାହକ ରସିକମାନେ ମନୋମତ ରସ ପାଇ-ପାରିବେ (୧୮-୯) ପରିହାସରେ ସମସ୍ତ ଅତିବାହିତ କରୁଥିବା ଏହି ଖଳମାନଙ୍କୁ

ଦେଶ କବି ଭସ୍ମ କରିବାକୁ ସମୁଚିତ ମନ୍ତ୍ରୀ ନାହାନ୍ତି (୨୨।୧୭)। ରସଲେଖା'ର କାର୍ଯ୍ୟ ସହୃଦୟମାନଙ୍କୁ ଉପେନ୍ଦ୍ର, ରସିକ (୫।୧, ୧୦।୬୩, ୨୧।୨୦, ୨୨।୧୭), ସାଧୁ (୭।୧, ୧୩।୧୭, ୨୨।୧୭), ବୁଧ (୧୩।୨୦), ସୁଜନ (୧।୧୦) ଏବଂ କବି (୩।୧) ଏହି ସମସ୍ତ ଉପାଧିରେ ବିଭୂଷିତ କରିଛନ୍ତି। ରସଲେଖାର ବୈଶିଷ୍ଟ୍ୟ ସମ୍ପର୍କରେ ଉପେନ୍ଦ୍ରଙ୍କ ମନ୍ତବ୍ୟ ହେଉଛି ଏହା ସହୃଦୟମାନଙ୍କର ମନୋରଞ୍ଜନ ନିମିତ୍ତ ସକ୍ଷମ ହୋଇପାରୁଥିବା ଏକ କାବ୍ୟ (୧।୧୦)। ଏହି କାବ୍ୟର ରସ ଉଭୟ କର୍ଣ୍ଣ ଏବଂ ମନର ଆନନ୍ଦ ବର୍ଦ୍ଧନ କରେ (୫।୧)। ରସିକମାନଙ୍କ ଚିତ୍ତକୁ ମୋହିତ କରିବ ପାଇଁ ଏହା ମଧ୍ୟରେ ଯଥେଷ୍ଟ ଉପାଦାନ ଅଛି (୧୦।୬୩)। ଏଥିରେ ଉଭୟ 'ରହସ୍ୟ ଚରିତ' ଓ 'ରସ' ସମ୍ପୂର୍ଣ୍ଣ ହୋଇ ରହିଛି (୨୨।୧୭)। ଏହିଭଳି ଏକ ମହାକାବ୍ୟ ସମଗ୍ର ଦେଶରେ ଖ୍ୟାତି ଲଭ କରିବ ବୋଲି କବି ଆଶା ପୋଷଣ କରିଛନ୍ତି (୨୨। ୧୭)।

ରୀତି କାବ୍ୟ ମାନଙ୍କରେ ଲକ୍ଷ୍ୟ କରାଯାଉଥିବା କାଳ୍ପନିକତା ଓ ଅଲୌକିକତା 'ରସଲେଖା'ରେ ମଧ୍ଯ ଦୁଷ୍ପ୍ରାପ୍ୟ ନୁହେଁ। ଏହି କାବ୍ୟର ପୃଷ୍ଠଭୂମି 'ରସୋଦୟବନ' କବି କଳ୍ପନାରେ ଏକ ଅଲୌକିକ ଘଟଣା ସୃଜନର ଜନନୀ। କାବ୍ୟ ନାୟକ ବିଶ୍ୱଭୂତ ନାୟିକା ରସଲେଖାକୁ ଲଭ କରିବା ନିମିତ୍ତ କିନ୍ନର ସଙ୍ଗରେ ମୈତ୍ରୀ ସ୍ଥାପନ କରିବା ମଧ୍ୟ ଅନ୍ୟ ଏକ ଅଲୌକିକ ଆଖ୍ୟାନ। ଅମ୍ବିକା ନାୟକର ହାତ ଧରି ବିଟର ତୃତୀୟ ପ୍ରହରରେ ରସୋଦୟ ବନରେ ଛାଡ଼ିଦେବା ପ୍ରସଙ୍ଗ ମଧ୍ୟ ଅଲୌକିକତାର ଅନ୍ୟ ଏକ ଉଦାହରଣ। ନାରଦ ନାୟକ ନାୟିକାଙ୍କ ବିବାହ ଅୟୋଜନ ପାଇଁ ଯୋଗିନୀ ପଠାଇବା ପୁଣି ନିଜେ କର କନ୍ୟାଙ୍କୁ ବିବାହ ଦେବା ଆଦି ଘଟଣା ଅଲୌକିକ ତାର ପରିଚୟ ଦିଏ। ନାୟକକୁ ନାୟିକା ନିକଟରୁ ଦୂରେଇ ଦେଇ ନିଶାକର ଋଷି ସୁଧାନିଧିପୁରକୁ ଘେନି ଅସିବା ଏବଂ କମିସାଞ୍ଜନଙ୍କ ପୂର୍ବ ଜନ୍ମ ପ୍ରସଙ୍ଗ କହିବା ମଧ୍ୟ ଅଲୌକିକତା ପ୍ରଦର୍ଶନର ଅନ୍ୟ ଦୁଇଟି ସଫଳ ଉଦାହରଣ। ଅଲୌକିକତା ବ୍ୟତୀତ ଏହି କାବ୍ୟରେ କେତେକ କାଳ୍ପନିକ ଉପାଦାନ ମଧ୍ୟ ମିଳେ। ବର ନିର୍ବାଚନ ବେଳେ ଦେବମାନଙ୍କ ନାମ ଉଚ୍ଚାରଣରେ ଏହି କାଳ୍ପନିକତା ସ୍ପଷ୍ଟ ହୋଇଯାଏ (୧୨ । ୧୫)। ସୁଧାନିଧିପୁରର ରଜା ପୁଅ ବିଶ୍ୱଭୂତକୁ ଖୋଜିବାପାଇଁ ବିଭିନ୍ନ ଦେଶକୁ ପଠାଇଥିବା ଦୂତଙ୍କ କଥା ଉଲ୍ଲେଖ କଲାବେଳେ ଉପେନ୍ଦ୍ର କେତେକ ଦେଶମାନଙ୍କର ନାମୋଲ୍ଲେଖ କରିଛନ୍ତି (୧୭ । ୧-୨)। ଏହା ବ୍ୟତୀତ ଅନେକ କାଳ୍ପନିକ ଉପାଦାନ ରସଲେଖାରେ ଉପମାନ ରୂପେ ବ୍ୟବହୃତ ହୋଇଥିବାର ଦେଖିବାକୁ ମିଳେ। କାବ୍ୟର ଦୁଇଟି ସ୍ଥାନରେ ଦୁଇଟି ପୌରାଣିକ ଉପାଖ୍ୟାନ କେବଳ ମାତ୍ର ବ୍ୟଞ୍ଜନାତ୍ମକ ଭାବରେ ଉପସ୍ଥାପିତ ହୋଇ ଏହାର କଥା ବିକାଶରେ

ସହାୟକ ହୋଇଛନ୍ତି । ଲୀଳାବତୀ ସ୍ୱୟମ୍ବର (୧।୭୭-୭୭) ଏବଂ କଦମ୍ବ ତରୁତଳେ ରାଧାକୃଷ୍ଣଙ୍କ ମିଳନ ଲୀଳା (୭।୨) ଏହି ଦୁଇଟି ପ୍ରସଙ୍ଗ କାବ୍ୟର କଥା ଭାଗକୁ ଅଧିକ ବଳିଷ୍ଠ କରିଛି । ଏହା ବ୍ୟତୀତ କାବ୍ୟର ବିଭିନ୍ନ ସ୍ଥାନରେ ପ୍ରକୃତି ଚିତ୍ରଣ ଓ ପରିବେଶ ଅତି ସଂକ୍ଷିପ୍ତ ଭାବେ ବର୍ଣ୍ଣିତ ହୋଇ ଏହାର କାବ୍ୟୋତ୍କର୍ଷ ସୃଷ୍ଟିରେ ସହାୟକ ହୋଇଛନ୍ତି ।

'ରସଲେଖା'ରେ ସାମାଜିକ ବିଷୟସବୁ ମଧ୍ୟ ଉପେନ୍ଦ୍ର ଅବମାନନା କରି ନାହାନ୍ତି । ସମାଜର ବିଭିନ୍ନ ବିଧି ନିଷେଧକୁ କବି ଅତି ଚମତ୍କାର ଭାବରେ ଏହି କାବ୍ୟରେ ପ୍ରସ୍ଫୁଟନ କରିଛନ୍ତି । 'ରସଲେଖା'ରୁ ଜଣାଯାଏ ଯେ ତତ୍କାଳୀନ ସମାଜରେ କନ୍ୟାର ପୁଷ୍ପୋଦୟ କାଳରେ ବିଭିନ୍ନ 'ମଙ୍ଗଳବିଧି' ପାଳିତ ହେଉଥିଲା (୨।୨୦) । ଶୁଭଲଗ୍ନ ଦେଖି ବରକନ୍ୟାଙ୍କ ବିବାହ କରିଯାଉଥିଲା । ବେଦୀରେ ପୁରୋହିତ ଏହି ବିବାହକର୍ମ ସଂପନ୍ନ କରୁଥିଲେ । ବିଭିନ୍ନ ପ୍ରକାର ବାଦ୍ୟ ଏବଂ ବାଣ ଝଣାଣରେ ଏକ ଆମୋଦିତ ପରିବେଶ ସୃଷ୍ଟି ହେଉଥିଲା । ପତାକା ମାନେ ପବନରେ ଫରହର ହେଉଥିଲେ ଏବଂ ଗଣିକାମାନେ ମଙ୍ଗଳ ସଙ୍ଗୀତ ଗାନ କରି ନୃତ୍ୟ କରୁଥିଲେ (୧୨।୨୩-୨୫) । ବିବାହ ପରେ କନ୍ୟାଗୃହରେ ଯେବେ ବରକନ୍ୟା ରହନ୍ତି ତେବେ ପ୍ରଥମ ବର୍ଷପରେ ପ୍ରଥମ ସନ୍ତାନୋତ୍ପତ୍ତି ପର୍ଯ୍ୟନ୍ତ 'କାଚଚାଳ ପୁର' ରେ ରଖିବାର ବ୍ୟବସ୍ଥା ଥିଲା ଏବଂ ସନ୍ତାନ ସୃଷ୍ଟିପରେ ବର ନିଜ ରାଜ୍ୟକୁ ଯିବାର ବ୍ୟବସ୍ଥା ଥିଲା (୧୪।୫୮-୬୨) । ନାୟିକାର ଋତୁକାଳରେ (୧୯।୧-୩) ଏବଂ ଦିବସରେ (୧୬।୧୫) ଯୁଗଳ ମିଳନ ନିଷିଦ୍ଧ ଥିଲା । ବର କନ୍ୟାଙ୍କ ବିବାହ ପରେ କନ୍ୟାପିତା ଅନେକ ଯୌତୁକ ଦେବାର ମଧ୍ୟ ବ୍ୟବସ୍ଥା ଥିଲା (୨୧।୧୧-୧୩) । ଶୁଭବେଳା ପ୍ରତି ତତ୍କାଳୀନ ସମାଜରେ ଅଧିକ ବିଶ୍ୱାସ ଥିଲା । ତେଣୁ ବିବାହବେଳେ (୧୨।୨୩) ଓ କନ୍ୟାବିଦାୟ ବେଳେ (୨୧।୧୧) ଲଗ୍ନ ଗଣି ଶୁଭ ବେଳରେ କାର୍ଯ୍ୟ ସମ୍ପାଦନ କରିଯାଉଥିଲା । ମିଳନ ପାଇଁ ମଧ୍ୟ ନାୟକ ନାୟିକା 'ସୁମଙ୍ଗଳ ବେଳ' କୁ ପ୍ରାଧାନ୍ୟ ଦେଉଥିଲେ (୨୨।୧୨) । ଶକୁନ ଶାସ୍ତ୍ର ପ୍ରତି ମଧ୍ୟ ସେତେବେଳେ ସାଧାରଣ ଜନତାର ଆସ୍ଥାଥିଲା(୨୧।୧୪)। ବିଭିନ୍ନ ମନ୍ତ୍ର, ଯନ୍ତ୍ର, ଔଷଧ ଏବଂ କବଚ ପ୍ରତି ମଧ୍ୟ ସାଧାରଣ ଜନତାର ଆଗ୍ରହ ସମଧିକ ଥିଲା (୬।୫-୯, ୧୭।୩) । ସେତେବେଳେ ଦାସୀମାନଙ୍କୁ ଅନ୍ୟ ଦେଶରୁ ଟଙ୍କାଦେଇ କିଣି ଆଣିବାର ବ୍ୟବସ୍ଥା ମଧ୍ୟ ଥିଲା (୨।୪୨) । ଏହି ଦାସୀମାନେ ନାୟିକାର ସମସ୍ତ ସେବାକାର୍ଯ୍ୟରେ ନିଯୁକ୍ତା ଥିଲେ ।

'ରସଲେଖା'ରେ ନାୟକ ନାୟିକାଙ୍କ ସଂପର୍କକୁ ସାନ୍ଦ୍ର ତଥା ନିବିଡ଼ କରିବା ପାଇଁ ସଖୀମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସଂଖ୍ୟାରେ ଆଠଜଣ ଥିବାରୁ

ଏମାନେ 'ଅଷ୍ଟସଖୀ' ନାମରେ ପରିଚିତ । ଏମାନଙ୍କର ନାମ ହେଉଛନ୍ତି ବିମଳା, କମଳା, ପରିମଳା, ବିଧୁମାଳା, ଗୁରୁଶୀଳା, ମଞ୍ଜୁଳା, ସୁଶୀଳା ଓ ପ୍ରେମଶୀଳା । ଏହି ସଖୀମାନଙ୍କୁ ଦେଶାନ୍ତରରୁ ଧନ ଦେଇ ରଥଲେଖାର ପିତା ଝିଅର ପରିଚର୍ଯ୍ୟା ପାଇଁ କିଣି ଆଣିଥିଲେ (୮।୪୨) । ଏହି ଅଷ୍ଟସଖୀମାନେ ନାୟିକାର ପ୍ରାଣପରି ଅନ୍ତରଙ୍ଗ (୮ । ୧୧) । ପିଲାବେଳେ ଏମାନେ ନାୟିକା ସହ ଏକାଠି ଖେଳନ୍ତି (୧ । ୪୪) । ନାୟିକା ପ୍ରତି ସେବାମନୋବୃତ୍ତି ଏମାନଙ୍କର ପ୍ରଶଂସନୀୟ । ନାୟିକାକୁ ଏମାନେ ବେଶ କରି ଦିଅନ୍ତି (୧୩ । ୧-୧୪) ଓ ମିଳନପାଇଁ କେଳି ଗୃହ ସଜାଇ ଦିଅନ୍ତି (୧୩ । ୧୫) । ଏମାନେ ପୁଣି ଚତୁରୀ ଓ ବିନୋଦ ପ୍ରବୀଣା । ନାୟିକାର ପ୍ରଥମ ପୁଷ୍ପୋଦୟରେ ଏମାନେ ନାୟିକା ସହ ବିନୋଦ କରନ୍ତି (୨ । ୧୯-୨୦) । ମଧୁଶଯ୍ୟା ପୁରରେ ନାୟିକାକୁ ଛାଡ଼ିଦେଲା ବେଳେ ଯୁଗଳ ଦମ୍ପତିଙ୍କୁ ବିନୋଦ କରିବାକୁ ଏମାନେ ଭୁଲନ୍ତି ନାହିଁ (୧୪ । ୧-୧୭) । ଏମାନେ ପୁଣି 'ଉକ୍ତି ପ୍ରତି ଉକ୍ତି'(୪ । ୧୦) ଓ 'ଇଙ୍ଗିତ ବାଣୀ'(୪ । ୨୯) ପଣ୍ଡିତା, ନାଗେଶ୍ୱର (୪ । ୧୧), ପୁନାଗ (୧୨/୪) ମଲ୍ଲୀ (୪ । ୧୩) ମୁକୁନ୍ଦ ଓ ମାଧବୀ (୪ । ୧୪), ଚୁଲିଅନ (୪ । ୧୫), ସୁରଭି (୪ । ୧୫), ଜାତି ଓ ସୁରଭି (୪ । ୧୬), ନବମାଳିକା (୪ । ୧୭), ଅଶୋକ (୪ । ୧୮), ଧବ (୪ । ୧୯), ତିଳକ (୪ । ୨୦), କନିୟର (୪ । ୨୧), ଦାସୀ (୪ । ୨୨), ବନ୍ଧୁଜୀବ (୪ । ୨୩) ଓ ବକୁଳ (୪ । ୨୪) ଆଦି ଫୁଲମାନଙ୍କୁ ନେଇ ଏହି ସଖୀମାନେ ନାୟିକା ସହ ବିନୋଦ କରିବାକୁ ଭୁଲନ୍ତି ନାହିଁ । ଏହା ଦ୍ୱାରା ତାଙ୍କର ଗଭୀର ଶବ୍ଦ ଜ୍ଞାନ ଓ ଅସାଧାରଣ ବିଦ୍‌ବତ୍ତା ସ୍ପଷ୍ଟ ହୋଇଯାଏ । ନାୟିକାର ବିରହ କାଳରେ କୋକିଳ (୮ । ୬-୭), ଚନ୍ଦ୍ର (୮ । ୮-୧୬) ଏବଂ ମଳୟ (୮ । ୧୭-୧୯) କୁ ନେଇ ଏହି ସଖୀମାନେ ମଧ୍ୟ କମ୍ ବାକ୍ ବୈଦଗ୍ଧ୍ୟ ପ୍ରକାଶ କରିନାହାନ୍ତି । ଏମାନେ ପୁଣି ନାୟିକାର ବିଚ୍ଛେଦ ଦୁଃଖ ନାୟକକୁ ଶବ୍ଦ ଚାତୁର୍ଯ୍ୟ ମାଧ୍ୟମରେ ଜଣାନ୍ତି (୧୧ । ୧୭-୨୦) । ଏହି ସଖୀମାନେ ଅସାଧାରଣ ବୁଦ୍ଧିମତୀ । ନାୟକ ଏବଂ ନାୟିକାଙ୍କ ପ୍ରଥମ ମିଳନରେ ନାୟକ ପ୍ରତି ଆସକ୍ତା ନାୟିକାର 'ଗୁରୁତା' ରକ୍ଷା—କରିବାପାଇଁ 'ମ ତାହକରି' ବୋଲି କହି ନାୟକ ପାଖରୁ ଫେରି ଆସନ୍ତି (୫ । ୩୫) । ଅତି ଚତୁରତାର ସହିତ ଶାୟିତ ନାୟକର ମସ୍ତକ ତଳୁ ପତ୍ର ନେଇ ଖଡ଼ି ଅକ୍ଷରରେ ନାୟକକୁ କଣ୍ଟଇବାପାଇଁ 'ଅତୁରି କେଉଁ କାଳରେ କାର୍ଯ୍ୟ ପାଏନା' ଲେଖା ମାଧ୍ୟମରେ ପ୍ରବୋଧନା ଦିଅନ୍ତି (୬ । ୩୯-୪୧) । ପଦ୍ମ ଫୁଲ ଭିତରେ ଅତି ଚତୁରତାର ସହିତ ଏମାନେ ପୁଣି ନାୟିକାର ପତ୍ର ନାୟକକୁ ଦେଇଦିଅନ୍ତି (୧୦ । ୫-୧୭) । ମିଳନ ଉନ୍ମାଦରେ ଉଚ୍ଛଳିତା ନାୟିକାକୁ ଏହି ସଖୀମାନେ ପୁଣି 'ଗୁରୁତା' ରଖିବାକୁ ପରାମର୍ଶ ଦିଅନ୍ତି (୮ । ୨) । ନାୟିକା ଉଦ୍ଦେଶ୍ୟରେ ନାୟକ ଗାଉଥିବା

ଗୀତକୁ ନାୟିକା ବୁଝିବା ପୂର୍ବରୁ ପ୍ରଥମେ ସଖୀ ବୁଝିପାରେ ଓ ନାୟକକୁ ସାନ୍ତ୍ୱନା ଦେବାକୁ ବ୍ୟଗ୍ର ହୁଏ (୯ । ୨୭-୨୮) । ଏହି ବୁଦ୍ଧିମତୀ ସଖୀମାନେ ନାୟକ ଚାଲିଗଲା ପରେ ବିଚ୍ଛେଦିନୀ ନାୟିକାକୁ କେବଳ ସାନ୍ତ୍ୱନା ଦିଅନ୍ତି ନାହିଁ, (୧୭ । ୨୨) ଭାବପ୍ରବଣା ନାୟିକାର ମନୋଦଶା ବୁଝି ଲେଖିଥିବା ପତ୍ରକୁ ମିଛରେ ଦୂତ ମାଧ୍ୟମରେ ନାୟକ ନିକଟକୁ ପଠାଇଲେ ବୋଲି ମଧ୍ୟ କହନ୍ତି । (୨୦ । ୧୭-୧୯) । ଏହି ସଖୀମାନେ ରସଲେଖା ପ୍ରତି ଏକାଧାରରେ ସ୍ନେହ, ସହୃଦୟତା, ଅନ୍ତରଙ୍ଗତା ଓ ଏକନିଷ୍ଠ ସେବା ମନୋବୃତ୍ତିକୁ ସମଗ୍ର କାବ୍ୟରେ ବ୍ୟକ୍ତ କରିଛନ୍ତି । ନିଜ ପାଇଁ ନୁହେଁ, ନାୟକ ନାୟିକାଙ୍କ ଆନନ୍ଦ ପାଇଁ ସେମାନେ ନିଜର ସମଗ୍ର ଜୀବନ କାଳ ଅର୍ପଣ କରିବାକୁ କୁଣ୍ଠିତା ହୁଅନ୍ତି ନାହିଁ । ଯୁଗଳ ପ୍ରେମୀଙ୍କ ମିଳନାନନ୍ଦରେ ହିଁ ଏହି ଅନ୍ତଃସ୍ପର୍ଶକାରିଣୀ ସଖୀମାନେ ଆନନ୍ଦିତା ହୁଅନ୍ତି ଏବଂ ସେମାନଙ୍କ ବିଚ୍ଛେଦରେ ଏମାନେ ବାହାରେ ଧୈର୍ଯ୍ୟ ଧରି ତାଙ୍କୁ ସାନ୍ତ୍ୱନା ଦେଉଥିଲେ ମଧ୍ୟ ଅନ୍ତର ଭିତରେ ବେଦନା ଓ ଦୁଃଖ ଅନୁଭବ କରନ୍ତି ।

ନାୟକ ନାୟିକାଙ୍କ ଏକନିଷ୍ଠ ପ୍ରେମପରକ ଦେହଜ ମିଳନର ଅନୁପମ କେଳି ଭବନରେ ଉପେନ୍ଦ୍ରଙ୍କ 'ରସଲେଖା' 'ଦବାରସ' (୧୦ । ୧୭) ରେ ସୁରଭିତ ଏକ ଅନୁପମ ପୁଷ୍ପମାଲ୍ୟ । କାବ୍ୟ ଉପାଦାନ ରୂପକ ପୁଷ୍ପମାନଙ୍କର ବିଭିନ୍ନତା ସତ୍ତ୍ୱେ ଏକ ନିରବଚ୍ଛିନ୍ନ ପ୍ରେମସୂତ୍ରରେ ଏହାର ପ୍ରତିଟି ପୁଷ୍ପ ଗ୍ରଥିତ ଓ ସୁବିନ୍ୟସ୍ତ । ଆଖ୍ୟାନ ଭାଗର ପାରମ୍ପରିକ ଉପସ୍ଥାପନ ସତ୍ତ୍ୱେ ଏକନିଷ୍ଠ ପ୍ରେମ ଆବେଦନର ସାନ୍ଦ୍ରତା, ଶବ୍ଦ ସଂଯୋଜନା ଓ ଅର୍ଥ ଦ୍ୟୋତନାର ଚମତ୍କାରିତା, ଉପମାନ ପ୍ରୟୋଗର ସିଦ୍ଧହସ୍ତତା ଏବଂ ପ୍ରକୃତିର କମନୀୟ ଆଲେଖ୍ୟ ଅଙ୍କନରେ କୃତବିଦ୍ୟତା ଏହି କାବ୍ୟକୁ ଏକ କଳାତ୍ମକ ପ୍ରତିଷ୍ଠା ଦେଇପାରିଛି ।



ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ରେଭେନ୍ସା ପ୍ରାତଃ ମହାବିଦ୍ୟାଳୟ, କଟକ

# ‘ରସଲେଖା’ କାବ୍ୟରେ ପୌରାଣିକ ଉପାଦାନ

॥ ଡ଼ଃ ସଚ୍ଚିଦାନନ୍ଦ ମିଶ୍ର ॥

---

ଭାରତୀୟ ସାହିତ୍ୟରେ ପୁରାଣ ଗ୍ରନ୍ଥର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଛି । ଅଷ୍ଟାଦଶ ପୁରାଣ ଓ ଉପ ପୁରାଣ ହିନ୍ଦୁ ଧର୍ମର ମୂଳାଧାର ଭାବରେ ସ୍ୱୀକୃତ । ଆମ ସଭ୍ୟତା ଓ ସଂସ୍କୃତି ଚେତନାକୁ ଜନସାଧାରଣଙ୍କର ନିକଟବର୍ତ୍ତୀ କରାଇବାର ଦାୟିତ୍ୱ ଏହା ଉପରେ ନ୍ୟସ୍ତ । ଭାରତୀୟ ଜନଜୀବନର ଆଦର୍ଶ, ବିଶ୍ୱାସ ଏବଂ ଚଳଣିର ପ୍ରତିଛବି ଏହା ବହନ କରିଥାଏ । ପୁନଶ୍ଚ ପୁରାଣ ସାମାଜିକ, ରାଜନୈତିକ ଓ ପ୍ରାକୃତିକ ଅବସ୍ଥାର ବର୍ଣ୍ଣନା କରି ମନୋଜ୍ଞ ଅଦ୍ଭୁତ କାହାଣୀ ମାଧ୍ୟମରେ ନୈତିକ ଚେତନା ସୃଷ୍ଟି କରିବାରେ ସହାୟକ ହୋଇଥାଏ । ପୁରାଣ ଗୁଡ଼ିକରେ ସର୍ବପ୍ରକାର ବୌଦ୍ଧିକ ବ୍ୟବହାରିକ, ନୈତିକ ଓ ସାଂସ୍କୃତିକ ଗବେଷଣାର ଇତିହାସ ସରସ କଥା ବସ୍ତୁ ମଧ୍ୟରେ ଉପସ୍ଥାପିତ ହୋଇ ସାମାଜିକ ଜୀବନକୁ ସୁପଥଗାମୀ କରାଯାଇଥାଏ । ଆକର୍ଷଣୀୟ ଚରିତ୍ର ରୂପାୟନ, ବୁଦ୍ଧିଗମ୍ୟ ଉପମାରୂପକର ପ୍ରୟୋଗ ଏବଂ କାବ୍ୟିକ ବର୍ଣ୍ଣନା ରୀତି ଥାଇ ପୁରାଣ ହୃଦୟକୁ ଯେପରି ରସସିକ୍ତ କରେ ମସ୍ତିଷ୍କକୁ ସେହିପରି ଉନ୍ନତ ଓ ବୁଦ୍ଧିଦୀପ୍ତ କରେ । ଅତୀତ ଭାରତର ଯୁଗଜନ୍ମା ମନୀଷୀମାନେ ଏ ଦେଶର ସଭ୍ୟତା, ସଂସ୍କୃତି ଓ ସମାଜ ଗଠନରେ ଯେଉଁ ସବୁ ପ୍ରୟତ୍ନ କରିଯାଇଛନ୍ତି ପୁରାଣ ଗାଥାରୁ ତାହାର ସୁବିସ୍ତୃତ ପରିଚୟ ମିଳିଥାଏ । ପୁରାଣ ଗୁଡ଼ିକରେ ସତ୍ୟ, ତ୍ୟାଗ, କର୍ତ୍ତବ୍ୟବୋଧ, ସଂଯମ ମାନସିକସୌନ୍ଦର୍ଯ୍ୟ ଏବଂ ବିଭିନ୍ନ ପ୍ରକାର ଭାବନିଷ୍ଠା ସମ୍ବନ୍ଧରେ ଯେଉଁ ପ୍ରକାର ଚିତ୍ରଣ ରହିଛି ତାହା ପାଠକ ଚିତ୍ତକୁ ଭାବପୂରିତ କରିଥାଏ । ଜୀବନ ଓ ଜଗତକୁ ସଫଳମାର୍ଗ ଦର୍ଶନ କରାଇବା ପାଇଁ ଏବଂ ମାନବିକତାର କଲ୍ୟାଣ ପାଇଁ ସାରଗର୍ଭକ ଉପଦେଶ ଗୁଡ଼ିକୁ ବ୍ୟବହାରିକ କ୍ଷେତ୍ରରେ ପରିଫଳିତ କରାଇବାର ପ୍ରେରଣା ଏହା ଦେଇଥାଏ । ବେଦ- ବେଦାନ୍ତମତ ପୁରାଣ ତାତ୍ତ୍ୱିକ, କ୍ଲିଷ୍ଟ ଏବଂ ବ୍ୟଞ୍ଜନା ପୂର୍ଣ୍ଣନହୋଇ ସରଳ ବ୍ୟାଖ୍ୟା ଓ ସାବଲୀଳ ଭାବ ଭାଷା ପ୍ରୟୋଗ ହେତୁ ସର୍ବଜନବୋଧ୍ୟ, ମନଛୁଆଁ ଅଲୌକିକ-କାଳ୍ପନିକ କାହାଣୀ କହି ସମସ୍ୟା ସମାଧାନର ଇଙ୍ଗିତ ଦେଇଥିବାରୁ ତାହା ସାଧାରଣ ଜନତାର ମନ ଆକର୍ଷଣ କରିଥାଏ । ତେଣୁ ଭାରତୀୟ ସମାଜ ଧର୍ମ, ସାହିତ୍ୟ ଏବଂ ଆଧ୍ୟାତ୍ମିକତାର

ବଂଶରେ ପୁରାଣ ଗୁଡ଼ିକର ଦାନ ସର୍ବାଗ୍ରେ ସ୍ମରଣୀୟ । ପରବର୍ତ୍ତୀକାଳରେ ପୁରାଣ ସାହିତ୍ୟ ସଂସ୍କୃତ ଓ ଆଞ୍ଚଳିକ ଭାଷାମାନଙ୍କର ସାହିତ୍ୟକୁ ବହୁଭାବରେ ପ୍ରଭାବିତ କରିଛି । ପୁରାଣର ଅବଦାନରେ ଭାରତୀୟ ଦୃଶ୍ୟ ଓ ଶ୍ରବ୍ୟ କାବ୍ୟ ସମୃଦ୍ଧ ହୋଇଛି । ପୁରାଣର ଅଲୌକିକ-କଳ୍ପନିକ କଥାବସ୍ତୁ, ଚରିତ୍ର, ବର୍ଣ୍ଣନାରୀତି, ଭକ୍ତିମତ୍ତା ଆଦିରେ ଅନୁପ୍ରାଣିତ ହୋଇ ପ୍ରାଚୀନ ଓ ମଧ୍ୟ ଯୁଗୀୟ ଓଡ଼ିଆ କବିମାନେ ବିପୁଳ କାବ୍ୟରଚନା କରି ଓଡ଼ିଆ ସାହିତ୍ୟକୁ ଶ୍ରୀମଣ୍ଡିତ କରିଯାଇଛନ୍ତି । ଏହି ଦୃଷ୍ଟିରୁ ମହାକବି ଉପେନ୍ଦ୍ରଙ୍କ ସୃଷ୍ଟି କେବଳ ବିପୁଳ ନୁହେଁ ଉଚ୍ଚଗୁଣାତ୍ମକ ମଧ୍ୟ । ପୌରାଣିକ ଉପାଦାନକୁ ଆକର୍ଷଣୀୟ କାବ୍ୟ ରୂପେ ଦେବାରେ ତାଙ୍କ ସ୍ଥାନ ରୀତି ଯୁଗୀୟ କବିମାନଙ୍କ ପୁରୋଭାଗରେ ଅବସ୍ଥାପିତ କରାଯାଇପାରେ ଏବଂ ଏ କ୍ଷେତ୍ରରେ ସେ ଆଦର୍ଶ ସ୍ଥାନୀୟ ବୋଲି ମଧ୍ୟ କୁହାଯାଇପାରେ ।

ଉପେନ୍ଦ୍ରଙ୍କ ବୈଦେହୀଶ ବିଳାସ, ସୁଭଦ୍ରା ପରିଣୟ, କଳାକଉତୁକ ଆଦି କାବ୍ୟ ପୁରାଣ ବା ପୁରାଣ ସମ୍ମତ ମହାକାବ୍ୟ ଉପରେ ଆଧାରିତ ଥିବାବେଳେ ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ରସିକ ହାରାବଳୀ, ସୁବର୍ଣ୍ଣରେଖା, ରସଲେଖା ଆଦି କାଳ୍ପନିକ କାବ୍ୟଭାବରେ ସୁବିଖ୍ୟାତ । ଏହା କାଳ୍ପନିକ କାବ୍ୟ ସମୂହରେ ମଧ୍ୟ ପୌରାଣିକ ଉପାଦାନର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ । ଇଷ୍ଟଦେବ ବନ୍ଦନା ଓ ସ୍ତୁତିଗାନ ମଧ୍ୟରେ, କଥାବସ୍ତୁର ପୃଷ୍ଠଭୂମି ତଥା ନାୟକ-ନାୟିକାଙ୍କ ମିଳନ-ବିରହ-ପୁନର୍ମିଳନର ବର୍ଣ୍ଣନା କାଳରେ, ସୌନ୍ଦର୍ଯ୍ୟ ବର୍ଣ୍ଣନା ଓ ପରିବେଶ ଚିତ୍ରଣ ପାଇଁ ଉପମା ଉତ୍ପ୍ରେକ୍ଷା ଆଦି ଅଳଙ୍କାର ପ୍ରୟୋଗ ଅବସରରେ କବି ପୌରାଣିକ ଉପାଦାନକୁ କାବ୍ୟ ରୂପ ଦେଇଛନ୍ତି । ପୁରାଣର କାହାଣୀ, ଚରିତ୍ର, ଅଲୌକିକ କାର୍ଯ୍ୟାବଳୀ, ରଚନା ଶୈଳୀ ଓ ଆଧ୍ୟାତ୍ମିକ-ନୈତିକ ଜାଗରଣ ଆଦି ଦୃଷ୍ଟିରୁ ଏହାର ବିଚାର କରାଯାଇପାରେ ।

ହିନ୍ଦୁ ସମାଜରେ କୌଣସି ମାଙ୍ଗଳିକ ଅନୁଷ୍ଠାନ ପାଳନ ଅବସରରେ ଦେବ ଦେବୀଙ୍କ ଆରାଧନା କରାଯାଇଥାଏ । ଭାରତୀୟ ପରମ୍ପରା ଅନୁଯାୟୀ ଆମ କବି ମାନେ ମଧ୍ୟ କାବ୍ୟର ନିର୍ବିଘ୍ନ ପରି ସମାପ୍ତି ପାଇଁ ନିଜ ଉପାସ୍ୟ ଦେବ-ଦେବୀଙ୍କର ସ୍ତୁତିଗାନ କରିଥାନ୍ତି । ସେଥିପାଇଁ କେହି କେହି ପ୍ରାଚୀନ ଓ ମଧ୍ୟଯୁଗୀୟ କବି ସ୍ୱତନ୍ତ୍ର ଭାବରେ ମଙ୍ଗଳାଚରଣ ଛାନ୍ଦ ସୃଷ୍ଟିର ଆବଶ୍ୟକତା ଉପଲବ୍ଧି କରିଛନ୍ତି । ଏବଂ ପ୍ରତ୍ୟେକ ଛାନ୍ଦର ଶେଷରେ ନିଜ ଉପାସ୍ୟ ଦେବ-ଦେବୀଙ୍କ ମହତ୍ତ୍ୱର ପୁନଃ ପୁନଃ ବର୍ଣ୍ଣନା କରି ସ୍ୱଭକ୍ତିମତ୍ତା ପ୍ରତିପାଦନ କରିଯାଇଛନ୍ତି । ସେହିପରି ଉପେନ୍ଦ୍ରଙ୍କ 'ରସଲେଖା' କାବ୍ୟର ପ୍ରଥମ ଛାନ୍ଦ ହରି-ହରଙ୍କ ସ୍ତୁତିଗାନରେ ପୂର୍ଣ୍ଣ, କବି ହରି ହରଙ୍କ ରୂପ-ଗୁଣର ବର୍ଣ୍ଣନା କରି ଲେଖିଛନ୍ତି—

ଜୟମକର କୁଣ୍ଡଳ କୁଣ୍ଡଳ କୁଣ୍ଡଳ
ଘନସାର ଶ୍ୟାମ ଘନସାରକାନ୍ତ ଝଳ ଯେ । ୧ ।

ଜୟ ତ୍ରିପୁର ମୋହନ ତ୍ରିପୁର ଦହନ
ଖଗ ପୁଙ୍ଗବ ବାହନ ପୁଙ୍ଗବ ବାହନ ଯେ । ୨ ।

ଜୟ ଗ୍ରୀମିକରା କୃତ ବାସ କୃତବାସ,
ପଞ୍ଚାସ୍ୟକ୍ଷତ ବିକ୍ରମ ଯେ ପୁଣି ପଞ୍ଚାସ୍ୟ ଯେ । ୩ ।

ଜୟ କମଳଦଳ ଲୋଚନ ତ୍ରିଲୋଚନ
ମାର ଯାର କୁମାର କୁମାର ଯା ନନ୍ଦନ ଯେ । ୪ ।

ଜୟ ପାଣ୍ଡବ ପକ୍ଷକ ତାଣ୍ଡବ ପଣ୍ଡିତ,
ଚନ୍ଦ୍ର ମୁକୁଟ ଧର ଚନ୍ଦ୍ର ମୁକୁଟ ସେତ ଯେ । ୫ ।

(ପ୍ରଥମ ଛାନ୍ଦ)

ଉପେନ୍ଦ୍ର ଆଲୋଚ୍ୟ କାବ୍ୟର ପ୍ରଥମ ଛାନ୍ଦର ବହୁପଦ ବ୍ୟତୀତ ପ୍ରତ୍ୟେକ ଛାନ୍ଦର ଶେଷରେ ହରିହରଙ୍କର ସ୍ତୁତିଗାନ କରିଯାଇଛନ୍ତି । ଏଥିରୁ ତାଙ୍କ ସ୍ମାର୍ତ୍ତ ଉପାସନାପଦ୍ଧତି ପ୍ରତି ଆନୁଗତ୍ୟ ଥିବାର ସୂଚନା ମିଳେ । ସ୍ମାର୍ତ୍ତମାନେ ପଞ୍ଚ ଦେବତାର ଉପାସକ ଥିଲେ । ଆଦିଗୁରୁ ଶଙ୍କରାଚାର୍ଯ୍ୟ ପ୍ରଥମେ ବିଭିନ୍ନ ଧର୍ମ ସମ୍ପ୍ରଦାୟ ମଧ୍ୟରେ ସମନ୍ୱୟର ଭାବ ସୃଷ୍ଟି କରିବାପାଇଁ ସ୍ମାର୍ତ୍ତ ଉପାସନା ପଦ୍ଧତି ପ୍ରଚଳନ କରାଇଥିଲେ । ବିଷ୍ଣୁ ଓ ଶିବ ପ୍ରାଚୀନ ବୈଦିକ ଦେବତା ହେଲେ ମଧ୍ୟ ସେମାନଙ୍କ ପ୍ରାଧାନ୍ୟ ପୁରାଣ ସାହିତ୍ୟରେ ହିଁ ପରିଦୃଷ୍ଟ ହୁଏ । ବ୍ରାହ୍ମଣ୍ୟ ଧର୍ମର ଉତ୍ଥାନ କାଳରେ ଇନ୍ଦ୍ରଙ୍କ ପରି କେତେକ ପ୍ରଧାନ ବୈଦିକ ଦେବତା ଅପ୍ରଧାନ ହୋଇ ଗଲେ ଏବଂ ବ୍ରହ୍ମା, ବିଷ୍ଣୁ, ଶିବ, ଗଣେଶ, ଦୁର୍ଗା ଆଦି ଦେବ-ଦେବୀ ନୂଆଭାବରେ ପୁରାଣ ସାହିତ୍ୟରେ ପ୍ରାଧାନ୍ୟ ଲାଭକଲେ । ଏମାନଙ୍କୁ କେନ୍ଦ୍ରକରି ପୌରାଣିକ ପ୍ରତିମାବାଦ ଓ ବହୁେଶ୍ୱର ବାଦର ପ୍ରତିଷ୍ଠା ହେଲା । ଧର୍ମସୂତ୍ର ପରି ପୁରାଣ ଗୁଡ଼ିକ ସାମାଜିକ, ଧାର୍ମିକମତ ନିର୍ଦ୍ଧାରଣରେ ଦାୟିତ୍ୱ ବହନ କଲେ । ପୁରାଣ ତେତିଶ କୋଟି ଦେବ-ଦେବୀଙ୍କର ପରିକଳ୍ପନା କରି ଭାରତୀୟ ଜନଜୀବନରେ ସେମାନଙ୍କ ପ୍ରଭାବ ଓ ମହତ୍ତ୍ୱର ସ୍ଥାନ ନିରୂପଣ କଲେ । ପୁରାଣ ସାହିତ୍ୟରେ ବୈଦିକ ଧର୍ମର ପରିବର୍ତ୍ତନ ଘଟି ଏକେଶ୍ୱରବାଦର ବିଲୋପ, ନୂତନ ଦେବ-ଦେବୀଙ୍କ ପ୍ରାଧାନ୍ୟ

ପ୍ରତିଷ୍ଠା, ପ୍ରତିମା ବାଦର ପ୍ରଚଳନ, ସାମ୍ପ୍ରଦାୟିକ ଦେବତାଙ୍କ ଜନ୍ମ, ମନ୍ତ୍ର ଉପାସନାର ସୃଷ୍ଟି ଏବଂ ଭକ୍ତିବାଦର ଅଭ୍ୟୁଦୟ ହେଲା । ଏହି ଧର୍ମସମ୍ପ୍ରଦାୟର ବିକାଶ କାଳରେ ବିଷ୍ଣୁ ଓ ଶିବ ପ୍ରାଧାନ୍ୟ ଲଭ କଲେ । ବିଷ୍ଣୁ ଶୀର୍ଷ ସ୍ଥାନର ଅଧିକାରୀ ହେଲେ । ସେ ପରଂବ୍ରହ୍ମ ଓ ଅବତାର ଭାବରେ ପରିକଳ୍ପିତ ହେଲେ, ଶିବଙ୍କର ଶକ୍ତି ମଧ୍ୟ ତାଙ୍କଠାରୁ କମ୍ ବୋଲି ବିବେଚିତ ହେଲା ନାହିଁ । ବୈଦିକ ଶିବ ହେଲେ ରୁଦ୍ର ଓ ମହାକାଳ । ସେ କୈଳାସ ପତି, ଶ୍ମଶାନବାସୀ, ଚନ୍ଦ୍ରଚୂଡ଼ ଓ ସର୍ପଭୂଷଣ । ଦୁର୍ଗାଙ୍କୁ ତାଙ୍କ ଶକ୍ତି ରୂପେ ଗ୍ରହଣ କରାଗଲା । ଶୈବ ଉପାସକ ମାନେ ଅଗ୍ନି, ସ୍କନ୍ଦ, ଲିଙ୍ଗ, ଶିବ ପୁରାଣ ଆଦିରେ ଶିବଙ୍କୁ ସର୍ବ ଶକ୍ତିମାନ ଭାବରେ ଉପସ୍ଥାପନ କରି ପୂଜା-ଆରାଧନା କରୁଥିବାବେଳେ ବୈଷ୍ଣବମାନେ ବିଷ୍ଣୁ, ଭାଗବତ, ଗରୁଡ଼, ନାରଦ, ବରାହ, ବାମନ, ମତ୍ସ୍ୟାଦି ପୁରାଣରେ ବିଷ୍ଣୁଙ୍କୁ ବିଶ୍ୱସ୍ରଷ୍ଟା ଓ ପରଂବ୍ରହ୍ମର ଗୌରବ ଦେଇ ଉପାସନା କଲେ । ଧର୍ମରେ ଏପରି ଉତ୍କଟ ସାମ୍ପ୍ରଦାୟିକତା ଓ ବିଦ୍ୱେଷ ଭାବ ସୃଷ୍ଟି କାଳରେ ଏଥିରେ ସମନ୍ୱୟ ଓ ସୁରକ୍ଷା ଅନିବାର୍ଯ୍ୟ ବୋଧହେଲା । ଧର୍ମ ଉପାସନାରେ ସମନ୍ୱୟନ ଆଣିବାପାଇଁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ତ୍ରିମୂର୍ତ୍ତିଙ୍କ ଏକ ରୂପ ପରିକଳ୍ପିତ ହେଲା । ବ୍ରହ୍ମା ସୃଷ୍ଟିକର୍ତ୍ତା ହେଲେ ମଧ୍ୟ ଅପାଂକ୍ତେୟ ହେଲେ । ବିଷ୍ଣୁ ଓ ମହେଶ୍ୱର ପ୍ରାଧାନ୍ୟ ଲାଭ କଲେ । ବେଦର ମୁଖ୍ୟ ଦେବତା ଇନ୍ଦ୍ରଙ୍କ ଶକ୍ତି ହ୍ରାସ ଘଟିଲା । ସ୍ମାର୍ତ୍ତ ଧର୍ମରେ ହରି ଓ ହର ସମନ୍ୱିତ ହୋଇ 'ହରିହର' ରୂପେ ସମସ୍ତ ଜନେ ପରିଚିତ ହେଲେ । ଶଙ୍କରାଚାର୍ଯ୍ୟ ପ୍ରଥମେ ଏହିଦୁଇ ଧର୍ମରେ ସମନ୍ୱୟ ଆଣିଥିଲେ । ସେ ଏହି ସ୍ମାର୍ତ୍ତ ଉପାସନାର ପ୍ରସାର ସମଗ୍ର ଭାରତ ବର୍ଷରେ ଘଟାଇଥିଲେ । ଓଡ଼ିଶାର ପ୍ରାଚୀନ ମନ୍ଦିର ଗାତ୍ର ଓ ସାହିତ୍ୟ କଳାରେ ଏହାର ପ୍ରଭାବ ପରିଦୃଷ୍ଟ ହେଲା । କବି ଉପେନ୍ଦ୍ର ସ୍ମାର୍ତ୍ତମତ ପ୍ରତି ସମ୍ମାନ ଦେଖାଇ 'ରସଲେଖା' କାବ୍ୟରେ ହରିହରଙ୍କ ଗୁଣଗାନ କରିଛନ୍ତି । ଏହି ପୁରାଣ ପ୍ରସିଦ୍ଧ ଦେବଦ୍ୱୟଙ୍କ ରୂପ, ଗୁଣ ଓ ମହତ୍ତ୍ୱ କଥନ ମଧ୍ୟରେ କବିଙ୍କ ପାଣ୍ଡିତ୍ୟ ଓ ପ୍ରତିଭାର ପରିଚୟ ମିଳିଥାଏ । କାବ୍ୟିକ ଓ ଆଳଙ୍କାରିକ ପ୍ରକାଶ ମଧ୍ୟରେ ଉପେନ୍ଦ୍ରଙ୍କ ଏହି ଦେବ ପ୍ରଶସ୍ତି ଯେପରି ଚାତ୍ତ୍ୱିକ, ସେହିପରି ପାଠକ ପ୍ରାଣରେ ଭଗବଦ୍ ଚିନ୍ତାର ଉଦ୍ରେକ ନିମନ୍ତେ ସମର୍ଥ ।

'ରସଲେଖା' କାବ୍ୟର କଥାବସ୍ତୁ କାଳ୍ପନିକ କାହାଣୀ ଭିତ୍ତିକ ହେଲେ ମଧ୍ୟ ଦୈବ ଆଶୀର୍ବାଦ ଓ ଅଲୌକିକତା ମଧ୍ୟଦେଇ ଗତିଶୀଳ । ପୌରାଣିକ ଚରିତ୍ର ଓ ଅଲୌକିକ କାର୍ଯ୍ୟାବଳୀର ସାହାଯ୍ୟରେ କାବ୍ୟର ଆରମ୍ଭ ଓ ପରିଣତି ପରିକଳ୍ପିତ । ନୈମିଷାରଣ୍ୟର ତପସ୍ୱୀ କପିଦାଶ୍ରମ ଏବଂ ତାଙ୍କ ଷୋଡଶହଜ ଶିଷ୍ୟ ତୀର୍ଥାଟନରେ ଯାଇ ମଳୟଗିରି ନିକଟସ୍ଥ ରସୋଦୟ ବନରେ ପ୍ରବେଶ କରିବା

ମାନେ କାମ ବାଣରେ ପୀଡ଼ିତ ହୋଇ ବିଭିନ୍ନ ଉପାୟରେ କନ୍ୟାସଂଗ୍ରହ କରିବା ମୁନିଙ୍କ ନିତ୍ୟନୈମିତ୍ତିକ ଧର୍ମାବଲମ୍ବୀ ହେଲେ । କପିସାନ୍ତନ ଗ୍ରେଲ ଦେଶର ରାଜକନ୍ୟା କଳାବତୀଙ୍କୁ ବିବାହ କଲେ । କଳାବତୀଙ୍କ ଗର୍ଭରୁ ଅପରୂପ ଲାବଣ୍ୟମୟୀ 'ରସ-ଲେଖା'ର ଜନ୍ମ । ମଲୟଗିରି ଉପତ୍ୟକାରେ ଅବସ୍ଥିତ ସୁଧାନିଧି ନଗରର ରାଜା ଭୂପତିଙ୍କ ପୁତ୍ର ବିଶ୍ୱଭୂତ ସୁକନ୍ୟା ପ୍ରାପ୍ତି ପାଇଁ ଦେବୀ ଦୁର୍ଗାଙ୍କୁ ଆରାଧନା କଲେ । ଦେବୀ ସ୍ୱପ୍ନରେ କୁମାରଙ୍କୁ ସୁକନ୍ୟା ରସଲେଖାର ସନ୍ଧାନ ଦେଇ କନ୍ୟା ପ୍ରାପ୍ତି ନିମିତ୍ତ ଆଶୀର୍ବାଦ କଲେ ଏବଂ ବିଶ୍ୱଭୂତଙ୍କ ହାତଧରି ନେଇ ରସୋଦୟ ବନରେ ଛାଡ଼ିଆସିଲେ । କାନ୍ତକା—କାନ୍ତଙ୍କ ପୂଜାପାଇଁ ସଖୀମାନଙ୍କ ସହିତ ପୁଷ୍ପଚୟନ କାଳରେ ରସଲେଖାଙ୍କର କୁମାରଙ୍କ ସହିତ ସାକ୍ଷାତ ହେବାପରେ ଉଭୟଙ୍କ ମନରେ ପ୍ରେମ—ପ୍ରଣୟର ଅଙ୍କୁରୋଦ୍‌ଗମ ହେଲା । ଦେବର୍ଷି ନାରଦଙ୍କ ମଧ୍ୟସ୍ଥତା ଓ ପୌରୋହିତ୍ୟରେ କପିସାନ୍ତଙ୍କ ସ୍ୱୀକୃତ ସହ ପ୍ରଣୟୋତ୍ତର କୁମାର କୁମାରୀଙ୍କ ବିବାହ କାର୍ଯ୍ୟ ସମାପନ ହେଲା । ବିଶ୍ୱଭୂତଙ୍କ ଅନ୍ତର୍ଦ୍ଧାନ ହେବାରୁ ରାଜା ଭୂପତି ବଡ଼ ମନ ଦୁଃଖରେ କାଳାତିପାତ କରୁଥିଲେ । ଚତୁର୍ଦ୍ଦିଗରେ ଚରପଠାଇ ମଧ୍ୟ ପୁତ୍ରର ସନ୍ଧାନ ପାଇପାରୁ ନଥିଲେ । ଚତୁର୍ମାସ୍ୟା ବ୍ରତ ପାଳନ କରିବାକୁ ଆସିଥିବା ନିଶାକର ଋଷି ଧ୍ୟାନଯୋଗେ କୁମାରଙ୍କ ବୃତ୍ତାନ୍ତ ଜାଣି ରାଜାଙ୍କୁ ସମ୍ବାଦ ଦେବାରୁ ରାକ୍ଷସମାନେ ସେହି ବନରେ କୁମାରଙ୍କୁ ନିଦ୍ରିତ ଅବସ୍ଥାରେ ହରଣ କରି ଆଣିଲେ । ପୁତ୍ରକୁ ପାଇ ରାଜା ଓ ରାଣୀ ଆନନ୍ଦିତ ହେଲେ । ରସଲେଖା ଠାରୁ ବିଚ୍ଛିନ୍ନ ହୋଇ ବିଶ୍ୱଭୂତ ଉତ୍କଟ ବିରହ ବେଦନାରେ ପୀଡ଼ିତ ହେଲେ । ରାଜା ଭୂପତି କୁମାରଙ୍କ ପ୍ରଣୟ ବୃତ୍ତାନ୍ତ କୁମାରଙ୍କ ମିତ୍ରଙ୍କ ଠାରୁ ଜାଣିଲେ । ସିନ୍ଧୁ ପ୍ରଦେଶ ରାଜା ଜରାସନ୍ଧ ବଂଶୀୟ ବିଦ୍ୟୁନାଥଙ୍କ କନିଷ୍ଠ ପୁତ୍ର କପିସାନ୍ତଙ୍କ ପରିଚୟ ନିଶାକର ଋଷିଙ୍କ ଠାରୁ ପାଇ ରାଜା ଭୂପତି କନ୍ୟା ଆଣିବାର ବନ୍ଦୋବସ୍ତ କଲେ । ନାୟକ—ନାୟିକାଙ୍କ ମିଳନ ଘଟିଲା । ଏ ସମସ୍ତ କାହାଣୀ ପରିକଳ୍ପନାରେ ପୌରାଣିକ ଉପାଦାନର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ ।

ରସୋଦୟ ବନର ମାହାତ୍ମ୍ୟ କବି କଳ୍ପନା ହେଲେ ହେଁ ସେଥିରେ ପୌରାଣିକ ପୃଷ୍ଠ ରହିଛି । ଶମ୍ବରାସୁର ରତିଦେବୀଙ୍କୁ ହରଣ କରି ନେବା ବେଳେ ରତି ସେହି ବନରେ ଆଶ୍ରୟ ନେଇଥିଲେ ବୋଲି ଉଲ୍ଲେଖ ରହିଛି । ସେହି ବନରେ ପ୍ରବେଶ ମାନେ ମୁନି—ଋଷିଙ୍କ ଠାରେ ମଧ୍ୟ କାମଚେଷ୍ଟା ଜାତ ହୁଏ । ଏପରି ଏକ ବନର ପରିକଳ୍ପନା ଭବଭୂତିଙ୍କ ପୌରାଣିକ ନାଟକ 'ଉନ୍ମତ ରାଘବ' କଥା ସ୍ମରଣ କରାଇଦିଏ । ପୁରାଣ ପ୍ରଭାବିତ 'ଉନ୍ମତ ରାଘବ' ନାଟକରେ ରାମଙ୍କ ବନବାସ କାଳରେ ସୀତା ଅଜ୍ଞାତ ବଶତଃ ବନର ଏକ ଅଂଶରେ ପ୍ରବେଶ କରିବା ମାନେ

ହରଣୀରେ ପରିଣତ ହୋଇଯାଇଥିଲେ । ସୀତାଙ୍କ ଅନୁପସ୍ଥିତରେ ରାମ ପାଗଳ ପ୍ରାୟ ପ୍ରଳାପ କରି ଅସ୍ଥିର ହେବାରୁ ଅଗସ୍ତି ଋଷି ସୀତାଙ୍କୁ ଶାପମୁକ୍ତ କରିଥିଲେ । ସେହିପରି ରଘୋଦୟ ବନରେ କପିସାଞ୍ଜନ ଓ ତାଙ୍କ ଶିଷ୍ୟମାନେ ପ୍ରବେଶ କରିବା ମାତ୍ରେ କାମ ପୀଡ଼ା ଲଭି କରି ସହାଶ୍ର ସାଜିଥିଲେ । ପୁନଶ୍ଚ ବିଶ୍ୱଭୂତଙ୍କୁ ସ୍ୱପ୍ନରେ ଦେବୀ ଦୁର୍ଗା ସୁକନ୍ୟାର ସନ୍ଧାନ ଦେବା ଓ ହାତଧରି ନେଇ ରଘୋଦୟ ବନ ନିକଟରେ ପହଞ୍ଚାଇଦେଇ ଆସିବା ପୁରାଣ ପ୍ରସିଦ୍ଧ ଊଷା—ଅନିରୁଦ୍ଧଙ୍କ ସ୍ୱପ୍ନ ମିଳନର କାହାଣୀକଥା ସ୍ମରଣ କରାଇ ଦେଇଥାଏ । ଊଷା—ଅନିରୁଦ୍ଧଙ୍କ ମିଳନର ମଧ୍ୟସ୍ଥି ପରି 'ରସଲେଖା' କାବ୍ୟରେ ମଧ୍ୟ ନାରଦ ଯୋଗ ସୂତ୍ର ରକ୍ଷାକାରି ଚରିତ୍ର । ନାୟକ ନାୟିକାଙ୍କ ମିଳନରେ ସେ ସହାୟକ ହୋଇଛନ୍ତି ଏବଂ ବିବାହ କର୍ମରେ ପୌରହିତ୍ୟ କରିଛନ୍ତି । ନିଶାକର ଋଷି ଧ୍ୟାନସ୍ଥ ହୋଇ ବିଶ୍ୱଭୂତ ଓ ରସଲେଖାଙ୍କ ମିଳନ—ବିବାହ କଥା ଜାଣିପାରିବା, ରାକ୍ଷସମାନେ ଅଦ୍ଭୁତ ଅବସ୍ଥାରେ ଏତେ ଦୂରନ୍ୟସ୍ଥାନରୁ ନିମିଷକ ମଧ୍ୟରେ ବିଶ୍ୱଭୂତଙ୍କୁ ହରଣ କରି ଆଣିବା ପୁରାଣ କଳ୍ପନା ପରି ମନେହୁଏ । ପୁରାଣ ପ୍ରସିଦ୍ଧ ଜରାହନ୍ଦଙ୍କ ବଂଶଜ ଭାବରେ କପିସାଞ୍ଜନଙ୍କୁ ପରିଚିତ କରାଇ କବି ଉପାଖ୍ୟାନକୁ ପୌରାଣିକ ମର୍ଯ୍ୟାଦା ଦେବାକୁ ଚେଷ୍ଟାକରିଛନ୍ତି । ଯୋଗିନୀ ଓ ରାକ୍ଷସ ମାନଙ୍କ ଅଲୌକିକ କାର୍ଯ୍ୟ କଳାପ ଦ୍ୱାରା ଅସମ୍ଭବ ସମ୍ଭବ ହୋଇ ପାରିଛି । ଏପରି ଅଲୌକିକ ପୌରାଣିକ କଳ୍ପନା କଥାବସ୍ତୁର ଅଙ୍ଗ ରୂପେ ସ୍ୱୀକୃତ ହୋଇଛି ।

ମାନବୀୟ ପ୍ରେମ, ପ୍ରଣୟ ଏବଂ ସମ୍ଭୋଗ ଲାଳସାର ତୀବ୍ରତା ପୁରାଣ ସାହିତ୍ୟରେ ମଧ୍ୟ ସୁଲଭ । ନାରୀର ରୂପ ଆକର୍ଷଣ ଯୁଗେ ଯୁଗେ ପୁରୁଷକୁ ସମ୍ମୋହିତ କରିଆସିଛି । ମହାନ ଯୋଗୀ, ଋଷି ସାଧକମାନେ ମଧ୍ୟ ଏଥିରୁ ନିସ୍ତାର ପାଇ ନାହାନ୍ତି । ସେମାନେ ନାରୀର ପ୍ରଣୟ ପ୍ରାର୍ଥୀ ହୋଇ ସହାଶ୍ର ସାଜିଛନ୍ତି । ଅର୍ଯ୍ୟଋଷି ବଶିଷ୍ଠ, ଅତ୍ରି, ପରାଶର, ଋଷ୍ୟଶୃଙ୍ଗ ଆଦିଙ୍କ ଜୀବନରେ ନାରୀ ଓ ପ୍ରେମର ଅପ୍ରତିହତ ପ୍ରଭାବ ପ୍ରମାଣିତ । ଦେବରାଜ ମଧ୍ୟ ଏହିକାମ ଲାଳସାର ଶିକାର ହୋଇ ଅହଲ୍ୟା ସୁନ୍ଦରୀଙ୍କୁ ଦୂଷିତା କରିଛନ୍ତି । ଏହିସବୁ ପୁରାଣ ପ୍ରସଙ୍ଗ କାମ ପୀଡ଼ିତ କପିସାଞ୍ଜନଙ୍କ ମୁଖରେ କବି ପ୍ରକାଶ କରାଇଛନ୍ତି ।

"ଅତ୍ରି ବଶିଷ୍ଠରୁତ ନୁହଇ ବଡ଼ ମୁନି,
ଅନୁସୂୟା ଅରୁନ୍ଧତୀ ପ୍ରୀତିବଶ ସେହି ସେ । ୩୨ ।

ଜରତା ଭାଙ୍ଗିଛି ଋଷ୍ୟଶୃଙ୍ଗ ଋଷି ଯୋଗ,
ପରାଶର ନାବେ କୈବର୍ତ୍ତୀକି କଲେ ଭୋଗ ସେ । ୩୩ ।

ନାଙ୍କ ଏତେ ଦ୍ରବ୍ୟ ଗଉତମ ଜୀବ ଭଲେ,
ଦୂଷିତ ହେଲେ ଅହଲ୍ୟାପୁରେ ନ ଗ୍ରୁଡ଼ିଲେ ଯେ । ୩୪ ।

(ପ୍ରଥମ ଗ୍ରନ୍ଥ)

ଏପରିକି ଯୋଗୀ ଶ୍ରେଷ୍ଠ ଦେବ ଦେବ ମହାଦେବ ସାଧନାଭଙ୍ଗ କାରଣରୁ କାମ ଦେବଙ୍କୁ କୋପାନଳରେ ଦହନ କରିଥିଲେ ମଧ୍ୟ ନାରୀ ଆକର୍ଷଣକୁ ତେଜ୍ୟ କରିପାରି ନାହାନ୍ତି । ସେ ପାର୍ବତୀଙ୍କୁ ଅର୍ଦ୍ଧାଙ୍ଗ ଭୂଷଣ ଭାବରେ ଗ୍ରହଣ କରିଛନ୍ତି ।

"ଶିବ ଅରମ୍ଭି ଯୋଗ ଯପାଦ୍ଧକଲେ ତ୍ୟାଗ
ବହନ ଠାରୁ ନ ବନ୍ଧିଲେ ।

ନେତ୍ରାନଳେ ଦହନ . ପଦଜଲେ ମଦନ
ନାରୀଙ୍କ ମୂର୍ଚ୍ଛି ନପାରିଲେ ହେ ।
ନବଦନ ! କଲେ ସେ ଅର୍ଦ୍ଧାଙ୍ଗ ଭୂଷଣ" । ୯୮ । (ଊନବିଂଶଗ୍ରନ୍ଥ)

ପ୍ରୀତି ଅସମ୍ଭବକୁ ସମ୍ଭବ କରିଛି । ଶଶାଙ୍କ ପ୍ରୀତି ଗୁଣରେ ଚନ୍ଦ୍ରଙ୍କ ବକ୍ଷରେ ସ୍ଥାନ ପାଇଛି ଏବଂ ଚନ୍ଦ୍ର ପ୍ରୀତିବନ୍ତ ଭାବ ଦ୍ୱାରା ଶିବଙ୍କୁ ଆକୃଷ୍ଟକରି ତାଙ୍କ ମସ୍ତକରେ ଭୂଷଣ ହୋଇଛନ୍ତି । ଚନ୍ଦ୍ରବିନୁ କେହି କୁମୁଦକୁ ଉଲ୍ଲସିତ କରିପାରେ ନାହିଁ । ଚନ୍ଦ୍ରବିନୁ କାହିଁରେ ଚନ୍ଦ୍ରକାନ୍ତମଣି ଦ୍ରବଭୂତ ହୁଏ ନାହିଁ । ଚନ୍ଦ୍ର, କୁମୁଦ, ଚନ୍ଦ୍ରକାନ୍ତମଣି ଆଦି ପ୍ରାକୃତିକ ବସ୍ତୁ ହେଲେ ମଧ୍ୟ ପୂର୍ଣ୍ଣ ସ୍ୱୀକୃତ ଉପାଦାନରୂପେ 'ରସଲେଖା' କାବ୍ୟରେ ଅନେକତ୍ର ପରିଦୃଷ୍ଟ ହୁଏ ।

ସୁନ୍ଦରୀ କାବ୍ୟ ନାୟିକା ରସଲେଖାଙ୍କୁ 'ସିନ୍ଧୁଜାତ ଲକ୍ଷ୍ମୀ'ଙ୍କ ସହିତ ତୁଳନା କରାଯାଇଛି (୨/୯), କୁମାରଙ୍କୁ 'କାମକଳ୍ପତରୁ' ବୋଲି କୁହାଯାଇଛି (୪/୪୨) । ସେ ଇନ୍ଦ୍ରର ଓ ଗୌରୀଙ୍କ ସହିତ ତୁଳନୀୟା (୪/୩୩–୩୪) । ତାଙ୍କ ସୁନ୍ଦର ସ୍ତନ ମନବାଞ୍ଛାପୂର୍ଣ୍ଣକାରୀ କଳ୍ପବୃକ୍ଷ ଫଳ, ହେମ ଭୂମିରୁଜାତ ଶମ୍ଭୁ (୫/୧୧) କୁମ୍ଭଙ୍କ ବାଲ୍ୟଲୀଳା କାଳର କନ୍ଦୁକ (୫/୧୨) ବୋଲି ବର୍ଣ୍ଣନା କରାଯାଇଛି । ରସଲେଖାର ଅଙ୍ଗଶୋଭାକୁ 'ସ୍ୱର୍ଗଆରୋହଣ ସୋପାନ (୫/୧୮), ବିଶ୍ୱକେତୁର ସିଂହାସନ (୫/୨୦) ବୋଲିମଧ୍ୟ ବର୍ଣ୍ଣନା କରାଯାଇଛି । ଦେବ ଆଶୀର୍ବାଦ ବ୍ୟତି-ରେକେ ଏପରି କନ୍ୟାଲାଭ ଅସମ୍ଭବ । କବିଙ୍କ ଭାଷାରେ କାଶୀବିଶ୍ୱନାଥଙ୍କ ଶିରରେ ଚମ୍ପା ଚଢ଼ାଇଥିଲେ କମ୍ପା ଗଙ୍ଗାରେ ଝାସ ଦେଇଥିଲେ ଏପରି ସୁନ୍ଦରୀର ଅନୁ-କମ୍ପା ଲଭ ସମ୍ଭବ ।

“ବହୁଥର ଗଙ୍ଗାରେ ଥିଲେ ଝାସି, ତୋଷି ଅଶେଷ ତପେ କାଶୀ ବାସୀ
ତାଙ୍କ ଶିରେ ନବେଣୀ ଥିଲେ ଚମ୍ପା, ହେବ ବନ୍ଧୁର କନ୍ତ ଅନୁକମ୍ପା,
ହର ଶିରେ ଦେଇଥିଲେ ତୁଳସୀ, ପଦ୍ମେ ଦୋଳସ୍ଥାକୁ ଥିଲେ ତୋଷି,
କହୁଥିବ ଗେହ୍ଲାଇ ହସି ହସି, ଝିଡ଼ ଗୃହାଣୀରେ ମୋ ଜାବ ତୋଷି,
ଯଦି ଲଡ଼ୁ ଟଣେଣେ ଦେଇଥିବ, ପୀନପୟୋ ଧର କରେ ଧରିବ
ଅମ୍ବିକାକୁ ଦେଇ ଥିଲେ ମନ୍ଦାର, ଚୁମ୍ବି ପାରିବ ସୁରଙ୍ଗ ଅଧର,
ନାଗ ଚତୁର୍ଥୀ ବ୍ରତ କଲି ଫଳେ, ମନୋରମାକୁ ମୁଁ ଦେଖିଲି ଡ଼ୋଳେ ।”

(୫।୧୦-୧୪)

ରାଧାକୃଷ୍ଣଙ୍କ ପ୍ରଣୟ ଉପାଖ୍ୟାନ ବ୍ୟଞ୍ଜନାତ୍ମକ ଭାବରେ ରସକଲ୍ଲୋଳ କାବ୍ୟରେ ସ୍ଥାନ ପାଇଛି । ରତେପାଦସ୍ତ ବନରେ ରସକଲୋଳା ଓ ବଣ୍ଣଭୂତ ପରହରକୁ ଦେଖି କନ୍ଦର୍ପ ପୀଡ଼ାରେ ଜାସୀ ହୋଇଛନ୍ତି । ନାୟିକାର ଅନୁପସ୍ଥିତରେ ନାୟକ ବିରହ ବେଦନାରେ ଅଧିଷ୍ଟ ହୋଇ ନୀପ ବୃକ୍ଷକୁ ନିଜ ନିରାଶ୍ରୟ ଅବସ୍ଥାର ଏକମାତ୍ର ଆଶ୍ରୟସ୍ଥଳ ବୋଲି ବିଗ୍ଧର କରିଛି । ଏହି କଦମ୍ବ ବୃକ୍ଷ ତଳେହିଁ ମୂରଲୀଧାରୀ କୃଷ୍ଣ ରାଧିକା ସୁନ୍ଦରୀଙ୍କୁ ମୋହିତ କରିଥିଲେ । ତେଣୁ ନାୟକ ନିଜ ପ୍ରଣୟର ସାର୍ଥକତା ପାଇଁ ଏହି ବୃକ୍ଷଠାରେ ଆଶ୍ରୟ ଭିକ୍ଷା କରିଛନ୍ତି ।

“ରମାଗଲଯଣୀ ପୁଂସ ଝର ନଶ୍ୱାସୀ
କଦମ୍ବ ପାଦପ ତରୁ ଛାୟାରେ ବସି

ମନେକଲି ଏହି ତରୁ ଆଶ୍ରୟ କରି
ରାଧାକୁ ମୋହିତ କଲେ ମୂରଲୀ ଧାରୀ’ (୬/୧-୨)

ରାଧାକୃଷ୍ଣଙ୍କ ପ୍ରଣୟ ଲୀଳାର ମାଧ୍ୟମ ବେଣୁ । କୃଷ୍ଣଙ୍କ ମୋହନ ବଂଶୀର ମଧୁରସ୍ୱନ ରାଧାଙ୍କୁ ପ୍ରେମ ପାଗଳିନୀ କରି କୃଷ୍ଣଙ୍କ ସହିତ ମିଳିତ କରାଇଛି । ରସ-କଲୋଳାଙ୍କ ମଧୁର କଣ୍ଠ କୃଷ୍ଣଙ୍କ ମୋହନ ବେଣୁ ସହିତ ତୁଳନୀୟ । ଏହିସ୍ୱନ ଏବେ ପୁଂସକୁ ମୋହିତ କରିବାରେ ସମର୍ଥ ।

‘ଦେବକୀସୁନୁ ମୋହନ ବେଣୁ ସ୍ୱର ପରାୟେ ଭାଷ
ଶ୍ରୂତରେ ନାଶି ସ୍ୱବଶ କରି ଏବେ ମୋହିବ ପୁଂସ’ (୧୫/୧୮)

ରାମ ଉପାଖ୍ୟାନର ପ୍ରୟୋଗ 'ରସଲେଖା'ରେ ଅନେକତ୍ର ପରିଦୃଷ୍ଟ ହୁଏ । କୋକିଳଧ୍ୱନି ଶ୍ରବଣକରି ବିରହିଣୀ ନାୟିକା ରସଲେଖାଙ୍କର ମାନସିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିଛି । ରାବଣ କର୍ତ୍ତୃକ ସୀତା ହରଣ ଓ ମାୟାସୀତା ବଧ ଦ୍ୱାରା ରାମଙ୍କ ହୃଦୟରେ ସୃଷ୍ଟି ହୋଇଥିବା ବିରହ ବେଦନାର ତୀବ୍ରତା ସହିତ ବର୍ତ୍ତମାନ ନାୟିକା ଅବସ୍ଥାର ସମତା ରକ୍ଷା କରି କାରୁଣ୍ୟ ଭାବ ପ୍ରଦର୍ଶନର ପ୍ରୟାସ ହୋଇଛି ।

"ଏତେ କହୁଁ କୋକିଳ ଚୂତରେ ଡାକଦେଲା
କୁଳଶ ଭାବି ସାଧବୀ ଜ୍ଞାନଚ୍ୟୁତ ହେଲା ।

କେ ବୋଲେ ବିକଳେ ରାମ ବିରହୀ ରାଜନ
ଏହାର କାଳକେ ଦୋଷି ରାବଣ ସମାନ

ଏକ କହେ ନ କରନ୍ତେ ତେମନ୍ତ କାମାନ୍ଧି
ମାୟା ସୀତା ବଧେ ଉପକାର ହେଲା ନାହିଁ" ୩-୪(ଅଷ୍ଟମ ଛାନ୍ଦ)

ବିରହର ମଧ୍ୟଲଗ୍ନ କାଳରେ ନାୟକ ରୂପବତୀ, ଗୁଣବତୀ କନ୍ୟାରତ୍ନ ରସଲେଖାକୁ ପତ୍ନୀଭାବରେ ଲାଭ କରିବାକୁ ଯାଉଥିବାରୁ ନିଜକୁ ସୁଗ୍ରୀବ ପରି ଭାଗ୍ୟବାନ ମନେ କରିଛି । ଭାଗ୍ୟ ବଳରେ ସୁଗ୍ରୀବ ବିନା ଶ୍ରମରେ ରାମଙ୍କ ପ୍ରସାଦରୁ ବିରାଟ ଐଶ୍ୱର୍ଯ୍ୟର ଅଧିକାରୀ ହୋଇପାରିଛନ୍ତି । ଅନାୟସରେ କାବ୍ୟ ନାୟକ ବିଶ୍ୱଭୂତି ଦେବୀ ଆଶୀର୍ବାଦରୁ ଏପରି ସୁନ୍ଦରୀ ପତ୍ନୀଲାଭ କରିଥିବାରୁ ପୃଥିବୀର ଏକମାତ୍ର ଭାଗ୍ୟବାନ ବ୍ୟକ୍ତି ସୁଗ୍ରୀବଙ୍କ ସହିତ ନିଜକୁ ତୁଳନା କରିଛନ୍ତି ।

"କୁମାର ପାଞ୍ଚେ ମୋହ ସମାନ ଭାଗ୍ୟବନ୍ତ ଥିଲେ ସୁଗ୍ରୀବ,
କି ଶ୍ରମ କରି ସମ୍ପତ୍ତି ପାଇଲା ସେ ରାମଚନ୍ଦ୍ର ହେଲେ ଦଇବ" । ୨୩ ।

[ଦ୍ୱାଦଶ ଛାନ୍ଦ]

ପୁନଶ୍ଚ, ରସଲେଖାଙ୍କ ମନମତ ବର ନିର୍ବାଚନ ପାଇଁ ନାରଦଙ୍କ ନିର୍ଦ୍ଦେଶରେ ଯୋଗୀନୀ ଯାଇ ବିଶ୍ୱକର୍ମାଙ୍କ ଠାରୁ ତ୍ରିଭୁବନର ସୁନ୍ଦର ପୁରୁଷ ମାନଙ୍କ ପଟଚିତ୍ର ନେଇ ଆସିଲେ । ରସଲେଖା ନିକଟରେ ସେଇ ପୁରୁଷମାନଙ୍କ ରୂପ, ଗୁଣ ବର୍ଣ୍ଣନା କଲା ଅବସରରେ ରାମାୟଣ ପ୍ରସିଦ୍ଧ ଲଙ୍କା ପୁରୀର ରାଜା ବିଭୀଷଣଙ୍କ ମହତ୍ତ୍ୱ ବର୍ଣ୍ଣନା କରି କବି ଲେଖିଛନ୍ତି—

'ଦେଖ ମର୍ତ୍ତ୍ୟପୁରେ ଏ ଲଙ୍କା ମାଧୁରୀ ଏଥି ରାଜା ରାମ ଭଜନ୍ତ ।
ସ୍ତନ ପ୍ରତୁଙ୍ଗେ ସ୍ତନ୍ଦନ୍ନ ଦର୍ଶିତ ଏ ସଦା ମନ୍ଦୋଦରୀ ଲୋଭନ୍ତ'' । ୧୧ ।

[ଦ୍ୱାଦଶ ଛାନ୍ଦ]

ଏତଦ୍‌ବ୍ୟତୀତ ଚିତ୍ରପଟରେ ଥିବା ଅନ୍ୟାନ୍ୟ ଦେବତା ମାନଙ୍କ ମଧ୍ୟରେ ଇନ୍ଦ୍ର, କୁବେର, ବିଷ୍ଣୁ, ସୂର୍ଯ୍ୟ, କାର୍ତ୍ତିକେୟ, ଚନ୍ଦ୍ର, ଶିବ, କନ୍ଦର୍ପ ଆଦିଙ୍କ ରୂପ ଗୁଣର ବର୍ଣ୍ଣନା ମଧ୍ୟରେ ପୌରାଣିକ ଅଭିବ୍ୟକ୍ତି ରହିଛି ।

ପୁରାଣ ପ୍ରସିଦ୍ଧ ସମୁଦ୍ର ମନ୍ଥନ, ରାହୁର ଅମୃତ ପାନ ପ୍ରୟାସ ଏବଂ ଚନ୍ଦ୍ରଙ୍କୁ ଗ୍ରାସ କରିବାର ପୁରାଣ ଉପାଖ୍ୟାନ ପ୍ରସଙ୍ଗ ବ୍ୟଞ୍ଜନା ରୂପରେ 'ରସଲେଖା' କାବ୍ୟରେ ପ୍ରଦତ୍ତ । ସମ୍ଭୋଗ କାଳରେ ନାୟିକାର ଗଣ୍ଡ ଦେଶରେ ନାୟକର ଚୁମ୍ବନ ଦାନ ଓ ଦନ୍ତକ୍ଷତ ଚନ୍ଦ୍ରମଣ୍ଡଳକୁ ରାହୁ ଗ୍ରାସ କରିବାର ଉପମା ଦିଆଯାଇଛି ।

''ଗଣ୍ଡ ଚନ୍ଦ୍ର ମଣ୍ଡଳକୁ ହୋଇ ରାହୁବତ
ଦନ୍ତରେ ପୀଡ଼ିଲେ ବହୁବେଳ ହୋଇ ରତ ଯେ'' । ୨୯ ।

[ଚତୁର୍ଦ୍ଦଶ ଛାନ୍ଦ]

ଆଦ୍ୟ ସାକ୍ଷାତ କାଳରେ ରାଜ କୁମାର ରସବତୀ ନାୟିକା ରସଲେଖାର ବସନ ଧରି ପ୍ରେମ ଅଳି ନ କରିଥିବା ହେତୁ ବିରହ କାଳରେ ଅନୁତପ୍ତ ହୋଇଛି ବିରହ ବିପତ୍ତି ଅପେକ୍ଷା ବସନ ଧାରଣ କରି ରାଜଦଣ୍ଡ ପାଇବା ଅଧିକ ସ୍ପୃହଣୀୟ ବୋଲି ନାୟକ ବିଚାର କରିଛି । ଶିରଚ୍ଛେଦ ଦଣ୍ଡ ପାଇଥିଲେ ମଧ୍ୟ ରାହୁ ଅମୃତ ପାନ କରି ଜୀବନ ସାର୍ଥକ କରିଛି ।

ନ ଧରିଲି କାମିନୀ ବାସ  ହେଲେ ହେ ଇଥାନ୍ତା ନାଶ
ଶିର ଛେଦ ହୋଇ ଅମୃତ ଲୋଭରେ ରାହୁ ହୋଇଗଲା କାଯ ।

ସେ କଥାରେ ଶିର ଛେଦ  ବରଂ ବିପତ୍ତି ବିଚ୍ଛେଦ
ବଡ଼ଶୀରେ **ଅସି** ବିନାଶେ ପଡ଼ନ୍ତି ମୀନେଟି ଚାଖି ସୁଆଦ ।

[ଛା ୯/୧୩-୧୪]

ପୁରାଣ ବର୍ଣ୍ଣନା ଅନୁସାରେ ଅମୃତ ଅମରତ୍ୱ ପ୍ରଦାନ କରେ । ବିରହୀ ନାୟକ ବିଶ୍ୱଭୂତ କାମବାଣରେ ମୃତପ୍ରାୟ ହୋଇଥିଲେ ହେଁ ମରି ପାରିନାହିଁ ।

ସେ ନାୟିକାର ଅଧରାମୃତ ପାନ କରିଥିବାରୁ ଏହା ସମ୍ଭବ ହୋଇନାହିଁ ବୋଲି ବିଚାର କରିଛନ୍ତି ।

'ମରିବ କେମନ୍ତେ ମୁହିଁ ଅମର କରିଛୁ ବୁଦ୍ଧି
ପିଆଇ ଅଧର ସୁଧାରସ' । ୪ । [ଦ୍ୱାବିଂଶ ଛାନ୍ଦ]

ଫଳରେ ସେମାନଙ୍କ ପୁନଃମିଳନ ସମ୍ଭବ ହୋଇଛି । ପୁନର୍ମିଳନର ଅବ୍ୟବହିତ ପୂର୍ବରୁ ନାୟିକା ରାଜପୁତ୍ରଙ୍କ ପ୍ରଣୟରେ ଭରସା ରଖି ନ ପାରି ନୈରାଶ୍ୟ ଜର୍ଜରିତ ହୋଇ ପଡ଼ିଛନ୍ତି । କାରଣ, ସମ୍ଭୋଗ ଲାଳସୀ ରାଜପୁତ୍ରମାନେ ଏକାଧିକ ପତ୍ନୀଗ୍ରହଣ କରିଥାନ୍ତି । ସୁନ୍ଦରୀଉମା ଶିବଙ୍କର ମନୋହାରିଣୀ ହେଲେ ମଧ୍ୟ ଗଙ୍ଗାଙ୍କୁ ଶିବ ଶିରରେ ଧାରଣ କରିଥାନ୍ତି ।

....ତୁମ୍ଭେ ନୃପତି କୁମର, ଅନେକ ଯୁବତୀ ଆଶା ଅଛି ତୁମ୍ଭ ଠାରେ,
ଉମା ଶିବ ମନୋହାରୀ, ଗଙ୍ଗାକୁ ବରିଲେ ଶିରେ ଷୋଭ ସେ ନକରି'
[୨୦/୧୧]

ତଥାପି ରାଜକୁମାରୀ ନିଜ ପ୍ରୀତିର ଏକନିଷ୍ଠା ହେତୁ ରାଜକୁମାରଙ୍କ ଠାରେ ଆଶାବାଦୀ । କାରଣ କୁମୁଦ ଓ ତାରାଙ୍କର ପତି ହେଲେ ମଧ୍ୟ ରୋହିଣୀଙ୍କ ଠାରେ ଚନ୍ଦ୍ରଙ୍କ ପ୍ରୀତି ଅତୁଳ ।

ଚନ୍ଦ୍ର ମନ ମୋହିନୀ କୁମୁଦ ତାରା ପତି
ତଥାପି ରୋହିଣୀ ଠାରୁ ତୁଟିଲା ନ ପ୍ରୀତି । ୧୨ । (ବିଂଶ ଛାନ୍ଦ)

ଏହିପରି କେତେକ ପ୍ରାକୃତିକ ପଦାର୍ଥ ଓ ପ୍ରକୃତି ରାଜ୍ୟର ବୈଚିତ୍ର୍ୟକୁ କବି ପରଂପରାରେ ଉପେନ୍ଦ୍ର ଗ୍ରହଣ କରିଥିଲେ ହେଁ ତାହା ପୁରାଣ ସ୍ୱୀକୃତ ପରି ମନେହୁଏ । ଏତଦ୍‌ବ୍ୟତୀତ ରତି, କାମଦେବ, ବିଧାତା, ରୋହିଣୀ, ରମ୍ଭା, ଅସୁର, ଇନ୍ଦ୍ରପଦ, ସୁରେନ୍ଦ୍ର-କମାଣ, କାମପଞ୍ଚଶର, ସୁଧାସିନ୍ଧୁ, ଅମର, ଅଣିମାଦି ଅଷ୍ଟ ଐଶ୍ୱର୍ଯ୍ୟ ଆଦି ପୌରାଣିକ ଚରିତ୍ର, ଜପ ଧ୍ୟାନ ଓ ଉପାଦାନର ଉଲ୍ଲେଖ ରସ-ଲେଖା କାବ୍ୟରେ କବି ବାରମ୍ବାର କରିଛନ୍ତି ।

ମହାକବି ଉପେନ୍ଦ୍ରଙ୍କ ପୌରାଣିକ ଜ୍ଞାନର କବିତ୍ୱପୂର୍ଣ୍ଣ ପରିପ୍ରକାଶ 'ରସ-ଲେଖା' କାବ୍ୟର ପ୍ରତ୍ୟେକ ଛାନ୍ଦର ସଂଖ୍ୟାଧିକ ପଦରେ ପରିଦୃଷ୍ଟ ହୁଏ । କବି

ପୁରାଣ ଚରିତ୍ର ଓ ପ୍ରସଙ୍ଗ ଉପସ୍ଥାପନ କରି କେବଳ ବିଦଗ୍ଧପାଠକ ପ୍ରାଣକୁ ରସ ପ୍ଲାବିତ କରାଇନାହାନ୍ତି, ପୌରାଣିକ ଚେତନାକୁ ମଧ୍ୟ ଜନସାଧାରଣଙ୍କ ନିକଟରେ ପହଞ୍ଚାଇବାର ପ୍ରଯତ୍ନ କରିଛନ୍ତି । ସତ୍ୟ, ଧର୍ମ, ସଂଯମ, ଭକ୍ତିମତ୍ତା ଆଦି ମାନବୀୟ ସଦ୍‌ଗୁଣାବଳୀର ବିକାଶ ପାଇଁ କବି କାବ୍ୟରେ ପରୋକ୍ଷ ପ୍ରେରଣା ଦେଇଛନ୍ତି । ଆର୍ଯ୍ୟଧର୍ମର ମହତ୍ତ୍ୱଗାନ ଏବଂ ଭାରତୀୟ ସାଂସ୍କୃତିକ ଚେତନାକୁ ଲୋକପ୍ରିୟ କରାଇବାର ଅପ୍ରତ୍ୟକ୍ଷ ଆହ୍ୱାନ କାବ୍ୟଟିର ପୁରାଣ ପ୍ରସଙ୍ଗ ମଧ୍ୟଦେଇ ସର୍ବତ୍ର ପରିଦୃଷ୍ଟ ହୁଏ । ସର୍ବୋପରି କବିଙ୍କ ସୁଷ୍ଠୁ ପ୍ରଭାବଶାଳୀ ଭାବାଭିବ୍ୟକ୍ତି ପାଇଁ ପୁରାଣ ଉପାଦାନ କାବ୍ୟରେ ବଳିଷ୍ଠ ମାଧ୍ୟମ ହୋଇଛି ।



ରିଡ଼ର, ଓଡ଼ିଆଭାଷା ଓ ସାହିତ୍ୟ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତିବିହାର, ବୁର୍ଲା

।। ସାକ୍ଷର ଗଂଜାମ ସୁନ୍ଦର ଗଂଜାମ ।।

# ବାର୍ତ୍ତା

ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନର ଗଞ୍ଜାମ ଜିଲ୍ଲାରେ ଉଲ୍ଲେଖନୀୟ ସାଫଲ୍ୟ ପରେ ବର୍ତ୍ତମାନ ସାକ୍ଷରତା ପରବର୍ତ୍ତୀ କାର୍ଯ୍ୟକ୍ରମ ଓ ଜନ ସଂଖ୍ୟା ଶିକ୍ଷା କାର୍ଯ୍ୟକ୍ରମ ଜନ ସାଧାରଣଙ୍କ ଅକୁଣ୍ଠ ସାହାଯ୍ୟ, ସହଯୋଗ ଓ ଅଦମ୍ୟ ଉଦ୍ଦିପନାରେ ପୂର୍ଣ୍ଣ-ମାତ୍ରାରେ ଅଗ୍ରେଇ ଚାଲିଛି । ସମ୍ପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମରେ ନିଷ୍ଠାପର ଉଦ୍ୟମ ଯୋଗୁଁ ୪ ଲକ୍ଷରୁ ଉର୍ଦ୍ଧ୍ୱ ନବସାକ୍ଷର ନିରକ୍ଷରତାର ଅନ୍ଧକାରରୁ ବାହାରି ଆସିବା ସଙ୍ଗେ ସଙ୍ଗେ ସାମାଜିକ ଅଗ୍ରଗତି ଓ ପ୍ରତିଷ୍ଠା ଦିଗରେ ଅକୁଣ୍ଠ ସହଯୋଗ କରିଛନ୍ତି । ସମ୍ପ୍ରତି ଗଞ୍ଜାମ ଜିଲ୍ଲାରେ ଚାଲିଥିବା ଜନ ସଂଖ୍ୟା ଶିକ୍ଷା ଏବଂ ସାକ୍ଷରତା ପରବର୍ତ୍ତୀ କାର୍ଯ୍ୟକ୍ରମର ମୂଖ୍ୟ ଆଦର୍ଶ ଗୁଡିକ ନିମ୍ନରେ ପ୍ରଦତ୍ତ ହେଲା—

**ସାକ୍ଷରତା ପରବର୍ତ୍ତୀ କାର୍ଯ୍ୟକ୍ରମ—**

୧) ଯେଉଁମାନେ ନବ ସାକ୍ଷର ସେମାନଙ୍କ ଶିକ୍ଷା ଅଭ୍ୟାସ ଜାରି ରଖିବା

୨) ଯେଉଁମାନେ କାର୍ଯ୍ୟକ୍ରମରେ ମୋଟେ ସାମିଲ ହୋଇ ନାହାନ୍ତି ଏବଂ ଯେଉଁମାନେ ମଧ୍ୟ ସ୍ତରରେ ଅଛନ୍ତି ସେମାନଙ୍କୁ ପ୍ରଥମ ପର୍ଯ୍ୟାୟର ଶେଷ ସ୍ତରକୁ ଆଣି ତାଙ୍କର ଶିକ୍ଷା ଅଭ୍ୟାସ ବଜାୟ ରଖିବା

୩) ଗ୍ରାମେ ଗ୍ରାମେ ଗଣଚେତନା କେନ୍ଦ୍ର ଓ ସମିତି ଗଠନ କରି ଶିକ୍ଷା ଓ ସମାଜ ସଚେତନତାର ବାର୍ତ୍ତା ପ୍ରଚାର କରିବା

୪) ଏକ ସାକ୍ଷର ସୁନ୍ଦର ପରିବେଶ ସୃଷ୍ଟି । ଏହାର ଅଂଗ ଗୁଡ଼ିକ—

କ) ସାର୍ବଜନୀନ ପ୍ରାଥମିକ ଶିକ୍ଷା (ଖ) ପରିବେଶ ନିର୍ମଳତା (ଗ) ସବୁଜ ଗ୍ରାମ (ଘ) ବିଭିନ୍ନ ଉନ୍ନୟନ ମୂଳକ କାର୍ଯ୍ୟରେ ସର୍ବ ସାଧାରଣଙ୍କ ସହଯୋଗ (ଙ) ସ୍ୱାସ୍ଥ୍ୟର ଅଭିବୃଦ୍ଧି (ଚ) ବୈଜ୍ଞାନିକ ଦୃଷ୍ଟିକୋଣ

**ଜନସଂଖ୍ୟା ଶିକ୍ଷା କାର୍ଯ୍ୟକ୍ରମ—**

୧) ପରିବେଶ ଉପରେ ଜନସଂଖ୍ୟା ବୃଦ୍ଧିର କୁପ୍ରଭାବ ବିଷୟରେ ଜନସାଧାରଣଙ୍କୁ ସଚେତନ କରିବା (୨) ବାଲ୍ୟ ବିବାହ— ଝିଅଙ୍କୁ ୨୦ ପୁଅଙ୍କୁ ୨୫ ଉପଯୁକ୍ତ ବିବାହ ବୟସ (୩) ଦୁଇଟି ସନ୍ତାନରେ ସୀମିତ ପରିବାର (୪) ଦୁଇଟି ସନ୍ତାନ ମଧ୍ୟରେ ଉଚିତ ବ୍ୟବଧାନ (୫) ପୁଅ ଝିଅ ସମାନ (୬) ଦାୟିତ୍ୱ ସମ୍ପନ୍ନ ପିତାମାତା

ଆସନ୍ତୁ ମିଳିମିଶି ଏହି ମହାନ କାର୍ଯ୍ୟକ୍ରମକୁ ଆପଣଙ୍କର ସେହି ଅକୁଣ୍ଠ ସହଯୋଗରେ ସଫଳ କରି ଗଞ୍ଜାମର ସୁନାମକୁ ବଜାୟ ରଖିବା ।

ସ୍ୱା- ଦୀନନାଥ ପଣ୍ଡା

ଜିଲ୍ଲାପାଳ, ଗଞ୍ଜାମ-ତଥା-ସଭାପତି, ଭଞ୍ଜ ସାକ୍ଷରତା ପରିଷଦ

ଭଂଜ ଯୁବ ସାହିତ୍ୟ ସଂସଦ ପକ୍ଷରୁ ଶ୍ରୀ ଏ. ବିଶ୍ୱନାଥ ପାତ୍ରଙ୍କ ଦ୍ୱାରା ପ୍ରକାଶିତ ଏବଂ ବ୍ରହ୍ମପୁର ଡାଃସ୍ ପ୍ରେସ୍‌ରେ ମୁଦ୍ରିତ ।

।। ମୂଲ୍ୟ ।। କୋଡିଏ ଟଙ୍କା

।। ସମ୍ପାଦକ ।। ପ୍ରାଧ୍ୟାପକ ଡ଼ଃ ନିଶାକର ପାଢ଼ୀ